# ଭୂମିକା ।

ଫିଫ୍‌ଥ୍ କ୍ୟୁଟ୍ରେଲଶନ୍ କ୍ଲାସରେ ପଢୁଥିଲାବେଳେ ମୁଁ ଖବର କାଗଜ ପଢ଼-
ନ୍ତ ପଢ଼ିବା ଏବଂ ତହିଁରେ ଲେଖିବା ଆରମ୍ଭ କଲି । ଖ୍ରୀଷ୍ଟ ୧୮୯୦ ଠାରୁ
ମୋହର ଖବର କାଗଜ ଲେଖା ଆରମ୍ଭ ବୋଲିବାକୁ ହେବ । ସେହିଠାରୁ
ଆଜିକି ପ୍ରାୟ ୪୦ ବର୍ଷ କାଳ ପର୍ଯ୍ୟନ୍ତ ମୁଁ ଯାହା ଲେଖିଥିଲି ତହିଁରୁ ଅନେକ
ଲେଖା ଏବେ କେତେଣେ ପଡ଼ି ଗଳି ହଜି ଯାଇଛି । ବାକି ଯେତେକ ଥିଲା ସେ
ସବୁ ଏକାଠି କରି ପୁସ୍ତକାକାରରେ ଛପାଇବା ନିମନ୍ତେ ମୋହର ଅନେକ
ବନ୍ଧୁ, ବିଶେଷରେ ପ୍ରିୟ ବନ୍ଧୁ ସ୍ୱର୍ଗୀୟ ନୀଳମଣି ବିଦ୍ୟାରତ୍ନ ବହୁ ଅନୁରୋଧ କର-
ଥିଲେ । ମୋହର ମନେ ଅଛି, ମୁଁ ସମ୍ବଲପୁର ହିତୈଷିଣୀରେ ମୋହର ଲେଖା
ଆରମ୍ଭ କରିଥିଲି । ସେତେବେଳେ ବିଦ୍ୟାରତ୍ନ ଥିଲେ ତାହାର ସମ୍ପାଦକ । ମୋହର
ଲେଖା କେତେକ ପଢ଼ି ଉତ୍କଳର ବ୍ୟାସ କବି ସ୍ୱର୍ଗୀୟ ଫକୀର ମୋହନ ସେନାପତି
ମୋତେ ଲେଖିଥିଲେ —ଆପଣଙ୍କ ଲେଖାସବୁ ମୁଁ ପଢୁଛି । ଆପଣଙ୍କୁ ଅନେକ-ଗାଳି
ହୋଇଥାଏ, ସେଥିଲାଗି ବିଚଳିତ ହେବେ ନାହିଁ । ଲେଖାରେ ସାର ନଥିଲେ କେହି
ପାଠକ ତମକି ଉଠି ଗାଳି ଦିଅନ୍ତି ନାହିଁ । ବୁଝିବେ ଆପଣଙ୍କ ଲେଖାରେ କିଛି
ସାର ଅଛି, ଗାଳି ପ୍ରତି ଭ୍ରୂକ୍ଷେପ ନକରି ଲେଖି ଯାଆନ୍ତୁ । କବିବର ରାଧାନାଥ ରାୟ
ଉତ୍ସ ସାହିତ୍ୟରେ ମୋହର ପାର୍ବତୀପୁର ପ୍ରବନ୍ଧ ପଢ଼ି ମୋତେ କହିଥିଲେ, ଆପଣ
ଜାତୀୟ ଜୀବନ ବିଷୟରେ ଲେଖନ୍ତୁ । ମୁଁ କହିଲି, ଆଜ୍ଞା, ମୁଁ ପାରିବି ନାହିଁ । ସେତେ
ବେଳେ ସେ କହିଥିଲେ, ନିଶ୍ଚୟ ପାରିବେ । କବି ମିହିର ଗଙ୍ଗାଧର ମେହେର ସମ୍ବଲ-
ପୁର ସମ୍ମିଳନୀ ବେଳେ ମୋତେ କହିଥିଲେ, ଆପଣଙ୍କ ଲେଖାରେ ମୁଁ ଦୁଇଟା କଥା
ସ୍ପଷ୍ଟ ଦେଖେ — ସତ୍ୟବାଦିତା ଓ ନିର୍ଭୀକତା । ମୁଁ ଯେତେବେଳେ କହିଲି, ମୋର
ବନ ରୋଦନ ଶୁଣୁଛି କିଏ । ସେ ଉତ୍ତର ଦେଲେ, ନା, ତାହା ନୁହେ, ସେ ଲେଖାର
ମୂଲ୍ୟ ଅଛି, ଆମ ସମ୍ବଲପୁରରେ ଅନେକ ରାଜା ଜମିଦାର ତହିଁରୁ ଶିକ୍ଷା ପାଇ କିଛି
ସୁଧାରି ହୋଇ ଛନ୍ତି, ଲେଖା ଗୁଡ଼ିକ ବିଫଳ ହୋଇନାହିଁ । କବିବର ଚିନ୍ତାମଣି ମହାନ୍ତି,
ପଣ୍ଡିତ ଗୋପୀନାଥ ନନ୍ଦ ଲେଖିଥିଲେ, ଆପଣ ସରକାରୀ କାର୍ଯ୍ୟରେ ରହି ସୁଦ୍ଧା
ଏତେ ଲେଖିବାକୁ ଯେ ଅବସର ପାଉଛନ୍ତି, ଆପଣଙ୍କୁ ଧନ୍ୟବାଦ, ଗଞ୍ଜାମର ଅନ୍ୟ
ଗ୍ରାଜୁଏଟ୍ ମାନଙ୍କର ସେ ଦିଗରେ ଲକ୍ଷ୍ୟ ବା ଚିନ୍ତା ନାହିଁ । ଭକ୍ତ କବି ମଧୁସୂଦନ
ରାଓ ମୋତେ ଦିନେ ବଡଖେମଣ୍ଡି ଗଡ ଠାରେ କହିଲେ, ଆପଣ ଆମ ଉତ୍କଳର
ଈଶ୍ୱରଚନ୍ଦ୍ର, ବିଧବା ବିବାହ ସଂସ୍କାର କରା ଯାଇ ପାରି ନଥିଲେହେଁ ଏକମାତ୍ର ଆପଣ
ସେଦିଗରେ ବିଶେଷ ଲେଖା ଲେଖି କରି କିଛି ଚେଷ୍ଟା କରୁଛନ୍ତି । ଏହି ମନୀଷି ମାନଙ୍କ
ମନ୍ତବ୍ୟରେ ମୁଁ ଅବଶ୍ୟ ଉତ୍ସାହିତ ହୋଇଥିଲି । ସ୍ୱର୍ଗୀୟ ସ୍ୱଦେଶ ହିତୈଷୀ ହରିହର
ସଦସ୍ୟ ମୋହର କେତେ ଗୁଡ଼ିଏ ପ୍ରବନ୍ଧ ସଂଗ୍ରହ କରି ଦେଇ ପୁସ୍ତକ ପ୍ରକାଶରେ
ମତେ ସାହାଯ୍ୟ କରିଛନ୍ତି । ମୋହର ଜନୈକ ବନ୍ଧୁ ଶ୍ରୀମାନ୍ ଗୋବିନ୍ଦ ରଥେ ମଧ୍ୟ
ସମ୍ବାଦ ପତ୍ରରୁ ମୋହର କେତେଟା ପ୍ରବନ୍ଧ ଏହି ପୁସ୍ତକ ପ୍ରକାଶ ସକାଶେ

ସାଫ୍ ଉତ୍ତର ଦେଇଥିଲେ । ଏହି ସବୁ ଅନୁରୋଧ, ଉତ୍ସାହ ବାଣୀ ଓ ସାହାଯ୍ୟ ଦେଖି ମୁଁ ଏହି ପୁସ୍ତକ ପ୍ରକାଶରେ ପ୍ରବୃତ୍ତ ହେଲି ।

ଏଣୁ ତେଣୁ ଶାଗରୁ ମୂଗରୁ, ଛୋଟ ବା ବଡ଼ କଥା ହେଉ, ସାମାଜିକ, ରାଜନୈତିକ, ବୈଷୟିକ ବା ଆଧ୍ୟାତ୍ମିକ ଇତ୍ୟାଦି ବିଷୟରେ ମୋ ଅନୁଭବରୁ ବା ପଢ଼ା ଶୁଣାରୁ ମୁଁ ଯେତେବେଳେ ଯାହା ଲେଖି ଯାଇ ଥାଏ ତାହା ସବୁ ଏକତ୍ର କରି ଏହି ପୁସ୍ତକରେ ପ୍ରକାଶ କରୁଅଛି । ସେତେବେଳେ ଭାଷା ଓ ଭାବ ଅନେକ ସ୍ଥାନରେ ଦୁର୍ବୋଧ ହୁଏ, ସଂଯତ ନଥିଲା । ଯାହାକି ସୁବୋଧ୍ୟ, ସରଳ ଏବଂ ସ୍ୱଳ୍ପ କଥାରେ ବ୍ୟକ୍ତ କରି ଯାଇ ପାରିଥାନ୍ତା, ସ୍ଥାନେ ସ୍ଥାନେ ସେ ସବୁ କ୍ଲିଷ୍ଟ ଭାଷାରେ ପଦାଡ଼ମ୍ବର ଦେଖାଇବା ଉଦ୍ଦେଶ୍ୟରେ ବଡ଼ ବଡ଼ ପଦ ପ୍ରୟୋଗ ପୂର୍ବକ ଲେଖା ଯାଇଅଛି । କୃତ୍ରିମ ଭାଷାରେ ଭୁଲ୍ ଏବଂ ମନୋଗତ ଭାବ ଅସ୍ପଷ୍ଟ ରହି ଯାଇଅଛି । ଯାହାହେଉ, ତାହାସବୁ ଏବେ ଅବିକଳ ପ୍ରକାଶ କରାଯାଇ ଅଛି, ପାଠକ ମାନେ ତହିଁରୁ ଯାହା ବୁଝି ପାରିବେ ।

ଦୁଃଖର ବିଷୟ ମୋହର ସେହି ଲେଖା ଗୁଡ଼ାକ ଖବର କାଗଜ ଦେହରୁ ଖଣ୍ଡ ୨ ହୋଇ କଟା ଯାଇଥିଲା । ତହିଁରୁ ସମ୍ବାଦ ପତ୍ରର ନାମ ଓ ଲେଖାର ସମୟ ଧରାଯାଇ ପାରିଲା ନାହିଁ । ହୁଏତ ୧୯୩୫ ସାଲର ଲେଖା ଆଗ ବାହାରିଲା ଏବଂ ୧୯୧୫ ସାଲର ଲେଖା ପଛେ ଦିଆଗଲା । ଏହି ସଂଗ୍ରହରେ ଭାଷା ଓ ଭାବର କ୍ରମ ବିକାଶ ଧରାଯାଇ ପାରିଲା ନାହିଁ । ପୁଣି ଆଉ ଏକ ଅଭାବ ଏହିଯେ ସାମାଜିକ ରାଜନୈତିକ ଇତ୍ୟାଦି ବିଷୟ ନେଇ ପ୍ରବନ୍ଧଗୁଡ଼ାକ ଭିନ୍ନ ଭିନ୍ନ ବିଭାଗରେ ସଂପୂର୍ଣ୍ଣ ରୂପେ ପୃଥକ୍ ୨ କରାଯାଇ ପାରିଲା ନାହିଁ । କେବଳ ବହୁଳ ସୂଚୀ ବିବରଣୀ ସାହାଯ୍ୟରେ ପାଠକ ମାନେ ସମଗ୍ର ଗ୍ରନ୍ଥରୁ ପ୍ରବନ୍ଧର ବିଷୟ ଧରି ପାରିବେ ।

ସଂଗୃହୀତ ଥିବା ପୁରାତନ ଲେଖା ଗୁଡ଼ିକ ଏହିପରି ୫ । ୭ ଖଣ୍ଡ ପୁସ୍ତକରେ ପ୍ରକାଶିତ ହୋଇ ପାରିବ । ପ୍ରଥମ, ଦ୍ୱିତୀୟ ଖଣ୍ଡ ଏଥି ପୂର୍ବରୁ ବାହାରିଛି । ଏ ହେଉଛି ତୃତୀୟ ଖଣ୍ଡ । ଅନ୍ୟାନ୍ୟ ଖଣ୍ଡ ମାନ ପ୍ରକାଶ କରିବା ବାସନା ରହିଲା ।

ଆମ ସାମାଜିକ କୁରୀତି ଦେଖି ଛାତ୍ରାବସ୍ଥାରୁ ମୁଁ ବଡ଼ ବ୍ୟଥିତ ଥାଏ ଏବଂ ସମାଜ ସଂସ୍କାର ବିଷୟରେ ସର୍ବଦା ସର୍ବତ୍ର କୁହା ପୁଛା ଏବଂ ଲେଖା ଲେଖି କରୁଥାଏ । ମୋହର ଏହି ସଂସ୍କାର ପ୍ରୟାସ ଦେଖି ସଂଗୀତ ସଂଗ୍ରାହକ ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକ, ସାହିତ୍ୟବେତ୍ତା ଗୋପାଳଚନ୍ଦ୍ର ପ୍ରହରାଜ ପ୍ରଭୃତି ଅନେକ ଅଭିଜ୍ଞ ବ୍ୟକ୍ତିମାନେ ମଧ୍ୟ ମୋତେ ସଂସ୍କାରକ ଆଖ୍ୟା ଦେଇ ଥାନ୍ତି । ଏଣୁକରି ମୋହର ଏହି ଗ୍ରନ୍ଥାବଳୀର ନାମ ରଖା ଯାଇଛି ସଂସ୍କାରକ । ଏହି ପୁସ୍ତକ ପଢି ଯଦି କେହି ସଂସ୍କାର ଚେଷ୍ଟା କରନ୍ତି ତେବେ ନାମଟି ସାର୍ଥକ ହେଲା ବୋଲିବାକୁ ହେବ ।

ପୁରୀ<br>୨୫ । ୫ । ୧୯୩୯ } ଲେଖକ<br>ଶ୍ରୀବତ୍ସ ପଣ୍ଡା

ଓଁ

| ବିଷୟ | ପୃଷ୍ଠା |
|---|---|

ପୃଷ୍ଠା







ସଚ୍ଚିଦାନନ୍ଦେଶ୍ୱରାୟ ନମୋନମଃ ।



# ସଂସ୍କାରକ ।



## ଶିକ୍ଷା

ବିଦ୍ୟା ଶିକ୍ଷାର ଉପକାରିତା ସମ୍ବନ୍ଧରେ ଲୋକ ସାଧାରଣଙ୍କର ଯେପରି ଆଂଶିକ ଜ୍ଞାନ ବା ଭ୍ରାନ୍ତ ମତ, ଶିକ୍ଷା ପ୍ରଣାଳୀ ବିଷୟରେ ମଧ୍ୟ ତଦ୍ରୂପ ଅନଭିଜ୍ଞତା ଦେଖାଯାଏ । ଧନୋପାର୍ଜନ କରିବାପାଇଁ ବିଦ୍ୟାଶିକ୍ଷାର ପ୍ରୟୋଜନ, ଏହାହିଁ ଲୋକମାନଙ୍କର ଧାରଣା । ସତ ହେଉ ବା ଅସତ ହେଉ ଯେ କୌଣସି ମାର୍ଗ ଅବଲମ୍ବନ ପୂର୍ବକ ଧନ ସମ୍ପାଦନ କଲେ ହେଲା । ଲୋକେ କହନ୍ତି ମାଇଟିଲୋକେ ପାଠ ପଢି କଣ କରିବେ ? ସେମାନେ ତ ପଦାକୁ ଯାଇ କୌଣସି ବ୍ୟବସାୟ କରି ଧନୋପାର୍ଜ୍ଜନ କରିବେ ନାହିଁ । ପୁଣି ଏ ଦେଶର ଅନେକ ଧନୀ ଲୋକ ମାନେ ଆପଣା ପୁତ୍ର ମାନଙ୍କୁ ଉଚ୍ଚ ଶିକ୍ଷା ଦିଅନ୍ତି ନାହିଁ । ଏମାନେ କହୁଥାନ୍ତି ଯେ ଆମର ଜମିବାଡି ଯଥେଷ୍ଟ ଅଛି । ଆମେ ତ ଗଭର୍ଣ୍ଣମେଣ୍ଟ ଚାକିରି କରିବା ନାହିଁ । ଆମ୍ଭମାନଙ୍କର ବିଦ୍ୟା ଶିକ୍ଷାରେ ବିଶେଷତଃ ଇଂରାଜୀ ଭାଷା ଶିକ୍ଷାରେ କି ପ୍ରୟୋଜନ ? ଏବଂ କୌଣସି ବ୍ୟକ୍ତି ଇଂରାଜୀ ଭାଷାରେ ବିଦ୍ୟାଶିକ୍ଷା ପ୍ରାପ୍ତହୋଇ ଯଦି କୌଣସି ଗଭର୍ଣ୍ଣମେଣ୍ଟ ଚାକିରିରେ ନିଯୁକ୍ତ ହୁଅନ୍ତି ନାହିଁ; ତେବେ ତାଙ୍କର ବିଦ୍ୟା ଶିକ୍ଷା ବିଫଳ ହେଲା, ଏବଂ ଶିକ୍ଷା ସକାଶେ ବ୍ୟୟିତ ହୋଇଥିବା ଧନ ବୃଥା ଗଲା ବୋଲି ଲୋକେ କହନ୍ତି । ଗ୍ରାମ୍ୟ ଲୋକଙ୍କ କଥା ତେଣେ ଥାଉ ଶିକ୍ଷିତ ଲୋକ-ମାନେ ମଧ୍ୟ ତାଙ୍କର ବିଦ୍ୟାଶିକ୍ଷାର ପ୍ରଶଂସା କରନ୍ତି ନାହିଁ । ଧନୋପାର୍ଜ୍ଜନହିଁ ବିଦ୍ୟା ଶିକ୍ଷାର ମୂଳୋଦ୍ଦେଶ୍ୟ ବୋଲି ଯେପରି ଲୋକଙ୍କ ଭ୍ରାନ୍ତଧାରଣା ଗଭର୍ଣ୍ଣ-

ମେଣ୍ଟ କର୍ମଗ୍ରହଣହିଁ ଧନୋପାର୍ଜ୍ଜନ ନିମିତ୍ତ ପ୍ରକୃଷ୍ଟ ଉପାୟ ବୋଲି ଅନେକଙ୍କର ବିଶ୍ୱାସ । ଇଂରାଜି ଶିକ୍ଷିତ ବ୍ୟକ୍ତିମାନେ ସଙ୍ଗତ ସମ୍ପନ୍ନ ଥିଲେହେଁ ଗଭର୍ଣ୍ଣମେଣ୍ଟ ଚାକିରି ପାଇଁ ଏକାନ୍ତ ଲାଳାୟିତ । ଏମାନେ ଯେ ରାଜ କର୍ତ୍ତୃପକ୍ଷଙ୍କ ସହାୟ ହୋଇ ଦେଶର ଉପକାର ସାଧନ କରିବେ, ଏମାନଙ୍କର ଏହି ଉଦ୍ଦେଶ୍ୟ ଆଦୌ ନଥାଏ, କେବଳ ନିଜର ନାମ ବା ଭୋଗ ବିଳାସ କିମ୍ବା ପୁତ୍ର ପୌତ୍ରାଦିଙ୍କ ନିମିତ୍ତ ଧନାର୍ଜ୍ଜନ କରିବାହିଁ ଚରମ ଲକ୍ଷ । ବୋଧହୁଏ ଏହାହିଁ ବିଦ୍ୟାଶିକ୍ଷାର ଫଳ ପ୍ରତି ଉକ୍ତ ଭ୍ରାନ୍ତ ଧାରଣାର କାରଣ । ପୁଣି ଗଭର୍ଣ୍ଣମେଣ୍ଟ ଚାକିରିରୁ କେହି କେହି ଅପର୍ଯ୍ୟାପ୍ତ ଧନ ସଂଗ୍ରହ କରନ୍ତି । ଯେଉଁମାନେ ବହୁ ପରିମାଣରେ ଧନ ସଂଗ୍ରହ କରିଥାନ୍ତି ସେମାନେ ତାହା କେବଳ ଉତ୍କୋଚ ଦ୍ୱାରା ସଂଗ୍ରହ କରି-ଥାନ୍ତି । କେବଳ ବେତନ ଉପରେ ନିର୍ଭର କରି ଚଳିବା ଲୋକେ ଉତ୍କୋଚ ଭିନ୍ନ ଅନ୍ୟ ସଦୁପାୟ ଦ୍ୱାରା ବେଶି ଧନ ସଂଗ୍ରହ କରିବା ଅସମ୍ଭବ । ଯାହାହେଉ ଲୋକେ ଭାବନ୍ତି ଯେ କେବଳ ଗଭର୍ଣ୍ଣମେଣ୍ଟ ଚାକିରି ଦ୍ୱାରା ପ୍ରଚୁର ପରିମାଣରେ ଧନ ସମ୍ପାଦନ କରା ଯାଇପାରେ ।

ଶିକ୍ଷା କହିଲେ ଅଜିକାଲି ଆମଦେଶରେ ପୋଥି ଶିକ୍ଷା, ସ୍କୁଲଶିକ୍ଷା ବା ପରୀକ୍ଷା ଶିକ୍ଷା ବୁଝାଯାଏ । ବିଦ୍ୟାଳୟରେ ପ୍ରବେଶ କରି ପୁସ୍ତକ ପଢି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଶିକ୍ଷା ଶେଷହୁଏ । କାବ୍ୟତୀର୍ଥ, ସାହିତ୍ୟ ବିଶାରଦ, ମାଟ୍ରିକୁ୍ୟଲେଟ, ଏଫ୍, ଏ, ବା ବି, ଏ ଉପାଧି ବିଭୂଷିତ ହୋଇ ପଡିଲେ ଶିକ୍ଷାରେ ଲୋକେ ଜଳା-ଞ୍ଜଳି ଦେଇ ଦିଅନ୍ତି । ଏମାନେ କହନ୍ତି ଯେ ଏମାନେ ଗୃହ ଜଞ୍ଜାଳରେ ଏବଂ ସଂସାରର ବିଷୟରେ ସର୍ବଦା ବ୍ୟସ୍ତ ରହନ୍ତି । ସୁତରାଂ ଏମାନେ ଆଉ ପଢ଼ାଶୁଣା କରିବାକୁ ସମୟ ପାଆନ୍ତି ନାହିଁ । ଅନେକ ଗଭର୍ଣ୍ଣମେଣ୍ଟ କର୍ମଚାରୀମାନେ ଆଉ ପୋଥି ଛିଣ୍ଡାନ୍ତି ନାହିଁ ପୁଣି କୌଣସି ବିଷୟରେ ସ୍ୱାଧିନ ଚିନ୍ତାକରି ମନୋଗତ ଭାବ ନିଚୟ ଲିପିବଦ୍ଧ କରିବାକୁ ଚାହାନ୍ତି ନାହିଁ । ଗୃହ ଜଞ୍ଜାଳ, କର୍ମଚାରୀଙ୍କ କର୍ମ, କୃଷି ଶିଳ୍ପ ବାଣିଜ୍ୟାଦି ବ୍ୟବସାୟ, ନ୍ୟାୟ, ଧର୍ମ ରୀତି ନୀତି ଏହି ସକଳ ବିଷୟ ଜ୍ଞାନହିଁ ଶିକ୍ଷା । ଆମ୍ଭେମାନେ ପୁସ୍ତକରୁ ବିଦ୍ୟାଳୟରେ ଶିକ୍ଷକଙ୍କଠାରୁ ଏହାହିଁ ଶିକ୍ଷା କରିଥାଉଁ । ଜୀବନ ଯାତ୍ରା ନିର୍ବାହରେ ଏହି ଜ୍ଞାନହିଁ କାମରେ ଲାଗେ । ଅନୁଭବ, ଗବେଷଣା ଓ ଚିନ୍ତାଦ୍ୱାରା ଯାହା ଜାଣିବାକୁ ହୁଏ ତାହାହିଁ ପୋଥିପାଠ ରୂପେ ଶିକ୍ଷା କରିବାକୁ ହୁଏ । ଜ୍ଞାନ ସମ୍ପାଦନରେ କିଛି ଫଳ ନାହିଁ, ଯଦି କର୍ମରେ ଉକ୍ତ ଜ୍ଞାନର ପ୍ରୟୋଗ କରା ନଯାଏ । ଗଧ ଚନ୍ଦନ କାଠ ବହିବା ନ୍ୟାୟ ଅନେକେ ବିଦ୍ୟାଭାର ବହନ କରିଥାନ୍ତି । ସ୍କୁଲରେ ଯେଉଁ ଶିକ୍ଷା ପାଇବାକୁ ହୁଏ ତାହା ପ୍ରକୃତ ଶିକ୍ଷା ବା ଶିକ୍ଷାର ସାରାଂଶ ନୁହେଁ । ଏହି ଶିକ୍ଷା ଦ୍ୱାରା ଭାବୀ ଜୀବ-

ନରେ ପ୍ରକୃତ ଶିକ୍ଷାର ମାର୍ଗ ସୁଗମ ହୁଏ । ବିଦ୍ୟାଳୟର ଶିକ୍ଷାପରେ ପ୍ରକୃତ ଶିକ୍ଷାର ଆରମ୍ଭ ହୁଏ । ଏହି ଶିକ୍ଷାର ଶେଷ ନାହିଁ । ଏଥିପାଇଁ ଅନନ୍ତ ଜୀବନ ଆବଶ୍ୟକ, ମାନବ ପ୍ରାଣ ଏହି ଅନନ୍ତ ଜୀବନର ଅଂଶ ବିଶେଷ । ଏହି କ୍ଷୁଦ୍ର ଜୀବନ ସ୍ୱଳ୍ପ ଏବଂ ସୀମାବଦ୍ଧ, କିନ୍ତୁ ଜ୍ଞାନ ଅଟେ ଅସୀମ, ଅନନ୍ତ । ଆଜୀବନ ଶିକ୍ଷାଲାଭରେ ବିବ୍ରତ ନହେଲେ ଜ୍ଞାନ କଣିକା ପ୍ରାପ୍ତିର ସୁଦ୍ଧା ସମ୍ଭାବନା ନାହିଁ । ଅତଏବ ସର୍ବଦା ଶିକ୍ଷା କରିବାକୁ ହେବ । ଅବଧୂତ ୨୪ ଗୁରୁ କରିଥିଲେ ବୋଲି କଥାଅଛି । ୨୪ ଜାହିଁକି ୨୪ ସହସ୍ର ଗୁରୁ କଲେହେଁ ଶିକ୍ଷା ଶେଷ ହୁଏନାହିଁ । ଏହି ସୀମା-ବଦ୍ଧ ଜୀବନର କଥା ଛାଡ ଅନନ୍ତ ଜୀବନର ସୁଦ୍ଧା ପ୍ରତିମୁହୂର୍ତ୍ତରେ ଶିକ୍ଷା ଏବଂ ପରୀକ୍ଷା ହେଉଥାଏ ।

କେବଳ ଅର୍ଥ ସଂଗ୍ରହ କରିବା ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ନୁହେଁ, ଜ୍ଞାନ ସମ୍ପାଦନହିଁ ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ଶିକ୍ଷା ନକଲେ ପ୍ରକୃତ ଶିକ୍ଷା ଉପଲବ୍ଧ ହୋଇ ପାରେନାହିଁ । ଧନୋପାର୍ଜ୍ଜନ କରିବ ବୋଲି ପିତା ମାତା ପୁଅକୁ ଶିକ୍ଷା ଦିଅନ୍ତି । ସ୍କୁଲରେ ଶିକ୍ଷକମାନେ ଛାତ୍ର ମାନଙ୍କୁ ଶିକ୍ଷା ଦିଅନ୍ତି ଯେପରି ସେମାନେ ପରୀକ୍ଷାରେ ପାସ କରି ପାରିବେ । ଅନ୍ୟାନ୍ୟ ଲୋକ ସାଧାରଣ ଅର୍ଥୋତ୍ପାଦିକା ଶକ୍ତିଦ୍ୱାରା ଶିକ୍ଷାର ପରିଚୟ ପ୍ରାପ୍ତ ହୁଅନ୍ତି ଏବଂ ପରିମାଣ ସ୍ଥିର କରନ୍ତି । ଅମୁକ ଲୋକ ବି, ଏ ବା ଏମ, ଏ, ପାସ କରି ଅଛନ୍ତି, ନତୁବା ବେଦ ବେଦାଙ୍ଗରେ କିବା ଲାଟିନ ବା ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଲାଭ କରିଅଛନ୍ତି—ଲୋକେ ସାଧାରଣତଃ ଏହି କଥାର ମୂଲ୍ୟ ବୁଝନ୍ତି ନାହିଁ । ସେମାନେ ପଚାରନ୍ତି ଯେ ଅମୁକ ଲୋକ କେତେ ଟଙ୍କା ବେତନର କାମରେ ଅଛନ୍ତି ? ଯଦି କେହି ଲୋକ କୋଡିଏ, ଅଢ଼ାଇଶ, ପାଞ୍ଚଶ ଟଙ୍କା ବେତନ ପାଇ ତହସିଲଦାର ବା ଡେପୁଟି କଲେକ୍ଟର କରନ୍ତି ତେବେ ଲୋକେ ବୁଝନ୍ତି ଯେ ସେହି ଲୋକ ବହୁତ ପାଠ ପଢି ଅଛନ୍ତି, ପୁଣି ବଡ ବଡ ପରୀକ୍ଷାରେ ପାସ କରିଅଛନ୍ତି । ଏହିବ୍ୟକ୍ତି ଶିକ୍ଷା ବିଭାଗରେ ଉଚ୍ଚ ଶିକ୍ଷା ପ୍ରାପ୍ତ ହୋଇ ନଥିଲେହେଁ ଲୋକ ଦୃଷ୍ଟିରେ ଉଚ୍ଚ ଶିକ୍ଷିତ ବୋଲି ଗୃହୀତ ହୁଅନ୍ତି । ଯେ କୌଣସି ବ୍ୟକ୍ତି ସୁଶିକ୍ଷିତ, ନ୍ୟାୟନିଷ୍ଠ ଓ ନୀତି ପରାୟଣ ହୁଅନ୍ତୁ, ଯଦି ସେ ମାସିକ ୨୦ ବା ୩୦ ଟଙ୍କା ମାତ୍ର ପାଇ ଶିକ୍ଷକତା କରନ୍ତି ତେବେ ଲୋକ ଦୃଷ୍ଟିରେ ସେହି ବ୍ୟକ୍ତି ସ୍ୱଳ୍ପ ଶିକ୍ଷିତ ଶ୍ରେଣୀରେ ପରିଗଣିତ ହୁଅନ୍ତି । ଦୁର୍ଭା-ଗ୍ୟରେ ଏହିପରି ପ୍ରତିକୂଳ ଅବସ୍ଥାରେ ପଡି ସର୍ବ ସାଧାରଣ କଥା ଦୂରେ ଥାଉ ଅନେକ ପ୍ରତିଭାଶାଳୀ ବ୍ୟକ୍ତି ମଧ୍ୟ ଜୀବନରେ ପ୍ରକୃତ ଶିକ୍ଷାରୁ ବଞ୍ଚିତ ରହନ୍ତି ।

ସ୍କୁଲ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯିବା ମାତ୍ରେ ଲୋକେ ଆପଣାକୁ କୃତାର୍ଥ ମନେ କରନ୍ତି, କିନ୍ତୁ ଏହି ଶିକ୍ଷା ଆଜୀବନ ଅପରିପୂର୍ଣ୍ଣ ରହିଯାଏ । ବିଦ୍ୟାଳୟ ଶିକ୍ଷା ପରେ ଭ୍ରମଣ ଶିକ୍ଷା ଆବଶ୍ୟକ, ଏହି ଶିକ୍ଷା ବଞ୍ଚିତ ସ୍କୁଲ୍ ଶିକ୍ଷା ପରିପୂର୍ଣ୍ଣ ହୋଇ ପାରେ ନାହିଁ । ଗୃହତ୍ୟାଗର ଏକ ମୂଳକାରଣ ଅଟେ ଦେଶାଟନ । ଦେଶ ଭ୍ରମଣ ଦ୍ୱାରା ବିଭିନ୍ନ ସ୍ଥାନର ଜଳବାୟୁ ଅନୁଭବ କରିବାକୁ ହୁଏ, ଜଳବାୟୁ ସହିତ ସ୍ୱାସ୍ଥ୍ୟରକ୍ଷା, ଶରୀର ସୌଷ୍ଠବ, ଗୁଣ,ଚରିତ୍ର ଓ କ୍ଷମତାର କି ଘନିଷ୍ଠ ସମ୍ବନ୍ଧ ଥାଏ ତାହା ଉପଲବ୍ଧି କରିବାକୁ ହୁଏ, ନାନା ଦେଶର ଶିକ୍ଷା ସଭ୍ୟତା, ରୀତି ନୀତି, ଆର୍ଥିକ ଅବସ୍ଥା, କୃଷି ଶିଳ୍ପ ବାଣିଜ୍ୟାଦି ବ୍ୟବସାୟ, ଶାସନୀୟ ଓ ଆଇନଗତ ବ୍ୟବସ୍ଥା ଲୋକମାନଙ୍କର ଗୁଣ କର୍ମ ଓ ଚରିତ୍ର—ଏହି ସକଳ ବିଷୟର ସମ୍ୟକ ପରିଚୟ ଲାଭ କରିବାକୁ ହୁଏ ଏବଂ ଏହା ସହିତ ଆପଣା ଗୁଣ କର୍ମ ଓ ଅବସ୍ଥା ତୁଳନା କରି ନିଜର ଅଭାବ ଓ କ୍ଷୁଦ୍ରତା ଅନୁଭବ କରିବାକୁ ହୁଏ ପୁଣି ଏହି ସକଳ ଅଭାବ ମୋଚନ କରି ଉନ୍ନତି ସାଧନ କରିବାକୁ ସାହସ, ଶକ୍ତି ଏବଂ ପ୍ରବୃତ୍ତି ଜନ୍ମେ । ପ୍ରକୃତି-ବୈଚିତ୍ର୍ୟ ଏହି ଯେ, ତାହାର ସୌନ୍ଦର୍ଯ୍ୟ ରାଶି କୌଣସି ଏକ ସ୍ଥାନରେ ଠୂଳ ହୋଇ ରହିନାହିଁ । ଦେଶ ଭ୍ରମଣ ଦ୍ୱାରା ଏହି ପ୍ରାକୃତିକ ଶୋଭା ସନ୍ଦର୍ଶନ କରି ମନ ପୁଲକିତ ହୁଏ, ହୃଦୟ ଉଦାର ହୁଏ, ପୁଣି ଏହି ସୃଷ୍ଟି ନୈପୁଣ୍ୟ ଅନୁଭବ କରି ଈଶ୍ୱରଙ୍କ ଅସୀମ ମହିମାର କିଞ୍ଚିତ୍ ପରିଚୟ ପାଇ ମନ ପ୍ରାଣ ଭକ୍ତି ରସରେ ଆପ୍ଲୁତ ହୋଇ ଅପୂର୍ବ ଆନନ୍ଦ ଲାଭ କରେ । ଅତଏବ ଶିକ୍ଷାର୍ଥୀମାନଙ୍କର ବିଦ୍ୟାଳୟ ଶିକ୍ଷାପରେ ଦେଶ ଭ୍ରମଣ କରିବାହିଁ ଶିକ୍ଷାର ଅପରିହାର୍ଯ୍ୟ ଶେଷାଂଶ ।

ଶୀଘ୍ର ପାସକରି ଚାକିରି ବା ଓକିଲାତି କରି ଧନାର୍ଜନ କରିବା ପାଇଁ ଛାତ୍ରମାନେ ବ୍ୟଗ୍ର । ଅନେକ ଛାତ୍ର ନିୟମିତ ଆହାର ବିହାର ଓ ବ୍ୟାୟାମ ପ୍ରତି ଦୃଷ୍ଟି ନରଖି ମସ୍ତିଷ୍କର ଅତିରିକ୍ତ ପରିଚାଳନା କରି ପରିଶେଷରେ ରୁଗ୍ଣକାୟ ହୋଇ ଶାରୀରିକ ପରିଶ୍ରମ କରିବାକୁ ନିତାନ୍ତ ଅସମର୍ଥ ହୋଇ ପଡ଼ନ୍ତି । ପୁଣି ଅନେକ ଛାତ୍ର ବିଦ୍ୟାଳୟ ଶିକ୍ଷାର ବ୍ୟୟ ବାହୁଲ୍ୟ ହେତୁ ଦେଶ ଭ୍ରମଣ ନିମିତ୍ତ ଧନ ଯୋଗାଇ ପାରନ୍ତି ନାହିଁ, ପରୀକ୍ଷୋତ୍ତୀର୍ଣ୍ଣ ହେବାମାତ୍ରେ ଜୀବିକା ପାଇଁ ଇତ-ସ୍ତତଃ ହୁଅନ୍ତି । ନାନା ସ୍ଥାନରେ ଶିକ୍ଷାପାଣ୍ଠି ସ୍ଥାପନ କରାଯାଏ । ଏହି ପାଣ୍ଠିରୁ ବିଦ୍ୟାର୍ଥୀମାନଙ୍କୁ ବୃତ୍ତି ଦିଆଯାଏ । ଏହିପରି ପର୍ଯ୍ୟଟନ ପାଣ୍ଠି ସ୍ଥାପିତ ହେବା ଏକାନ୍ତ ଆବଶ୍ୟକ । ବିଦ୍ୟା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ପ୍ରତ୍ୟେକ ଶିକ୍ଷାର୍ଥୀଙ୍କୁ ଦେଶଭ୍ରମଣ କରିବା ପାଇଁ ବାଧ୍ୟକରି ତା ପରେ ତାହାଙ୍କୁ ଯୋଗ୍ୟତାର ସାର୍ଟି-ଫିକେଟ ଦେବା ଉଚିତ ।

—○—

# ଜାତୀୟ ଶିକ୍ଷା ।



ଭାରତୀୟମାନେ ବିଭିନ୍ନ ଜାତିରେ ବିଭକ୍ତ । ଭାଷାକୁ ଦେଖି ଏହି ଜାତିର ବିଭାଗ । ମାତୃ ଭାଷାରେ ଯେଉଁ ଶିକ୍ଷା ଦିଆଯାଏ ତାହାହିଁ ଜାତୀୟ ଶିକ୍ଷା । ବିନା ଶିକ୍ଷାରେ କେହି ଜାତି କେବେ କୌଣସି ଉନ୍ନତି କରି ପାରିନାହିଁ । ଜାତୀୟ ଶିକ୍ଷା ଅଭାବରୁ ଉତ୍କଳ ଜାତି ଆଜି ଅନୁନ୍ନତ । ଉତ୍କଳ ଦେଶ ଖଣ୍ଡ ୨ ହୋଇ ବିଭିନ୍ନ ଜାତୀୟ ଶିକ୍ଷା ପ୍ରଭାବରେ ଆସି ନିଜର ବିଶୁଦ୍ଧ ପବିତ୍ର ଜାତୀୟ ଶିକ୍ଷା ରଖି ନ ପାରି ଜାତୀୟ ଉନ୍ନତି ସାଧନ କରି ପାରୁ ନାହିଁ । ଏହି ଜାତୀୟ ଶିକ୍ଷା ସାଧନ ସକାଶେ ଓଡ଼ିଆମାନେ ଆପଣାର ଦେଶ ମିଶ୍ରଣ ଗୃହାନ୍ତି, ଏହି ଦେଶ ମିଶ୍ରଣ ଦେଖି ସଭା ସମିତି କରନ୍ତି, ସମ୍ମିଳନୀ ବସାଇଛନ୍ତି, ଗଭର୍ଣ୍ଣମେଣ୍ଟ ନିକଟରେ ବାରମ୍ବାର ଆବେଦନ କରନ୍ତି । ଆଜି ସମସ୍ତ ଉତ୍କଳ ଅଞ୍ଚଳଗୁଡ଼ିକରେ ଏହି ଦେଶ ମିଶ୍ରଣ ଉଦ୍ୟମ ଲାଗି ଅଛି । ଯେଉଁ ଜାତୀୟ ଶିକ୍ଷା ସକାଶେ ଓଡ଼ିଆମାନେ ଆପଣା ଦେଶ ମିଶ୍ରଣ ଗୃହାନ୍ତି, ଯଦି ସେମାନେ ସେହି ଜାତୀୟ ଶିକ୍ଷା ମୂଳରେ କୁଠାର-ଘାତ କରନ୍ତି, ତେବେ ସେମାନଙ୍କର ଦେଶ ମିଶ୍ରଣ ଆନ୍ଦୋଳନ ଓ ଉତ୍କଳ ସମ୍ମି-ଳନୀ ସ୍ଥାପନରେ କି ପ୍ରୟୋଜନ ? ହସ୍ତୀର ସ୍ନାନ ସଦୃଶ ମୂଲ୍ୟହୀନ ।

ଓଡ଼ିଆମାନେ ଯେତେ ବିଜାତୀୟ ଶିକ୍ଷା ସଂସ୍ରବରେ ଆସିଛନ୍ତି, ସେମାନେ ଆପଣାର ଜାତୀୟତା ସେତେ ହରାଇଛନ୍ତି । ଯେଉଁ ଜାତିର ପ୍ରାଚୀନ ସଭ୍ୟତା ଓ ଶିକ୍ଷା ସମ୍ପଦ ନ ଥାଏ ସେହି ଜାତି କୌଣସି ପ୍ରବଳ ଜାତି ସମ୍ପର୍କରେ ରହିଲେ ସେହି ପ୍ରବଳ ଜାତିର ଶିକ୍ଷା ସଭ୍ୟତାକୁ ଆପଣାର ଜାତୀୟ କରି ନିଏ, ଏବଂ ତହିଁରେ ଉତ୍କର୍ଷ ଲାଭ କରିବାହିଁ ସେହି ଜାତିର ଜାତୀୟ ଉନ୍ନତି ହୁଏ । କିନ୍ତୁ ଓଡ଼ିଆ ଜାତିର ପ୍ରାଚୀନ ପାର୍ଥକ୍ୟ ଅଛି, ସଭ୍ୟତା ଏବଂ ଶିକ୍ଷା ସମ୍ପଦ ଅଛି । ପ୍ରବଳ ଜାତି ପ୍ରଭାବରେ ଏହି ଜାତି ଆପଣାର ପାର୍ଥକ୍ୟ ହରାଇ ପାରିବ ନାହିଁ କିମ୍ବା ଅପର ଜାତି ସହିତ ମିଳିମିଶି ଯାଇ ପାରିବ ନାହିଁ, ତେବେ ହେବ କଣ ? ହେବ ନଘର, ନତୀର, ନତୁବା ଏକ ବିଚିତ୍ର ଖେଚଡ଼ା ଜାତି । ଗଞ୍ଜାମରେ ଓଡ଼ିଆମାନେ ତେଲୁଗୁ ଶିକ୍ଷା ପ୍ରଭାବରେ ଯେପରି ଖେଚଡ଼ା ହେବାକୁ ବସିଛନ୍ତି, ମେଦିନୀପୁରରେ ବଙ୍ଗାଳୀ ପ୍ରଭାବରେ ଏବଂ ସିଂହଭୂମିରେ ହିନ୍ଦି ପ୍ରଭାବରେ ସେହି-ପରି ଖେଚଡ଼ା ହୋଇ ପଡ଼ୁଛନ୍ତି ।

ଉତ୍କଳର ବର୍ତ୍ତିତ ଅଞ୍ଚଳର ସ୍ୱାଧୀନଚେତା ଉତ୍ତ୍ରଦର୍ଶୀ ୟୁରୋପୀୟ କର୍ତ୍ତୃପକ୍ଷ-ମାନେ ମଧ୍ୟ କହନ୍ତି ଯେ ସେହି ଅଞ୍ଚଳର ଦେଶୀୟ ଶିକ୍ଷା ଓଡ଼ିଆ ଭାଷାରେ ହେବା ଉଚିତ । ପୁଣି ବିଦେଶୀୟ ଅଧିବାସିମାନଙ୍କର ମଧ୍ୟ ସେହି ଦେଶୀୟ ଭାଷାରେ ଶିକ୍ଷା ଲାଭ କରିବା ଉଚିତ । ଗୋଟିଏ ଓଡ଼ିଆ ଗ୍ରାମରେ କେତେ ଘର ତେଲୁଗୁ ଲୋକ ବାସ କରନ୍ତି, ସେହି ଗ୍ରାମରେ ଏକ ସ୍କୁଲ୍ ସ୍ଥାପନ କରିବା ବେଳେ ଜଣେ ତେଲୁଗୁ ଶିକ୍ଷକ ନିଯୁକ୍ତ ହେବା ନିମନ୍ତେ କେହି ବୋର୍ଡ ମେମ୍ବର ପ୍ରସ୍ତାବ କଲାରୁ କର୍ତ୍ତୃପକ୍ଷ ସାହେବ କହିଲେ ଯେ, "ଏହି ଦେଶର ଭାଷା ହେଉଛି ଓଡ଼ିଆ, ତେଲୁଗୁ ପିଲାମାନେ ଓଡ଼ିଆ ଭାଷାରେ ଶିକ୍ଷା କରିବାକୁ ବାଧ୍ୟ ହେବା ଉଚିତ" । ଶିକ୍ଷା ବିଭାଗର କର୍ତ୍ତୃପକ୍ଷମାନେ ମଧ୍ୟ ସ୍ପଷ୍ଟ କଥାରେ ଏହି ମତ ପ୍ରକାଶ କରନ୍ତି । ପୁଣି ଏହି କଥା ମଧ୍ୟ ମନେ ରଖିବାକୁ ହେବ ଯେ, ଦୋଭାଷୀ ବିଦ୍ୟାଳୟଗୁଡ଼ିକ ବହୁବ୍ୟୟ ସାପେକ୍ଷ, ଓ ଅସୁବିଧା ଜନକ ହୁଏ, ପୁଣି ସୁପରିଚାଳିତ ହୋଇ ପାରେ ନାହିଁ । ସୁତରାଂ ଆଶାନୁରୂପ ଉନ୍ନତିପ୍ରଦ ହୁଏ ନାହିଁ ବୋଲି ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷମାନଙ୍କର ବିଶ୍ୱାସ ।

ଚିକାକୋଲ ତାଲୁକା ଛାଡ଼ି ସମଗ୍ର ଗଞ୍ଜାମ ଓ ଜୟପୁର ଜିଲ୍ଲା ଉତ୍କଳ ପ୍ରଦେଶ ଅଟେ ବୋଲି ଉତ୍କଳ ସମ୍ମିଳନୀ ବର୍ଷକୁବର୍ଷ ଘୋଷଣା କରି ଆସୁଅଛି । ପୁଣି ଭାରତ ମହାଦେଶରେ ଭାଷାଗତ ସର୍ଭେ ( Linguistic Survey ) ଅନୁ-ସାରେ ଉକ୍ତ ପ୍ରଦେଶଗୁଡ଼ିକୁ ଉତ୍କଳର ଅଞ୍ଚଳ ବିଶେଷ ରୂପେ ଦେଖା ଯାଇଅଛି । ବିଚ୍ଛିନ୍ନ ଉତ୍କଳ ଖଣ୍ଡ ଗୁଡ଼ିକୁ ଗଭର୍ଣ୍ଣମେଣ୍ଟ ଏହିକ୍ଷଣି ଏକ ପ୍ରାଦେଶିକ ଶାସନାଧୀନ ବା ଏକ ବିଶ୍ୱବିଦ୍ୟାଳୟ ଅଙ୍ଗୀଭୂତ କରି ପାରି ନ ଥିଲେହେଁ ଧୀରେ ଧୀରେ ଉକ୍ତ ଖଣ୍ଡମାନଙ୍କରେ ଓଡ଼ିଆ ଭାଷା ଶିକ୍ଷାର ପଥ ପ୍ରସାର କରି ଦେଉଅଛନ୍ତି । ଗଞ୍ଜାମର କୌଣସି କୌଣସି ଅଞ୍ଚଳରୁ ତେଲୁଗୁ ଭାଷା ଉଠାଇଦେଇ କେବଳ ଓଡ଼ିଆ ଭାଷା ବ୍ୟବହାରର ଆଦେଶ କରିଛନ୍ତି ଏବଂ କେବଳ ଶିକ୍ଷା ବିଭାଗରେ ନୁହେଁ ଅନ୍ୟାନ୍ୟ ବିଭାଗରେ ବହୁ ପରିମାଣରେ ଓଡ଼ିଆ କର୍ମଚାରୀ ନିଯୁକ୍ତ କରିବାକୁ ଚାହୁ-ଛନ୍ତି । ଗଞ୍ଜାମରେ ତେଲୁଗୁ ଓ ଓଡ଼ିଆ ଭାଷାରେ କର୍ମଚାରୀମାନଙ୍କର ଟେଷ୍ଟ ପାସ କରିବା କଥା ଥିଲା । ବର୍ତ୍ତମାନ ତେଲୁଗୁ ଉଠାଇ ଦେଇ ଏ ସମସ୍ତ କର୍ମଚାରୀ-ମାନଙ୍କ ପାଇଁ କେବଳ ଓଡ଼ିଆ ଟେଷ୍ଟ ପାସ କରିବା ନିୟମ କରାଯାଇଅଛି ।

ଦୁଃଖର ବିଷୟ ଦେଶର ଏପରି ଅବସ୍ଥାରେ କେହି କେହି ରଜା ଜମିଦାର ଓ କ୍ଷମତାଶାଳୀ ବ୍ୟକ୍ତିମାନେ ଓଡ଼ିଆ ଦେଶରେ ତେଲୁଗୁ ଶିକ୍ଷାର ପ୍ରଶ୍ରୟ ଦେଉଛନ୍ତି । ଓଡ଼ିଆ ଛାତ୍ରମାନଙ୍କ ପାଇଁ ଉତ୍କଳ ଭାଷାନଭିଜ୍ଞ ତେଲୁଗୁ ଶିକ୍ଷକ ନିଯୁକ୍ତ କରନ୍ତି,

ତେଲୁଗୁ ଛାତ୍ରମାନଙ୍କୁ ଓଡ଼ିଆ ଅପେକ୍ଷା ଅଧିକ ବୃତ୍ତି ଦେଇଥାନ୍ତି ପୁଣି ମାତୃଭାଷା ପରିତ୍ୟାଗ କରି ତେଲୁଗୁ ଶିକ୍ଷା କରୁଥିବା ଓଡ଼ିଆ ଛାତ୍ରମାନଙ୍କୁ ବୃତ୍ତି ଦିଅନ୍ତି ନତୁବା ସେମାନଙ୍କଠାରୁ ଅଧା ସ୍କୁଲ ଫିସ ଗ୍ରହଣ କରନ୍ତି । ସୁରଙ୍ଗୀ ରାଜା ବାହାଦୁର ଯେ କି ବିଲାତ ଫେରି ଅଛନ୍ତି, ପୁଣି ଯେ କି ଉତ୍କଳ ସମ୍ମିଳନୀର ସଭାପତିରୂପେ ଦେଶ ମିଶ୍ରଣର ପ୍ରସ୍ତାବ କରିଛନ୍ତି, ବର୍ତ୍ତମାନ ଇଚ୍ଛାପୁର ଠାରେ ଏକ ସ୍କୁଲ ସ୍ଥାପନ କରି-ଛନ୍ତି । ଏହି ସ୍କୁଲରେ ତେଲୁଗୁ ଓଡ଼ିଆ ଦୁଇ ଭାଷାରେ ଶିକ୍ଷା ଦିଆଯାଏ । ପ୍ରଧାନ ଶିକ୍ଷକମାନେ ତେଲୁଗୁ ଅଟନ୍ତି, ବୋଧହୁଏ ବହୁସଂଖ୍ୟକ ତେଲୁଗୁ ଛାତ୍ର ଅଛନ୍ତି । ଏହି ସ୍କୁଲର ତତ୍ତ୍ୱାବଧାରକ ହେଉଛନ୍ତି ମାନଧାତା ଗୋବିନ୍ଦ ପଟ୍ଟନାୟକ । ଏ ଜଣେ ଓଡ଼ିଆ ବି, ଏ, ବି, ଏଲ୍; ଓକିଲ । ଉକ୍ତ ସ୍କୁଲ ସକାଶେ ତେଲୁଗୁ ଓଡ଼ିଆ ଓ ଇଂରାଜୀ ଜାଣିବା ସଂସ୍କୃତ ପଣ୍ଡିତ ପାଇଁ ମାନଧାତା ମହାଶୟ ପୁଣି ସେ ଦିନ ଏକ ବିଜ୍ଞାପନ ଦେଇ ଥିଲେ । ଦୋଭାଷୀ ସ୍କୁଲଗୁଡ଼ିକ କୃତକାର୍ଯ୍ୟ ହୁଏ ନାହିଁ ବୋଲି ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷମାନେ କହୁଥିବା ବେଳେ ରାଜା ବାହାଦୁର ଆପଣା ସ୍କୁଲ ଖଣ୍ଡିକୁ ବହୁଭାଷୀ କରିବାକୁ ବସିଅଛନ୍ତି । ସ୍କୁଲ ସ୍ଥାପନ ଦ୍ୱାରା ରାଜା ମହୋଦୟ ପୁଣ୍ୟ ଅର୍ଜନ କରିପାରନ୍ତି, ଦେଶରେ ନାମ ବିଖ୍ୟାତ କରି ପାରନ୍ତି, ପୁଣି ସରକାରଙ୍କଠାରୁ ପଦବୀ ପାଇପାରନ୍ତି, କିନ୍ତୁ ତଦ୍ୱାରା ଓଡ଼ିଆ ଜାତିର କିଛି ବିଶେଷ ଉପକାର ହୁଏ ନାହିଁ । ସେମାନଙ୍କ ଜାତୀୟ ଶିକ୍ଷା ଲାଭ ହେଲା ନାହିଁ ଏବଂ ଜାତୀୟ ସାହିତ୍ୟ ଓ ଜାତୀୟ ମମତା ବଢିଲା ନାହିଁ ।

ଏଣେ ନିଜର ସୁରଙ୍ଗୀ ରାଜ୍ୟ ତମାମ ଖାଲି ପଡ଼ିଛି । ନିରୀହ ଓଡ଼ିଆ ପ୍ରଜାକୁଳ ଦିନକୁଦିନ ମୂର୍ଖରୁ ମୂର୍ଖତର ହେଉଛନ୍ତି, ତେଣେ ରାଜା ମହୋଦୟ ଇଚ୍ଛାପୁର ସହରବାସୀ ତେଲୁଗୁମାନଙ୍କ ଶିକ୍ଷା ଓ ସୁବିଧା ସକାଶେ ଇଚ୍ଛାପୁରଠାରେ ସ୍କୁଲ ସ୍ଥାପନ କରିଅଛନ୍ତି । ଏହାକୁ କି କହି ଜାତୀୟତା, ବହୁଦର୍ଶିତା ବା ଉଦାରତା ? ସେ ତ ହେଉଛନ୍ତି ଆମ୍ଭମାନଙ୍କର ଓଡ଼ିଆ ରାଜା, ଆମ୍ଭେ ଗରିବ ପ୍ରଜାକୁଳ ବା ତାହାଙ୍କୁ କଣ କହି ପାରିବୁ ? ସେମୁଙ୍କୁ ଯାହା ସୁନ୍ଦର ଦିଶୁଛି, ସେ ତାହା କରି ଯାଉଛନ୍ତି । ଗୃହ ଛିଦ୍ର ବା କାହାଆଗେ କହିବୁ ? ଆମ୍ଭର ଉତ୍କଳୀୟ ଉଚ୍ଚ ଶିକ୍ଷିତ ମାନଧାତା ମହାଶୟ ହେଉଛନ୍ତି ସ୍କୁଲର ପରିଚାଳକ ବା ରାଜାଙ୍କର ଉପଦେଶକ । ମାନଧାତା ମହାଶୟ କି ଜାତୀୟ ଶିକ୍ଷାପ୍ରତି ରାଜା ବାହାଦୁରଙ୍କର ମନ ଟାଣି ନେଇ ପାରୁ ନାହାନ୍ତି ? ନା, ତାହା ନୁହେଁ, କାରଣ, ଯେ କି ଜାତୀୟ ପବିତ୍ର ସମ୍ମିଳନୀ ମଣ୍ଡପରେ ଜାତୀୟ ଯଜ୍ଞ ପୀଠର ପୁରୋଧା ସ୍ୱରୂପରେ ଉତ୍କଳ ଦେଶ ମିଶ୍ରଣର ଘୋଷଣା କରିଛନ୍ତି, ସେ କି ସ୍ୱତ୍ୱ-

ପରିତ୍ୟାଗ କରି ଆତ୍ମଘାତୀ ଅନୁଷ୍ଠାନର ପ୍ରତିଷ୍ଠାତା ହୁଅନ୍ତେ, ଏହା ସମ୍ଭବପର ବୋଧ ହୁଏ ନାହିଁ । ବୋଧହୁଏ ମାନଧାତା ମହାସ୍ୱାଙ୍କର ମନ୍ତ୍ରଣାରେ ପଞ୍ଚ ରାଜା ମହୋଦୟ ଲକ୍ଷ ଭ୍ରଷ୍ଟ ହୋଇଛନ୍ତି । ଶୁଣିଥିଲୁ ଶ୍ରୀମାନ୍ ମାନଧାତା ପଟ୍ଟନାୟକ କିଛିକାଳ ବଡ଼ଖେମଣ୍ଡୀ ରାଜାଙ୍କ ସ୍କୁଲର ମାନେଜର ଥିଲେ । ସେତେବେଳେ ସେ କଲେଜ ଉତ୍ତୀର୍ଣ୍ଣ ଭାଷାନଭିଜ୍ଞ ତେଲଙ୍ଗା ବ୍ୟକ୍ତିଙ୍କୁ ବାଛିଆଣି ଓଡ଼ିଆ ଛାତ୍ରମାନଙ୍କ ପ୍ରଧାନ ଶିକ୍ଷକ ସ୍ୱରୂପରେ ନିଯୁକ୍ତ କରିଥିଲେ । ଓଡ଼ିଶାର ଶିକ୍ଷିତ ଓଡ଼ିଆମାନଙ୍କୁ ଆଣି ଗଞ୍ଜାମରେ ଶିକ୍ଷକ ରୂପେ ନିଯୁକ୍ତ କରିବାକୁ ସେ ଇଚ୍ଛା କରନ୍ତି ନାହିଁ । ଏହି କଥା ସେ ନିଜେ ଅନେକବାର ପ୍ରକାଶକରି କହିଥାନ୍ତି । ଏହି ଶିକ୍ଷିତ ମହାଶୟ ଚାହାନ୍ତି ଯେ, ସେ କେତେଗୁଡ଼ିଏ ( Passed Candidates ) ଉତ୍ତୀର୍ଣ୍ଣ ଯୁବକ ବାହାର କରି ଦେଇ ପ୍ରଶଂସାପତ୍ର ନେଇଯିବେ । ଏଥି ପାଇଁ ଛାତ୍ରମାନେ ଯେ କୌଣସି ଭାଷା ସାହାଯ୍ୟରେ ହେଉ ଇଂରାଜି ଗୃହ କଥା କହିବା, ଲେଖିବା ଅନୁକରଣ କରି ପାରି ଉପାଧି ଧାରୀ ବା ମାର୍କାମରା ହୋଇଗଲେ ହେଲା । ଏହି ଶିକ୍ଷା ଦ୍ୱାରା କି ସଦ୍‌ବିଦ୍ୟା ଲାଭ ହୁଏ ? ସଦ୍‌ବିଦ୍ୟା ନୁହେଁ ଏହାକୁହିଁ କହି ଶ୍ୱବିଦ୍ୟା । ଏହି ଭଳି ଶିକ୍ଷା ଲାଭକରି ଛାତ୍ରମାନେ, ଯେଉଁମାନେ ଦେଶର ଭବିଷ୍ୟତ ନେତା ହୁଅନ୍ତେ, ଏବେ ଶ୍ୱ ବୃତ୍ତିରେ କାଳ କାଟୁଅଛନ୍ତି । ଏହି ପରୀକ୍ଷୋତ୍ତୀର୍ଣ୍ଣ ଯୁବକମାନେ ମାସିକ ଟ ୧୫ ଙ୍କାରେ ହେଉ ପଛେ ଗୋଲାମଗିରି ପକାଶେ ଲାଳାୟିତ ହୁଅନ୍ତି, ଯଦି ଘଟଣାକ୍ରମେ ବ,ଏ, ବି ଏଲ୍, ହୋଇ ପଡ଼ନ୍ତି ତେବେ ଓକିଲାତି, ମୁନସିଫି ଇତ୍ୟାଦି କରି ନିଜର ପେଟ ଏବଂ ପରିବାର ପାଇଁ ଅର୍ଥ ସଂଗ୍ରହ କରନ୍ତି ।

— ❊ —

# ଶିକ୍ଷା ଓ ଶିକ୍ଷକତା ।

ଶିକ୍ଷା ଲାଭ କରିବା ଅଟେ ମନୁଷ୍ୟର ମନୁଷ୍ୟତା, ଶିକ୍ଷା ବିହୀନ ମନୁଷ୍ୟ ମନୁଷ୍ୟ ପଦବାଚ୍ୟ ନୁହେଁ । ଯେଉଁ ଲୋକ କୌଣସି ଶିକ୍ଷା ପାଇନାହିଁ ସେ ମନୁଷ୍ୟ, ମନୁଷ୍ୟ ନୁହେଁ । ଯଦି ମନୁଷ୍ୟ ହୁଏ ତେବେ ତାହାକୁ ବନ୍ୟ ମନୁଷ୍ୟ ବୋଲିବାକୁ ହେବ । ପ୍ରତ୍ୟେକ ମନୁଷ୍ୟର, ଆବାଳ ବୃଦ୍ଧ ବନିତା ସମସ୍ତଙ୍କର ଶିକ୍ଷା ପାଇବା ମୂଳ କର୍ତ୍ତବ୍ୟ । ଶିକ୍ଷା ପଦରେ କେବଳ ସ୍କୁଲ୍ ଓ କଲେଜରେ ପଢି ବ, ଏ, ବୃ, ଏଲ୍ ପାସ୍ କରିବା ନୁହେଁ, କାବ୍ୟ କେତେ ଖଣ୍ଡ ପଢି କାବ୍ୟ-

ଷଣ୍ଡ ହେବା କଥା ନୁହେଁ, ବ୍ୟାକରଣକୁ ଘୋଷି ବ୍ୟାଧିକରଣ କରିବା ନୁହେଁ, କେବଳ ଦର୍ଶନ ଓ ବିଜ୍ଞାନ ଚର୍ଚ୍ଚାରେ ନିମଗ୍ନ ରହିବା, କିବା କୃଷି, ଶିଳ୍ପ ବା ବାଣିଜ୍ୟରେ ବ୍ୟାପୃତ ରହିବା ମଧ୍ୟ ନୁହେଁ । ଯେ କୌଣସି ବିଷୟରେ ହେଉ, ଅଷ୍ଟାଦଶ ବିଦ୍ୟା ବାହାରେ ଘାସକଟା ଠାରୁ ଘୋଡାଚଢ଼ା ପର୍ଯ୍ୟନ୍ତ କିଛି ଜାଣିବାଟା ମଧ୍ୟ ଶିକ୍ଷାର ଅନ୍ତର୍ଗତ । ଶିକ୍ଷାଦ୍ୱାରା ବିଦ୍ୟା ବା ଜ୍ଞାନ ଲାଭହୁଏ ।

ବିଦ୍ୟା ବା ଜ୍ଞାନର ମୂଲ୍ୟନାହିଁ । ତାହା ଅମୂଲ୍ୟ ଅଟେ । ବିଦ୍ୟାର ମୂଲ୍ୟ କେବଳ ବିଦ୍ୟା ଅଟେ । ବିଦ୍ୟା ଦାନକଲେ ବିଦ୍ୟା ବଢ଼େ । ଟଙ୍କା ବ୍ୟୟକଲେ, ବା ଋଣ ଦେଲେ ଯେପରି ତହିଁରୁ ଟଙ୍କା ଜାତ ହୁଏ, ସେହିପରି ବିଦ୍ୟା ଦାନକଲେ ବିଦ୍ୟା ବେଶିହୁଏ । ଟଙ୍କା ପଇସା ମୂଲ୍ୟରେ ବିଦ୍ୟା ବିକ୍ରି ହୁଏନାହିଁ । ଯେଉଁମାନେ ପ୍ରକୃତ ଶିକ୍ଷିତ ସେମାନେ ବିଦ୍ୟାର ମୂଲ୍ୟ ଜାଣନ୍ତି । ସେମାନେ ବିଦ୍ୟା ବିକ୍ରୟ କରନ୍ତି ନାହିଁ । ଟଙ୍କା ପଇସା ମୂଲ୍ୟରେ ବିଦ୍ୟାକୁ ବିକ୍ରୟ କରିବାଦ୍ୱାରା ଏବଂ ଅର୍ଥ ମାପକାଠିରେ ବିଦ୍ୟାକୁ ମାପିବା ବିଦ୍ୟାପ୍ରତି ଅପମାନ କରିବା କଥା, ପୁଣି ବିଦ୍ୟାର ଅପବ୍ୟବହାର କରିବାର କଥା । ଯେଉଁମାନେ ଶିକ୍ଷା ପାଆନ୍ତି ସେମାନଙ୍କର ଶିକ୍ଷାଦେବା ଉଚିତ । ଅର୍ଜ୍ଜନକଲେ ବ୍ୟୟକରିବା ଉଚିତ । ବିଦ୍ୟା ପ୍ରାପ୍ତହେଲେ ବିଦ୍ୟା ଦାନକରିବା ତତୋଽଧିକ ଆବଶ୍ୟକ । ଯେଉଁ ସମାଜ ବା ଦେଶରେ ଶିକ୍ଷିତ ସଂଖ୍ୟା ଅନୁପାତରେ ଶିକ୍ଷକ ବାହାରି ନାହାନ୍ତି, ସେହି ସମାଜ ବା ଦେଶ ପ୍ରକୃତ ଶିକ୍ଷାର ଲାଭ ପାଇନାହିଁ ଏବଂ ଉନ୍ନତି ପଥରେ ଅଗ୍ରସର ହୋଇନାହିଁ ବୋଲିବାକୁ ହେବ । ଯେଉଁ ଭାରତ ମହାଦେଶରେ ଆଦର୍ଶ ଗୁରୁକୁଳ ଥିଲେ, ଯେଉଁମାନେ ନିଜେ ଜାଣିବା ପାଠ ଅନ୍ୟକୁ ଶିଖାନ୍ତି ନାହିଁ ବୋଲି ବ୍ରହ୍ମରାକ୍ଷସ ହୁଅନ୍ତି, ଏବେ ସେହି ଦେଶର ଲୋକେ ଶିକ୍ଷକତାକୁ ହୀନ ଚକ୍ଷୁରେ ଦେଖୁଛନ୍ତି ।

ଶିକ୍ଷା ବିଭାଗରେ ବେଶି ଦରମା ମିଳେ ନାହିଁ ବୋଲି ଲୋକେ ଅନ୍ୟବିଭାଗରେ କାମ କରିବାକୁ ଚାହାନ୍ତି ଏବଂ ଶିକ୍ଷା ବିଭାଗ ପରିତ୍ୟାଗ କରନ୍ତି । ବେଶି ବର୍ଦ୍ଧନ ମିଳିବ ନାହିଁ, କାମଟା ସ୍ଥାୟୀ ହେବନାହିଁ, ପୁଣି ପେନ୍‌ସନ୍ ମିଳିବ ନାହିଁ-ଏହିପରି ନାନା ସନ୍ଦେହରେ ପଡି ଅନେକ ଶିକ୍ଷିତ ଯୁବକ ଶିକ୍ଷକ ହେବାକୁ ମଙ୍ଗନ୍ତିନାହିଁ । କେବଳ ଧନନୁହେଁ ଅନେକ ଲୋକ ଅଧିକାର ଚାହାନ୍ତି । ଅନ୍ୟ ଲୋକଙ୍କ ଉପରେ ଅଧିକାର କରିବା, ଅନ୍ୟଲୋକେ ଏମାନଙ୍କର ଅନୁଗତ ହେବା ଏମାନଙ୍କର ଆନନ୍ଦର ବିଷୟ । ପ୍ରେମ ଦ୍ୱାରା ଯେଉଁ ଅଧିକାର କରାଯାଏ ତାହାହିଁ ପ୍ରକୃତ ଅଧିକାର । ଭୀତି ପ୍ରଦର୍ଶନ ଦ୍ୱାରା ଯେଉଁ ମାନନା ଆକର୍ଷଣ କରିବାକୁ ହୁଏ ତହିଁରେ ଆନ୍ତରିକତା ନଥାଏ । ଏହା କେବଳ କପଟ ବ୍ୟବହାର ଅଟେ । ଏହି ସମସ୍ତ ଅଧିକାର, ପ୍ରଭୁତ୍ୱ

ମୂଳରେ ରହିଛି ଧନାଶା ବିଦ୍ୟମାନ । ଏହି ଶିକ୍ଷିତ ଲୋକମାନେ ଯେପରି ଧନ ଲୁହାନ୍ତି ଏବଂ ପ୍ରଭୁତ୍ୱ ଇଚ୍ଛା କରନ୍ତି, ଲୋକେ ସେହିପରି ଶିକ୍ଷକଙ୍କୁ ଅଳ୍ପଧନ ଦିଅନ୍ତି ଏବଂ ଯଥେଷ୍ଟ ମାନ୍ୟ କରନ୍ତି ନାହିଁ; ପୁଣି ଭକ୍ତି ବା ଭୀତି କରନ୍ତି ନାହିଁ ।

ଯଦି ଅନେକ ଶିକ୍ଷିତ ଲୋକ ଶିକ୍ଷକ ହେବାକୁ ବାହାରନ୍ତି ତେବେ ସେମାନେ ଅନ୍ୟ ବୃତ୍ତିର ଅନ୍ୱେଷଣରେ ଶିକ୍ଷା ବିଭାଗରେ ପ୍ରବେଶ କରନ୍ତି । ଏମାନେ ଆପଣାର ଅନ୍ୟ ବୃତ୍ତିର ପ୍ରାସାଦ ଉପରକୁ ଉଠିବା ପାଇଁ ଶିକ୍ଷକତାକୁ କିଛିକାଳ ସକାଶେ ପାବଚ୍ଛପରି ବ୍ୟବହାର କରନ୍ତି, ଅନ୍ୟ ବୃତ୍ତିର ପାଇଲେ ଏହି ଶିକ୍ଷକତା ବା ପ୍ରକୃତ ପ୍ରଭୁତ୍ୱ ପରିତ୍ୟାଗ କରି ଚାଲିଯାଆନ୍ତି । ଶିକ୍ଷା ବିଭାଗର ବୃତ୍ତିର ସହିତ ତୁଳନା କରିବାକୁ ହେଲେ ଅନ୍ୟ ବିଭାଗର ବୃତ୍ତିର ଅଟେ ଗୋଲମରିଚ । ତଥାପି ଶିକ୍ଷିତବୃନ୍ଦ ଏହି ଦାସତ୍ୱ ସକାଶେ ଲାଳାୟିତ ।

ଅଉ ଏକ ଭାରି ପରିତାପର ବିଷୟ—ଶିକ୍ଷିତ ଯୁବକବୃନ୍ଦ ସଂକୀର୍ଣ୍ଣ ସ୍ୱାର୍ଥତାର ଅଭିଭାବକ ମାନଙ୍କର ପ୍ରେରଣାରେ ପଡି ଆପଣାର କର୍ତ୍ତବ୍ୟ ପଥରୁ ବିତାଡିତ ହୋଇ ପଡନ୍ତି, ରୁଚି ଅନୁଯାୟୀ କାର୍ଯ୍ୟରୁ ନିବୃତ୍ତ ହୁଅନ୍ତି, ଦେଶ ହିତକର ଅନୁଷ୍ଠାନରୁ ବଞ୍ଚିତ ହୁଅନ୍ତି ଏବଂ ପରିଣାମରେ ନିଜର ପ୍ରକୃତ ଅବନତି ସାଧନ କରନ୍ତି । ଏ ସମ୍ବନ୍ଧରେ ପିତା ମାତା ଓ ଗୁରୁଜନ ମାନଙ୍କର ଆଦେଶ ବା ଅନୁରୋଧ କେତେଦୂର ପାଳନୀୟ ଦେଖାଯାଉ । ଯେତେବେଳେ କୌଣସି ଯୁବକ ସୈନିକ ବିଭାଗରେ ପ୍ରସଂସାର ସହିତ କାର୍ଯ୍ୟ କରିପାରେ ବା ଭଲ ବାରିଷ୍ଟର କରିପାରେ ନତୁବା ଅନ୍ୟ କୌଣସି ବିଭାଗରେ ଉତ୍କୃଷ୍ଟ କାର୍ଯ୍ୟ କରିପାରେ, ଏହିକଥା ଭାବି ଅଭିଭାବକମାନେ ଯୁବକ ଗୁଡିକୁ ଶିକ୍ଷା ବିଭାଗରେ ପ୍ରବେଶ କରିବାକୁ ନିଷେଧ କରନ୍ତି, ତେବେ ଅବଶ୍ୟ ତାହାଙ୍କର ଉପଦେଶ ପାଳନୀୟ, ଯେହେତୁ ସେମାନେ ବେଶି ଅନୁଭବଦ୍ୱାରା ଯୁବକର ତଥା ଲୋକଙ୍କର ଅଧିକ ମଙ୍ଗଳ ସାଧନ କରି ପାରିବା ସମ୍ଭାବନା । କିନ୍ତୁ ଯେତେବେଳେ ଅଭିଭାବକ ଗଣ ଯୁବକର ଶକ୍ତି; ସାମର୍ଥ୍ୟ, ରୁଚି ଏବଂ ଶିକ୍ଷାର ବିଚାର ନକରି ସଂକୀର୍ଣ୍ଣ ସ୍ୱାର୍ଥତାର ବଶ ହୋଇ ଧନ ଲାଳସାରେ ଶିଷ୍ୟ ବା ଅନୁଗତ ଯୁବକ ମାନଙ୍କୁ ଡେପୁଟି, ଓକିଲ୍ ବା ମୁନସଫ୍ ହେବାକୁ ଯତ୍ନ କରିବା ପାଇଁ ପ୍ରବର୍ତ୍ତନା କରିବେ ତେବେ ସେମାନଙ୍କର ଇଚ୍ଛା ଓ ଆଦେଶ ସର୍ବଥା ବର୍ଜ୍ଜନୀୟ ।

ଶିକ୍ଷା ପ୍ରଦାନର ନୈତିକ ବାଧ୍ୟତା ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଉପରେ ନିହିତ ଅଛି । ତୁମ୍ଭେ ଶିକ୍ଷା ବିଭାଗରେ କାର୍ଯ୍ୟ କର, ସୈନିକ ବିଭାଗରେ କାର୍ଯ୍ୟ କର; ପ୍ରତ୍ୟେକ ବ୍ୟକ୍ତିଙ୍କର ଯେକୌଣସି ବିଭାଗରେ ଶିକ୍ଷକତା କରିବା ଉଚିତ ।

ଶିକ୍ଷାଦାନ ଯେ କେବଳ ଶ୍ରେଣୀ ପାଠୀରେ ବା ସ୍କୁଲ ଗୃହରେ ଦିଆଯିବ , ଏପରି କଥାନାହିଁ । ସର୍ବତ୍ର ଶିକ୍ଷା ପ୍ରଦାନ କରାଯାଇପାରେ । ମନୁଷ୍ୟ ଯାହା ଜାଣେ ତାହା ସେ ଅନ୍ୟଲୋକଙ୍କ ଜ୍ଞାନ ସକାଶେ ଜଣାଇ ଦେବାକୁ ବାଧ୍ୟ । ଯେଉଁମାନେ ଶିକ୍ଷା ପାଇଛନ୍ତି, ପୁଣି ଶିକ୍ଷାଦେବାକୁ ନାରାଜ ଅଛନ୍ତି, ସେମାନଙ୍କର ଶିକ୍ଷାପାଇବା ଅଧିକାର ନାହିଁ । ସେମାନେହିଁ ଆଜି ଆମ୍ଭମାନଙ୍କର ବେଦ ପାଠରୁ ବଞ୍ଚିତ ଶୂଦ୍ର । ଯେଉଁମାନେ ଶିକ୍ଷା ଦିଅନ୍ତିନାହିଁ ସେମାନଙ୍କର ଶିକ୍ଷା, ପ୍ରକୃତ ଶିକ୍ଷାନୁହେଁ । ପଇସା ଖରଚ କରି ସେମାନେ ଉଣ୍ଡାମି, ଗୁଲ୍ଲି ଶିଖିଛନ୍ତି । ଶିକ୍ଷକମାନେ କେବଳ ଦେଶର ପ୍ରକୃତ ସେବକ । ଏମାନେ ଦେଶରେ ପ୍ରକୃତ ମନୁଷ୍ୟ ବଢ଼ାନ୍ତି । ଯେଉଁମାନେ ମନୁଷ୍ୟର ମନକୁ ପ୍ରଭାବାନ୍ୱିତ କରି ପକାନ୍ତି ସେହିମାନେହିଁ ପ୍ରକୃତ ଶିକ୍ଷକ । "ମନ ଏବ ମନୁଷ୍ୟାଣାଂ"; ମନହେଲା ମନୁଷ୍ୟର ମନୁଷ୍ୟତା । ସେହି ମନର ଅଧି-କାରୀ ହୁଅନ୍ତି ଶିକ୍ଷକ । ଶିକ୍ଷକମାନେ ମନକୁ ସଜାଡି ରଖନ୍ତି ଏବଂ ସଂସାର ସଙ୍ଗେ ସଙ୍ଗେ ଆଚାରର ପ୍ରବର୍ତ୍ତକ ହୁଅନ୍ତି । ଶିକ୍ଷକ କହିଲେ ଯେ କେବଳ ସ୍କୁଲର ଶିକ୍ଷ-କଙ୍କୁ ବୁଝାଇବ ଏହାନୁହେ, ପ୍ରଚାରକ, ଉପଦେଶକ, ଲେଖକ, ପ୍ରବର୍ତ୍ତକ, ସମ୍ପାଦକ, ଏପରି ଅନେକେ ଅଟନ୍ତି ଶିକ୍ଷକ ।

ଶିକ୍ଷାର ପରିଣାମ ହୁଏ ଶିକ୍ଷକତା । ଶିକ୍ଷକତା ନକରିବା ପର୍ଯ୍ୟନ୍ତ ବିଦ୍ୟାର୍ଥୀ ଅବସ୍ଥା ଶେଷ ହୋଇ ନଥାଏ । ଶିକ୍ଷା ଦେବାହିଁ ବିକାଶ କ୍ରମ । ଯେଉଁ ଶିକ୍ଷିତ ବ୍ୟକ୍ତିମାନେ ଶିକ୍ଷକତା କରନ୍ତି ନାହିଁ, କରିବାକୁ ଚାହାନ୍ତି ନାହିଁ କିଂବା ଶିକ୍ଷ-କତାକୁ ହେୟଜ୍ଞାନ କରନ୍ତି ସେମାନେ ଶିକ୍ଷିତ ହୋଇ ପାରି ନାହାନ୍ତି ବୋଲି-ବାକୁ ହେବ । ଶିକ୍ଷା ଅଟେ କେବଳ ତେଲ୍ ବତୀ, ନିଆଁ କାଠି ଇତ୍ୟାଦି ଉପକରଣର ସଂଗ୍ରହ । ଶିକ୍ଷକତାହିଁ ଉକ୍ତ ଉପାଦାନ ସଂଯୋଗର ଫଳସ୍ୱରୂପ ଜ୍ୱଳନ୍ତ ଶିଖା । ତେଜହୀନ ବହ୍ନିପରି ଅଧ୍ୟାପନ ବିହୀନ ବିଦ୍ୟା ଅଟେ ଅସମ୍ଭବ । ଯେଉଁ ବିଦ୍ୟା ବିତରିତ ହୁଏ ନାହିଁ ତାହା ବିଦ୍ୟାନୁହେଁ, ତାହାକୁ ଅବିଦ୍ୟା କୁହାଯାଏ । ପ୍ରଚାରିତ ହେବାହିଁ ବିଦ୍ୟାର ଧର୍ମ । ଅପ୍ରକଟିତ ରହିବା କେବଳ ଅବିଦ୍ୟା ପକ୍ଷରେ ଶୋଭନୀୟ । ଯେଉଁମାନେ ଶିକ୍ଷାପ୍ରାପ୍ତ ହେବାପରେ ଶିକ୍ଷକତା କରିବାକୁ ଚାହାନ୍ତି ନାହିଁ ସେମାନଙ୍କ ପକ୍ଷରେ ଶିକ୍ଷା ବୃଥା ହୁଏ । ତୁମ୍ଭେ କହିବ ଯେ ଶିକ୍ଷିତ ଲୋକ ନିଜର ଜ୍ଞାନବଳରେ ନିଜେ କାର୍ଯ୍ୟକରିବ, କିନ୍ତୁ ଏକ ଲୋକ କଣ କରିବ, ସିନ୍ଧୁ ଆଗରେ ବିନ୍ଦୁପରି । ବହୁଲୋକ ଶିକ୍ଷିତ ହେବା ଦରକାର ।

ଉଦ୍ଦେଶ୍ୟ ମନ୍ଦହେଲେ ଫଳ ଅବଶ୍ୟ ମନ୍ଦହୁଏ । ପିତା ମାତାମାନେ ଜ୍ଞାନ ଉପାର୍ଜ୍ଜନ ସକାଶେ ସନ୍ତାନମାନଙ୍କୁ ପାଠ ପଢ଼ାନ୍ତି ନାହିଁ, କେବଳ ଧନ ଅର୍ଜ୍ଜନ

ନିମନ୍ତେ ସେମାନଙ୍କୁ ଶିକ୍ଷା ଦିଅନ୍ତି ପୁଣି ଧନ ବ୍ୟୟ କରନ୍ତି । ଛାତ୍ର ମଧ୍ୟ ପିତାଙ୍କୁ ବୁଝିଥାଏ ଯେ ସେ ମୁଖ୍ୟରେ ଧନ ଉପାର୍ଜ୍ଜନ କ୍ଷମତା ପାଇବ ବୋଲି ବିଦ୍ୟା ଶିକ୍ଷା କରେ ଏବଂ ଉପାଧି ଲାଭ କରେ । ଏପରି ଅବସ୍ଥାରେ ଉପାଧିଧାରୀ ଶିକ୍ଷିତ ମାନଙ୍କ ମଧ୍ୟରେ କେତେଜଣ ଶିକ୍ଷକତା ପ୍ରବୀଣ ହୋଇ ବାହାରିବେ, କେତେଜଣ ପ୍ରକୃତ ଶିକ୍ଷକ ବାହାରିବେ ? ଏମାନଙ୍କ ମଧ୍ୟରେ ଅନେକ ଶିକ୍ଷକ ବାହାରନ୍ତି ଯେଉଁମାନେ କି ଶିକ୍ଷକତା ଦ୍ୱାରା ଧନ ଉପାର୍ଜ୍ଜନ କରନ୍ତି । କିନ୍ତୁ ଏମାନଙ୍କ ମଧ୍ୟରେ କେତେଜଣ ସତ୍‌ଶିକ୍ଷକ ? ଯେଉଁମାନେ ଶିକ୍ଷକତାକୁ ଆପଣାର ଏକମାତ୍ର ବ୍ୟବସାୟ କରନ୍ତି, ସେମାନେତ ଅବଶ୍ୟ ବଞ୍ଚିବେ, ସୁଖ ସାଚ୍ଛନ୍ଦ୍ୟରେ ଆପଣାର ଜୀବିକା ନିର୍ବାହ କରିବେ । ସେମାନଙ୍କ ପାଇଁତ ଅବଶ୍ୟ କିଛି ଗୋଟାଏ ଅନ୍ନସଂସ୍ଥାନ ଦରକାର । କିନ୍ତୁ ଶିକ୍ଷକ ଏକ୍ଷଣକରେ ସଂତୃପ୍ତ ହେଲେତ ଭାଗ୍ୟର କଥା ହୁଅନ୍ତା । ଅମୁକ ସ୍କୁଲରେ ୫୮୦ ଦରମା, ଅମୁକ ସ୍କୁଲ୍ ୧୦୦, ଅମୁକ କାମଟା ଗଭର୍ଣ୍ଣମେଣ୍ଟ ସେର୍‌ଭିସ୍, ତହିଁରେ ପେନ୍‌ସନ୍ ପାଯ୍ବାଯିବ, ଅମୁକ ସ୍କୁଲରେ ଶିକ୍ଷକ ହେଲେ ଯଥେଷ୍ଟ ଅବସର ମିଳିବ, ସେହି ଅବସରରେ ରେଭିନ୍ୟୁବା ପିନାଲ୍ କୋଡ଼୍ ପଢିବାକୁ ସମୟ ମିଳିବ. କିଏ ଜାଣେ କି ଗୋଟେ ଦୁଇଟା ବର୍ଷ ମଧ୍ୟରେ ଏକାବେଳକେ ଡେପୁଟି ବା ତହସିଲଦାର ହୋଇ ପାରିବ । ଏହିପରି ଅନେକ ଦୁର୍ଭାବନା ବା ଦୁରାଶାର ବଶୀଭୂତ ହୋଇ ଅନେକେ ଶିକ୍ଷକତା କରିବାଠାରୁ ପିଲମାନେ ଅବିଦ୍ୟ ବା ମୂର୍ଖ ରହିବା ଶ୍ରେୟସ୍କର ।

ଉତ୍କଳ କେବେ ଶିକ୍ଷା ପ୍ରଦାନରେ ପଶ୍ଚାତ୍‌ପଦ ନଥିଲା । ଆଧୁନିକ ଶିକ୍ଷା ପ୍ରସାର ଅନୁପାତରେ ଶିକ୍ଷକ ବାହାରନ୍ତି ନାହିଁ ବୋଲି ସିନା ଖୋଭହୁଏ । କିନ୍ତୁ ଆନନ୍ଦର ବିଷୟ, ଆଜି କାଲି କେହି କେହି ଶିକ୍ଷକତା କରି ଲୋକସେବା କରିବାକୁ ବାହାରଛନ୍ତି । ଏହି ପବିତ୍ର କ୍ଷେତ୍ରରେ ସତ୍ୟବାଦୀ ଶିକ୍ଷକମାନେ ଆଦର୍ଶ ସ୍ଥାନୀୟ ।



## ଶିକ୍ଷା ସଂସ୍କାର ।

ଶିକ୍ଷାପ୍ରଣାଳୀ ତିନି ଭାଗରେ ବିଭକ୍ତ କରା ଯାଇପାରେ । ଉପଦେଶ, ଆଦର୍ଶ, ଓ ଅଭ୍ୟାସରୁ ଶିକ୍ଷା ଲାଭ ହୁଏ । ଉପଦେଶ ଶୁଣିବାକୁ ହୁଏ, ଆଦର୍ଶ ଦେଖିବାକୁ ହୁଏ, ଏବଂ ଯାହା ଶୁଣାଯାଏ, ଦେଖାଯାଏ, ପୁଣି ହୃଦୟଙ୍ଗମ କରାଯାଏ, ତାହା ଅଭ୍ୟାସ କରିବାକୁ ହୁଏ । ଏହିପରି ତ୍ରିବିଧ ଶିକ୍ଷା ନହେଲେ ଶିକ୍ଷା ପୂର୍ଣ୍ଣ ହୁଏନାହିଁ । କୌଣସି ଶିକ୍ଷକ ଅନେକ ସଦୁପଦେଶ ଦିଅନ୍ତୁ ପଛେ ସେ ଯଦି

ଚରିତ୍ରବାନ୍ ନୁହନ୍ତି ଏବଂ ନିଜ ଜୀବନରେ ମନ୍ଦ ଆଦର୍ଶ ଦେଖାନ୍ତି ବା ଉତ୍ତମ ଆଦର୍ଶ ଦେଖାନ୍ତି ନାହିଁ, ତେବେ ଶିଷ୍ୟମାନେ ପ୍ରକୃତ ଶିକ୍ଷା ଲାଭ କରି ପାରନ୍ତି ନାହିଁ । ଶିକ୍ଷାର୍ଥୀମାନେ ଉପଦେଶ ଶୁଣନ୍ତୁ, ଏବଂ ଆଦର୍ଶ ଦେଖନ୍ତୁ ତଥାପି ସେମାନେ ଯଦି ନିଜ ଜୀବନରେ ତହିଁର ଅନୁଶୀଳନ କରନ୍ତି ନାହିଁ ତେବେ ସେମାନେ ପ୍ରକୃତ ଶିକ୍ଷା ଲାଭ କରି ପାରନ୍ତି ନାହିଁ ।

ଏହି ବିଶ୍ୱ ଜଗତହିଁ ବିଶ୍ୱ ବିଦ୍ୟାଳୟ, ଏଥିରୁ ନାନାବିଧ ଶିକ୍ଷା ଲାଭ ହୁଏ । ଶିକ୍ଷାଲାଭ କରିବା ଇଚ୍ଛାଥିଲେ ସର୍ବତ୍ର ଶିକ୍ଷା ପ୍ରାପ୍ତ ହୋଇପାରେ । ବିଦ୍ୟାଳୟ, ବେଞ୍ଚ, ଚଉକି, କଳାପଠା, ବେତ ଇତ୍ୟାଦି ଉପକରଣ ଶିକ୍ଷାର ସହାୟତା କରୁଥିଲେହେଁ ପ୍ରକୃତ ଶିକ୍ଷା ସକାଶ ନିତାନ୍ତ ଅବଶ୍ୟକ ନୁହେଁ । ଗଛମୂଳେ, ନଦୀକୂଳେ, ଗୋରୁ ଗୁହାଳେ କିବା ବିଲମାନେ ସର୍ବତ୍ର ଶିକ୍ଷା ଲାଭହୁଏ । ସ୍ଥିର ଦୃଷ୍ଟିରେ ଚାହିଁଲେ ଅନେକ ଶିକ୍ଷଣୀୟ ବିଷୟ ପ୍ରତ୍ୟେକ ଲୋକର ଚକ୍ଷୁ ଆଗରେ ମିଳିବ । ପୁଣି ପ୍ରକୃତ ଯତ୍ନ ନହେଲେ ବିଦ୍ୟାଳୟରେ ମଧ୍ୟ ଅନେକ ଲୋକ ଶିକ୍ଷାରୁ ବଞ୍ଚିତ ରହନ୍ତି । ପ୍ରତ୍ୟେକ ଲୋକଙ୍କୁ ଆଜୀବନ ଶିକ୍ଷକ ଏବଂ ଶିଷ୍ୟ ଉଭୟ ହେବାକୁ ହୁଏ, ବାଳାଦପି ସୁଭାଷିତଂ, ବୃଦ୍ଧଲୋକ ମଧ୍ୟ ଆପଣାକୁ ଅମରବତ୍ ଜ୍ଞାନ କରି ସର୍ବଦା ବିଦ୍ୟା ଚିନ୍ତା କରନ୍ତି । ପ୍ରତ୍ୟେକ ଶିକ୍ଷିତ ଲୋକର ପ୍ରଧାନ କର୍ତ୍ତବ୍ୟ ଏହି ଯେ ସେ ଯାହା ଜାଣନ୍ତି ତାହା ଅପର ବ୍ୟକ୍ତିମାନଙ୍କୁ ଶିଖାଇବେ । ଯେଉଁମାନେ ଶିକ୍ଷାର୍ଥୀମାନଙ୍କୁ ବିଦ୍ୟା ଶିଖାନ୍ତି ନାହିଁ ସେମାନେ ବ୍ରହ୍ମରାକ୍ଷସ ହୁଅନ୍ତି ବୋଲି କଥାଅଛି ।

ବେତନ ଭୋଗୀ ଶିକ୍ଷକତା—ଯେ ଯେଉଁ ବିଦ୍ୟା ଜାଣନ୍ତି ସେ ଅପର ବ୍ୟକ୍ତିଙ୍କି ତାହା ଶିଖାଇବା ନିମନ୍ତେ ଧର୍ମ୍ମତଃ ବାଧ୍ୟ ଅଟନ୍ତି । ଶିକ୍ଷକତା କରିବା ନିମନ୍ତେ ବେତନ ଗ୍ରହଣ କରିବା କୌଣସି ମନୁଷ୍ୟ ପକ୍ଷରେ ଉଚିତ କାର୍ଯ୍ୟ ହୋଇପାରେ ନାହିଁ । ବିଶେଷତଃ ଆର୍ଯ୍ୟ ଧର୍ମ୍ମାନୁସାରେ ବେଦ ବା ବିଦ୍ୟା ବିକ୍ରୟ ନିତାନ୍ତ ଘୃଣ୍ୟ । ବିଦ୍ୟା-ଶିକ୍ଷା, ବିଦ୍ୟା ଦାନଦ୍ୱାରା ଶିକ୍ଷକର ବିଦ୍ୟା ଅଧିକରୁ ଅଧିକ ବଢ଼େ । ଅନ୍ନ ବସ୍ତ୍ର ଟଙ୍କା ସୁନା ଇତ୍ୟାଦି ଦେଇ ଦେବାଦ୍ୱାରା ତାହା କ୍ରମରେ ଊଣା ହୋଇଯାଏ, କିନ୍ତୁ ବିଦ୍ୟା-ଦାନଦ୍ୱାରା ବିଦ୍ୟାର ବୃଦ୍ଧି ହୁଏ । ଅତଏବ ଏହାକୁ ପଣ୍ୟ ପଦାର୍ଥ ପରି ବିକ୍ରୟ କରାଯାଏ ନାହିଁ । ପୂର୍ବକାଳରେ ଋଷି ଯୁଗରେ ବ୍ରାହ୍ମଣମାନେ ବିଦ୍ୟାର ପ୍ରଚାର ଓ ଲୋକୋପକାର ନିମନ୍ତେ ବିନା ବେତନାଶାରେ ଶିକ୍ଷକତା କରନ୍ତି । ଭକ୍ତିଭାବରେ ବିଦ୍ୟାର୍ଥୀମାନେ ଯାହା ଦିଅନ୍ତି ତାହାହିଁ ବ୍ରାହ୍ମଣ ପଣ୍ଡିତମାନେ କେବଳ ଉଦର ପୋଷଣାର୍ଥ ଗ୍ରହଣ କରନ୍ତି ।

ଧନ ଉପାର୍ଜ୍ଜନ କରିବା ପାଇଁ ବାଣିଜ୍ୟ କୃଷି ଶିଳ୍ପ ସେବକତା ଇତ୍ୟାଦି କରିବାକୁ ହୁଏ । ଦୁଃଖର ବିଷୟ ଆଜି ଆମ୍ଭମାନଙ୍କର ପଣ୍ଡିତମାନେ, ଶିକ୍ଷିତ ବ୍ୟକ୍ତିମାନେ ଧନ ପାଇବା ପାଇଁ ଶିକ୍ଷା ଦିଅନ୍ତି । କେବଳ ଜୀବନ ନିର୍ବାହ ନିମନ୍ତେ ଯେତିକି ଧନ ଆବଶ୍ୟକ ସେତିକିରେ ଏମାନେ ତୃପ୍ତ ହୁଅନ୍ତି ନାହିଁ, ଭୋଗ ବିଳାସ ପାଇଁ ଧନ ସଂଗ୍ରହ କରନ୍ତି, ଅଧିକାର ପାଇବା ପାଇଁ ପୁଣି ଧନୀ ବୋଲାଇବା ପାଇଁ ଧନ ସଞ୍ଚୟ କରନ୍ତି, କିବା ଧନ ପାଇଁ ଧନ ଉପାର୍ଜ୍ଜନ କରନ୍ତି । ଏମାନେ ଆପଣା ବିଦ୍ୟାକୁ ମାସିକ ବେତନରେ ମାପନ୍ତି । କେହି କହନ୍ତି ମୁଁ ମେଟ୍ରିକୁ୍ୟଲେସନ୍ ପାସ କରିଅଛି ପୁଣି ଟ୍ରେନ୍ଡ୍ ହୋଇଅଛି ଅନ୍ତତଃ ମାସିକ ଟ ୪୦ ନପାଇଲେ ମୁଁ ଶିକ୍ଷକ ହୋଇ ନପାରେ, କେହି କହନ୍ତି—ମୁଁ ବି, ଏ, ବା ଏମ୍, ଏ, ପାସ କରିଅଛି ମୋହର ବେତନ ଶହେରୁ କମ ହେବନାହିଁ କେହି ବା କହନ୍ତି ମୁଁ ତର୍କତୀର୍ଥ ଉପାଧିପାଇଅଛି ବା ନ୍ୟାୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛି, ଅନ୍ତତଃ ମାସିକ ଟ ୩୦ ନପାଇଲେ ମୁଁ ଅମୁକ ସ୍କୁଲ ପଣ୍ଡିତ ହୋଇ ନପାରେ । ଏଥିରୁ ଜଣାଯାଏ ଯେ ଅଧୁନିକ ଶିକ୍ଷିତ ଲୋକେ କିପରି ବିଦ୍ୟାକୁ ଏକ ପଣ୍ୟ ଦ୍ରବ୍ୟ ମନେକରି ଟଙ୍କା ସୁନାରେ ବିକ୍ରୟ କରନ୍ତି । ଶିକ୍ଷାର ଉଦ୍ଦେଶ୍ୟ—ଜ୍ଞାନ ସମ୍ପାଦନ କରିବାହିଁ ଶିକ୍ଷାର ଉଦ୍ଦେଶ୍ୟ । ବୁଦ୍ଧି ଏବଂ ବିବେକ ଦ୍ୱାରା ଏହି ଜ୍ଞାନ ଉପାର୍ଜ୍ଜିତ ହୁଏ । ଏହି ଜ୍ଞାନ କେବଳ ମନୁଷ୍ୟ ଜାତିର ପାର୍ଥକ୍ୟ ରକ୍ଷାକରେ । ଜ୍ଞାନଦ୍ୱାରା ମନୁଷ୍ୟ ସଂସାର ଯାତ୍ରା ନିର୍ବାହ କରେ, ଜୀବନରେ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ କରେ, ପୁଣି ପରିଣାମରେ ପରମ ଗତି ପ୍ରାପ୍ତ ହୁଏ । ଜୀବନରେ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇବା ନିମନ୍ତେ ଧନ ଆବଶ୍ୟକ ହୁଏ । ବିଦ୍ୟାରୁ ଧନ ଉପାର୍ଜ୍ଜନ କରାଯାଇ ପାରେ । ଏହି କାରଣରୁ ଲୋକେ ବୁଝନ୍ତି ଯେ ଧନୋପାର୍ଜନହିଁ ଶିକ୍ଷାର ମୂଳ ଉଦ୍ଦେଶ୍ୟ । ଧନ ଉପାର୍ଜନ ଲାଳସାରେ ଛାତ୍ରମାନେ ବିଦ୍ୟାଶିକ୍ଷା କରନ୍ତି । ଏମାନେ ଭାବନ୍ତି ଯେ ଏମାନେ ପରୀକ୍ଷାରେ ପାସ କଲେ କିରାଣୀହେବେ । ଡେପୁଟୀ ହେବେ, ଓକିଲ ହେବେ ବା ଅଧମ ପକ୍ଷରେ ମାଷ୍ଟ୍ରୀ କରିବେ । ପୁଣି ବେଶି ଧନ ସହଜରେ ଅର୍ଜନ କରି ପାରିବେ ବୋଲି ଲୋକେ ଏହି ଚାକିରି କରନ୍ତି । ବିଦ୍ୟା ଯଦି ଅର୍ଥକରୀ ନହେଲା ତାହାକୁ ଲୋକେ ଆଦର କରନ୍ତି ନାହିଁ ଅତଏବ ବାଲ୍ୟଦିନୁ ପୁଣି ଜୀବନଯାକ ସର୍ବଦା ଅର୍ଥ ପ୍ରତି ଆକୃଷ୍ଟ ହେବାରୁ ବିଦ୍ୟା ପ୍ରତି ଲକ୍ଷ କମିଯାଏ । ଅତଏବ ପରିଣାମରେ ଏମାନେ ପ୍ରକୃତ ଶିକ୍ଷା ଲାଭରୁ ବଞ୍ଚିତ ହୁଅନ୍ତି ଏବଂ ସନ୍ମାର୍ଗରେ ବେଶି ଧନ ଉପାର୍ଜନ କରି ପାରନ୍ତି ନାହିଁ ।

ବିଦ୍ୟାରୁ ସକଳ ବିଷୟ ଲାଭହୁଏ, ସୁତରାଂ ବିଦ୍ୟାରୁ ଧନ ପ୍ରାପ୍ତ ହୁଏ । କିନ୍ତୁ ବିଦ୍ୟା ଶିକ୍ଷାରୁ କେବଳ ଧନ ଉପାର୍ଜ୍ଜନ ହୁଏନାହିଁ । ବିଦ୍ୟା ଶିକ୍ଷାର ବିଶେଷ

ଉଦ୍ଦେଶ୍ୟ ଅଟେ ମନୁଷ୍ୟତା । ଶିଳ୍ପ, ବାଣିଜ୍ୟ, କୃଷି ଏହାସବୁ ଧନ ଉପାର୍ଜ୍ଜନର ପ୍ରକୃଷ୍ଟ ଉପାୟ । ଆଜ କାଲକେ ଏହି ଉତ୍କୃଷ୍ଟ ପନ୍ଥା ପରିତ୍ୟାଗ କରି ଶିକ୍ଷାଦ୍ୱାରା ଧନ ସଂଗ୍ରହ କରିବାକୁ ଗୃହାନ୍ତି । ଧନ ଦେବଲଭୁ ପ୍ରାୟ ସମସ୍ତଙ୍କର ପ୍ରଧାନ ଲକ୍ଷ, ତଥାପି ଏମାନେ ଅର୍ଥୋପାର୍ଜ୍ଜନର ଉତ୍କୃଷ୍ଟ ଉପାୟମାନ ଅବଲମ୍ବନ କରନ୍ତି ନାହିଁ । ଅମ୍ଭ-ମାନଙ୍କର ସାମାଜିକ ଅବସ୍ଥା ଅମ୍ଭମାନଙ୍କୁ ଅନେକ ଉତ୍କୃଷ୍ଟ ଉପାୟରୁ ବଞ୍ଚିତ କରିଅଛି । ଦାନୁଆଁ ପୁଅ ଭିକମାଗି ବୁଲିବ, ହଳୁଆ ପୁଅ ହଳ ଯୋଚିବ, ସାରୁଆ ସାରୁ କରିବ, ବ୍ରାହ୍ମଣ ନାମମାନେ ଚମଡାର କାରବାର କରିବେ ନାହିଁ, ହାଡ ପେଡରେ କାଗଜ କରିବେ ନାହିଁ ( ଅନେକ ଶାସନୀ ବ୍ରାହ୍ମଣଙ୍କ ଧାରଣା ଯେ ପେଡରେ କାଗଜ ତିଆରି ହୁଏ ) ଏହା ସବୁ ଆମର ସ୍ମୃତିଗତ ପଦ୍ଧତି । ଅବିଦ୍ୟାର ପ୍ରତାପରୁ ଲୋକଙ୍କର ସ୍ମୃତି ସବୁ ଠିକ ରକ୍ଷା କରିଯାଇ ପାରିଲା ନାହିଁ, ପଦେ ପଦେ ସ୍ମୃତି ଭ୍ରଂଶ ଘଟିଲା । ମନୁସ୍ମୃତିରେ ଲେଖାଅଛି " ନଶ୍ୱବୃତ୍ତି କଦାଚନ ।" କିନ୍ତୁ କେତେ-ଜଣ ବ୍ରାହ୍ମଣ ଆଜ ଶ୍ୱବୃତ୍ତି ମଣି ଗୃକିରି ତ୍ୟାଗ କରିଛନ୍ତି ? ନୀଚ ଗୃକିର କଥା ଦୂରେ ଥାଉ ସ୍ୱାଧୀନ ଭାବରେ କରିଯାଇ ପାରିବା ମହତ ବୃତ୍ତିକି ମଧ୍ୟ ଅନେକେ ଶ୍ୱବୃତ୍ତି କରି ସାରିଲେଣି ।

ପ୍ରକୃତ ଶିକ୍ଷା ନା ପରୀକ୍ଷା ଶିକ୍ଷା ? ଅଜକାଲି ସଂସ୍କୃତ ଟୋଲରେ ହେଉ ବା ଇଂରାଜ ସ୍କୁଲରେ ହେଉ ସର୍ବତ୍ର ପରୀକ୍ଷା ଶିକ୍ଷା ଦିଆଯାଏ । ପ୍ରକୃତ ଶିକ୍ଷା କାହିଁ ନାହିଁ କହିଲେ ଚଳେ । ପରୀକ୍ଷାରେ ପାସ କରିବାହିଁ ଶିକ୍ଷାର୍ଥୀର ଏକମାତ୍ର ଲକ୍ଷ । ସେ ଯଥେଷ୍ଟ ବିଦ୍ୟା ଶିକ୍ଷା କରୁ ବା ନକରୁ ଯାହା ପୁସ୍ତକରେ ପଢ଼ିଥାଏ ବା ଅପର ଲୋକଠାରୁ ଶୁଣିଥାଏ ତାହା ହୃଦୟଙ୍ଗମ କରୁ ବା ନକରୁ , ନିଜ ଗବେଷଣା ଦ୍ୱାରା ଅନୁଭବ କରୁ ବା ନକରୁ , ଯେ କୌଣସି ପ୍ରକାର ପାସ ନମ୍ବର ପାଇଲେ ହେଲା । କପି କରି ହେଉ, ବା ଲାଞ୍ଚଦେଇ ହେଉ, ବା ଖୁସାମଦ୍ କରି ହେଉ, ବା ପରୀକ୍ଷକଙ୍କୁ ଭୁଲାଇ ଦେଇ ପାସଟେ ନେଇଗଲେ ହେଲା । ପରୀକ୍ଷାର ଏହି ପାସ ଦ୍ୱାରା ଲୋକର ବିଦ୍ୱତ୍ତା ଧରିବାକୁ ହୁଏ । ଅବିଦ୍ୟ ଲୋକେ ମଧ୍ୟ ଏହିପାସ ବଳରେ ସବିଦ୍ୟ ସଦୃଶ ବୃହିତ ହୁଅନ୍ତି । ଏହି ପରୀକ୍ଷା ପାସଟା ଶିକ୍ଷା, ସଭ୍ୟତା ଓ ମନୁଷ୍ୟତାର ଯେତେଦୂର ପରିଚୟ ଦିଏ, ଲୋକର ତତୋଽଧିକ ଅନିଷ୍ଟ ସାଧନ କରେ , ଯେହେତୁ ଏଥିଦ୍ୱାରା ଅନେକ ସମୟରେ ଅସଲ ନକଲ ବା କାଚ ଓ ମଣି ମଧ୍ୟରେ ପ୍ରଭେଦ ଧରାଯାଇ ପାରେନାହିଁ । ପୁଣି ଯେଉଁମାନେ ପ୍ରକୃତ ଶିକ୍ଷା ଲାଭ କରନ୍ତି, ଉଚ୍ଚତମ ପରୀକ୍ଷାରେ ଗୌରବର ସହିତ ଉତ୍ତୀର୍ଣ୍ଣ ହୁଅନ୍ତି ଏବଂ ଉଚ୍ଚ ଉପାଧି ପ୍ରାପ୍ତ ହୁଅନ୍ତି, ସେମାନେ ଅପଣାର ଗୁଣ-ଗୌରବାନୁଯାୟୀ ମହତ୍ କର୍ମ୍ମରେ ଆପଣାକୁ ନିଯୁକ୍ତ କରନ୍ତି ନାହିଁ । ସାଧାରଣ ପରୀକ୍ଷୋତ୍ତୀର୍ଣ୍ଣ

ଅସଂଖ୍ୟ ଉପାଧିଧାରୀ ଓ ଏମାନଙ୍କ ମଧ୍ୟରେ ପ୍ରଭେଦ ଏତିକି ଯେ ଏମାନେ ଅନେକ ସମୟରେ ଟ ୧୨ ବା ୧୫ ଠାରୁ ଚାକିରି ଆରମ୍ଭ କରନ୍ତି ଏକାବେଳକେ ଦୋପଟି, ଦୋଭାଷୀ ପ୍ରଭୃତି ଦେଢ଼ଶ, ଅଢ଼ାଇଶ ବେତନର ଚାକିରିରେ ନିଯୁକ୍ତ ହୋଇ ପଡନ୍ତି । ଏମାନେ ଏହିପରି ଆପଣାକୁ ନିଯୁକ୍ତ ରଖିବାଦ୍ୱାରା ଦେଶସେବା ଓ ଜାତୀୟ ଉନ୍ନତିକର କାର୍ଯ୍ୟରୁ ଆଜୀବନ ବଞ୍ଚିତ ରହନ୍ତି ।

ଏହି ପରୀକ୍ଷାର୍ଥୀମାନେ କୃଷିଆଦି ଆପଣାର ପୈତୃକ ବୃତ୍ତିକୁ ଘୃଣା କରନ୍ତି, ପୁଣି ଅନେକେ ସଙ୍ଗତି ସମ୍ପନ୍ନ ଥିଲେହେଁ ସ୍ୱାଧୀନ ବ୍ୟବସାୟ ପରିତ୍ୟାଗ କରି ଚାକିରି ଅନ୍ୱେଷଣରେ ପ୍ରବୃତ୍ତ ହୁଅନ୍ତି ।

ଶିକ୍ଷା ରାଜ୍ୟରେ ମଡ଼କ ଏବଂ ଦୁର୍ଭିକ୍ଷ ଉପସ୍ଥିତ--ସରକାର ପରିଗୃହୀତ ଶିକ୍ଷା ସହଜ ପ୍ରାପ୍ୟ ହୁଏନାହିଁ । ଶିକ୍ଷା ବିଭାଗ ଅର୍ଥସାପେକ୍ଷ ହେବାକୁ ବସିଲାଣି । ପ୍ରବେଶିକା ଫୀସ, ସ୍କୁଲଫୀସ, ପରୀକ୍ଷା ଫୀସ, ଅନୁପସ୍ଥିତି ଜରିମାନା, ବିଳମ୍ବ ଜରିମାନା ଇତ୍ୟାଦି ଅନେକ ପ୍ରକାର ଧନ ଛାତ୍ରଠାରୁ ଅଦାୟ କରାଯାଏ । ଗରିବ ଛାତ୍ରମାନେ ଏହି ବ୍ୟୟ ଭାର ବହନ କରିବାକୁ ଅକ୍ଷମ ହୁଅନ୍ତି । ଏଥି ଉପରେ ବିଶ୍ୱ ବିଦ୍ୟାଳୟ କର୍ତ୍ତୃପକ୍ଷମାନଙ୍କର ଅତ୍ୟାଚାର । ଏମାନେ ତାରି ପାରନ୍ତି ଏବଂ ମାରି ପାରନ୍ତି । ତଥାପି ଛାତ୍ରମାନେ ପରୀକ୍ଷା ଲାଳସାରେ ଲାଳାୟିତ ହୋଇ ଏମାନଙ୍କର ପିଷ୍ଟ ପେଷଣ କଳଘରେ ବାରମ୍ବାର ପ୍ରବେଶ କରି ତହିଁରେ ଆପଣାର ଧନ, ମନ, ବଳ ବୀର୍ଯ୍ୟ, ଉତ୍ସାହ ଅଧ୍ୟବସାୟ ସମସ୍ତ ନଷ୍ଟ କରନ୍ତି । ୧୦ ବର୍ଷ ବୟସ ଭିତରେ କନ୍ୟାର ବିବାହ କରିଦେଇ ନପାରିଲେ ପିତା ମାତାଙ୍କର ଜାତି ଯାଏ । ଏହି ଜାତି ରକ୍ଷା ନିମନ୍ତେ ବର ଶୁଳ୍କାଦି ଦେଇ କନ୍ୟାଟିକି ବିବାହ ଦେବାକୁ ପିତା ମାତା ଉଦ୍‌ବିଗ୍ନ । ସେହିପରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲେ ମନୁଷ୍ୟର ସାମାଜିକ ଅବସ୍ଥା ଓ ଅର୍ଥୋପାର୍ଜ୍ଜନ କ୍ଷମତା ବଢ଼େ, ଏଥି ସକାଶେ ଅଭିଭାବକମାନେ ଛାତ୍ରଙ୍କୁ ପରୀକ୍ଷୋତ୍ତୀର୍ଣ୍ଣ ହେବା ଦେଖିବାକୁ ଉତ୍କଣ୍ଠିତ । ଝିଅଟି ବିବାହ ହେଲା, ପୁଅଟି ପରୀକ୍ଷାରେ ପାସ କଲା ତେବେ ପିତା ମାତାଙ୍କର ଜୀବନ ସଫଳ ହେଲା । ସେଦିନ କୌଣସି ସେକେଣ୍ଡରି ସ୍କୁଲର ହେଡ-ମାଷ୍ଟର ମତେ ଏହି କଥା କହିଥିଲେ, ସେହି ଛାତ୍ରଟା ଏହି ସ୍କୁଲରେ ପଢିଥାନ୍ତା, ଶୀଘ୍ର ଇଂରାଜି ଭାଷାରେ ଉନ୍ନତି କରି ପକାନ୍ତା, କୌଣସି ଗୋଟିଏ ପରୀକ୍ଷାରେ ପାସକଲେ ତାହାର ଜୀବିକା ସେ ନିର୍ବାହ କରି ପାରନ୍ତା, ତୁମେ କେତେକାଳ ତାକୁ ସ୍କୁଲ ବେତନ ଅଗେଇ ଦେଇ ପାରିବ ଯେ ତାହାକୁ ସତ୍ୟବାଦୀ ସ୍କୁଲକୁ ପଠାଇ ଦେଲ । ସେଠାରେ ତାହାର ଇଂରାଜି ଭାଷା ଜ୍ଞାନ ସହଜରେ ହେବନାହିଁ । ସଂସ୍କୃତ ଶିକ୍ଷାରୁ ଓ ଚରିତ୍ରରୁ ସେ କଣ ଖାଇବ । ସେଥିଦ୍ୱାରା ତାହାର ପେଟ

ପୋଷା ଯିବ ନାହିଁ । ପ୍ରକୃତ ଶିକ୍ଷାଲାଭ ଓ ଚରିତ୍ର ଗଠନ ପ୍ରତି ସ୍କୁଲର ଜଣେ ପ୍ରଧାନ ଶିକ୍ଷକଙ୍କର ଏହିମତ । ଅନେକ ସ୍କୁଲ ମାନଙ୍କରେ କି ପ୍ରକାର ଶିକ୍ଷା ଦିଆଯାଏ, ଏଥିରୁ ସହଜରେ ଜଣାଯାଏ ।

କୌଣସି ବିଦ୍ୱାନ୍ ଲୋକ ବୈତନିକ ଭାବରେ କିଛି ସଦାଶିକ୍ଷା ଦେବାକୁ ବସିଲେ ତାହାଙ୍କଠାରୁ କେହି କିଛି ଶିକ୍ଷା କରିବାକୁ ଚାହାନ୍ତି ନାହିଁ । ପିତାମାନେ ମଧ୍ୟ ଆପଣା ସନ୍ତାନମାନଙ୍କ ପାଠ ଶିଖିବା ନିମନ୍ତେ ଏହାଙ୍କ ନିକଟକୁ ପଠାନ୍ତି ନାହିଁ । ଯେତେବେଳେ ସେମାନେ ବୁଝନ୍ତି ଯେ ଉକ୍ତ ଶିକ୍ଷାର ପରୀକ୍ଷା ଗୃହୀତ ହୁଏ ନାହିଁ ଏବଂ ଚାକିରି କରିବା ନିମନ୍ତେ ତାହା ମଞ୍ଜୁର ହୁଏନାହିଁ । ସେଦିନ କେତେଜଣ ଶାସନୀ ବ୍ରାହ୍ମଣ ଛାତ୍ରମାନଙ୍କ ଧର୍ମଶିକ୍ଷା ସଙ୍ଗେ ମାତୃଭାଷା ଶିକ୍ଷା କରିବା ନିମନ୍ତେ ଜଗନ୍ନାଥ ଦାସ ଭାଗବତ ପଢିବାକୁ କହିଲାରୁ ସେମାନଙ୍କ ପିତାମାନେ କହିଲେ ଯେ ଭାଗବତ ପାଠରେ ସେମାନଙ୍କର କୌଣସି ପ୍ରୟୋଜନ ନାହିଁ, କେବଳ ଇଂରାଜି ପଢିବାକୁ ହେବ, ଭାଗବତ, ଗୋପୀଭାଷା ଇତ୍ୟାଦି ପଢାଇଲେ ସେମାନେ ବାଳକମାନଙ୍କୁ ବିଦ୍ୟାଳୟକୁ ପଠାଇବେ ନାହିଁ । ଏହିପରି ଲୋକ ସାଧାରଣ ପ୍ରକୃତ ଶିକ୍ଷା ପରିତ୍ୟାଗ କରି ଗଭର୍ଣ୍ଣମେଣ୍ଟ ପରୀକ୍ଷା ଶିକ୍ଷାନଳରେ ପତଙ୍ଗ ପରି ଯାଇ ପଡନ୍ତି । ପାସ ଓ ଚାକିରି- ଭୂତ ଲାଗିଥିବା ପର୍ଯ୍ୟନ୍ତ ଲୋକ ସାଧାରଣ ପ୍ରକୃତ ଶିକ୍ଷାରୁ ବଞ୍ଚିତ ରହିବେ । ଏହି ଶିକ୍ଷାର ମୋହ ବଦୂରିତ ନହେବା ପର୍ଯ୍ୟନ୍ତ ଦେଶର ପ୍ରକୃତ ଉନ୍ନତି ଅସମ୍ଭବ ।

ଶିକ୍ଷାର ପରିବର୍ତ୍ତନ—ଆଜିକି ଶଏବର୍ଷ ପୂର୍ବରେ ଯେଉଁ ଶିକ୍ଷା ଅର୍ଥକରୀ ଏବଂ ହିତକାରୀ ହୋଇଥଲା ଆଜି ତାହା ବ୍ୟକ୍ତି ବିଶେଷ କିବା ଜାତିପକ୍ଷରେ ଅର୍ଥ-କରୀ ବା ହିତକାରୀ ହୋଇ ପାରେନାହିଁ । ଦେଶୀୟ ଗଭର୍ଣ୍ଣମେଣ୍ଟ କର୍ମଚାରୀ ଓ କିରାଣୀମାନଙ୍କର ଅଭାବ ଥିଲା । ପୂର୍ବରେ ସାମାନ୍ୟ ଇଂରାଜି ଭାଷା ଜ୍ଞାନ ପାଇବା ମାତ୍ରେ ଅନେକେ ପ୍ରଧାନ କର୍ତ୍ତୃପକ୍ଷର୍ ପ୍ରେ ଗୃହୀତ ହେଉଥିଲେ, ଏବଂ ଦେବତା ସଦୃଶ ପୂଜିତ ହେଉଥିଲେ । କିନ୍ତୁ ଆଜି ପଣ ପଣ ବିଏ, ଏମାନଙ୍କୁ ପଚ.ରେ କିଏ । ଏମାନେ ପରୀକ୍ଷୋତ୍ତୀର୍ଣ୍ଣ ହେବାମାତ୍ରେ ମାସିକ ଟ ୧୨ । ୧୫ ଠାରୁ ଅନ୍ନ ବିକ୍ରୟ କରିବାକୁ ଅରମ୍ଭ କରନ୍ତି ।

ଦେଶ କାଳ ପାତ୍ର ଭେଦରେ ଶିକ୍ଷାର ରୀତି ନୀତି ପରିବର୍ତ୍ତନୀୟ । ଗୁମାସ୍ତାଗିରି କରିବା ବା ମାସିକ ବେତନ ଅଚ୍ଛେଇଣ ବେତନ ପାଇ ଚାକିରି କରିବା ନିମନ୍ତେ ଆବଶ୍ୟକ ହେବା ଶିକ୍ଷା ବର୍ତ୍ତମାନ ଅନାବଶ୍ୟକ । ଦେଶର ଅବସ୍ଥା ଜାତିର ପ୍ରାଚୀନ ଗୌରବ ବୁଝି କୃଷି, ଶିଳ୍ପ, ବାଣିଜ୍ୟାଦି ବ୍ୟବସାୟୋପଯୋଗୀ ଶିକ୍ଷା ଲାଭ

କରିବା ଉଚିତ । ମାତୃଭାଷାଦ୍ୱାରା ସମସ୍ତ ଶିକ୍ଷାଲାଭ କରିବା ଶ୍ରେୟସ୍କର ! ଏଥି ସକାଶେ ମାତୃଭାଷା ଓ ତାହାର ସାହିତ୍ୟର ଉନ୍ନତି ସାଧନ କରିବା ଏକାନ୍ତ କର୍ତ୍ତବ୍ୟ । ଇଂରାଜି ପଦ ଗୁଡିଏ ମୁଖସ୍ଥକରି ସମୟ ଜଗି ତାହାଁର ପ୍ରୟୋଗ କରି ଜାଣିଲେ ଯେ ବଦ୍ୟା ଶିକ୍ଷା ହେଲା ତାହାନୁହେ । ନିଜଭାଷା ସାହାଯ୍ୟରେ କୌଣସି ବିଷୟ ଓ ଭାବକୁ ହୃଦୟଙ୍ଗମ କରି ଆତ୍ମସାତକରି ନେବାହିଁ ପ୍ରକୃତ ଶିକ୍ଷା ।

ଶିକ୍ଷା ବିଭାଗରେ ଧର୍ମ୍ମ ଓ ନୀତିଶିକ୍ଷା—ମନୋରାଜ୍ୟରେ ବାହ୍ୟ ବିଷୟ ଜ୍ଞାନ ବଳେ ଅପି ପ୍ରବେଶ କରେ । ଦେଶ କାଳର ଅବସ୍ଥା ଓ ଆବେଷ୍ଟନଦ୍ୱାରା ସ୍ଥୂଳଜ୍ଞାନ ସହଜ ଜନ୍ମେ ଏବଂ ଅପାର ପ୍ରବୃତ୍ତି ନିଚୟ ଉତ୍ତେଜିତ ହୋଇଉଠେ । କିନ୍ତୁ ଆଧ୍ୟାତ୍ମିକ ଜ୍ଞାନ ବା ମୂଳତତ୍ତ୍ୱ ସହଜ ଉପଲବ୍ଧ ହୁଏନାହିଁ । ସୁତରାଂ ଧର୍ମ୍ମଶିକ୍ଷା ଛାତ୍ରମାନଙ୍କ ଶିକ୍ଷାର ସାରଅଂଶ ହେବା ଉଚିତ । ଧର୍ମ୍ମ ବିଷୟକ ଧାରଣା ନିଶ୍ଚୟ ଛାତ୍ରମାନଙ୍କ ହୃଦୟ ପଟରେ ସରଳ ସ୍ପଷ୍ଟ ଏବଂ ସୁଦୃଢ଼ ଭାବରେ ଅଙ୍କିତ ରହିବା ଉଚିତ । ଯେଉଁ ଜାତିର ଛାତ୍ର ଜୀବନରେ ଧର୍ମ୍ମଶିକ୍ଷା ନାହିଁ, ନୀତିଶିକ୍ଷା ନାହିଁ ଏବଂ ଜାତୀୟ ଆଦର୍ଶ ନାହିଁ, ସେହିଜାତି କେବେ ଉନ୍ନତି କରିପାରେ ନାହିଁ ବରଂ ଦିନକୁ ଦିନ ଦୁର୍ବଳ ହୋଇ ପଡେ ଏବଂ ଜାତୀୟ ପାର୍ଥକ୍ୟ ହରାଇ କାଳକ୍ରମେ ଲୁପ୍ତହୁଏ ।



# ପୁସ୍ତକ ପ୍ରଣୟନ ଓ ପ୍ରକାଶ ।

ସାହିତ୍ୟର ଶ୍ରୀବୃଦ୍ଧି ସକାଶେ ବିବିଧ ପୁସ୍ତକ ପ୍ରଣୟନ ଅବଶ୍ୟକ । ଭଲ ବିଷୟ ନେଇ ଗ୍ରନ୍ଥ ପ୍ରକାଶ କରିବା ଯେପରି ଉପାଦେୟ ଅସାର ବା ଅନୁପାଦେୟ ପୁସ୍ତକ ଲେଖି ପ୍ରଚାର କରିବା ସେହିପରି କ୍ଷତି ଜନକ । ଏକ ସମୟରେ ମୋହର ଏହି ଧାରଣା ଥିଲା ଯେ ଭଲ ହେଉ ମନ୍ଦ ହେଉ ଯେ ଯାହା ଶକ୍ତ୍ୟନୁସାରେ ଯାହା ଲେଖି ପାରିଲେ ତାହାସବୁ ପ୍ରକାଶିତ ହୋଇ ସୁରକ୍ଷିତ ହେବା ଉଚିତ । କିନ୍ତୁ ଆଜି ସେହି ଧାରଣା ଦୂରୀଭୂତ ହୋଇଅଛି । ଅସାର ଅନିଷ୍ଟକର ମୁଦ୍ରିତ ପ୍ରଣୟନ କରି ଲୋକରେ ପ୍ରକାଶ କରିବା ଅପେକ୍ଷା ନୀରବ ରହିବା ଶ୍ରେୟସ୍କର । ଅଶ୍ଳୀଳ ଭାବାତ୍ମକ ଏବଂ ରାଜଦ୍ରୋହ ପ୍ରବର୍ତ୍ତକ ପୁସ୍ତକ ମାନ କେହି ପ୍ରକାଶ କରି ପାରନ୍ତି ନାହିଁ, ଯେହେତୁ ଗଭର୍ଣ୍ଣମେଣ୍ଟ ଏହି ଅପରାଧ ପାଇଁ ଦଣ୍ଡ ବିଧାନ କରିଅଛି । କିନ୍ତୁ ସାମାନ୍ୟ ବା ନୀତଶ୍ରୀବ ବିଶିଷ୍ଟ କୁସଂସ୍କାର ବର୍ଦ୍ଧକ ପୁସ୍ତକମାନ ପ୍ରଣୟନ କରି ପ୍ରଚାର କରିବାଦ୍ୱାରା ଆଇନଗତ ଅପରାଧ ହୁଏନାହିଁ । ସୁତରାଂ ଅନେକ ସଙ୍କୀର୍ଣ୍ଣମନା ଲେଖକମାନେ ଏଣୁତେଣୁ ନାନା କଥା ଛପାଇ ପ୍ରକାଶ କରି ଦିଅନ୍ତି । ପୁଣି କେହି ୨ ଅର୍ଥ ଲୋଭରେ ଏବଂ ନାମ

ପ୍ରୟାସୀ ହୋଇ ବିଷୟର ଉପାଦେୟତା ପ୍ରତି ଲକ୍ଷ ନ କରି ନାନାବିଧ ପୁସ୍ତକ ପୁସ୍ତିକା ପ୍ରକାଶ କରିପକାନ୍ତି ଯଥା ମହାଦେଇ ଶୋକ, ନାବକେଳି, ଲକ୍ଷ୍ମୀପୁରାଣ, ସୁଦଶାବ୍ରତକଥା, ନିନାଥ ମେଳା ଇତ୍ୟାଦି । ମାଇପି ଲୋକେ ଏବଂ ବାଳକ ବାଳିକା ଚଣି ଏହି ପୁସ୍ତକ ମାନ ପଢିବାକୁ ଅଗ୍ରହାନ୍ୱିତ ହୁଅନ୍ତି । ଏହି ପୁସ୍ତକମାନ ପଠନ ଦ୍ୱାରା ଅଶିକ୍ଷିତ ମହିଳା ଗଣ ଏବଂ କୋମଳମତି ବାଳକ ବାଳିକାଗଣ ବିକଳିତ ହୋଇ ପଡ଼ନ୍ତି, କୁସଂସ୍କାର ପ୍ରବୀଣ ହୋଇ ଉଠନ୍ତି, ପୁଣି କ୍ରମେ କ୍ରମେ ଅବନତ ପଥ ଅନୁସରଣ କରନ୍ତି ।

ଆଜିକାଲି ଯେଉଁ ସଂସ୍କାର ସ୍ରୋତ ଚାଲିଅଛି ତହିଁରେ "ପ୍ରଦୀପ" ପରି ପୁସ୍ତକ ଗୁଡିକ ଅବଶ୍ୟ ଉତ୍ତେଜକ ହେବ, ଯେହେତୁ ଏହି ଉତ୍ତେଜନାଦ୍ୱାରା ସଂସ୍କାରକ ମାନେ କର୍ମକ୍ଷେତ୍ରରେ ଲାଗି ପଡିବାକୁ ଦ୍ୱିଗୁଣ ଉତ୍ସାହିତ ହେବେ । ମୋହର ବିନୀତ ଅନୁରୋଧ ଏହି ଯେ ସମସ୍ତ ସଂସ୍କାରକ ଏବଂ ସଂସ୍କାର ପ୍ରିୟବ୍ୟକ୍ତିମାନେ ଏହି ପ୍ରଦୀପ ଖଣ୍ଡିକୁ ଥରେ ଦେଖନ୍ତୁ ।

— — o — —

## ବିବାହ ଓ ବିଦ୍ୟାଶିକ୍ଷା ।

ଭାରତବାସୀ ହିନ୍ଦୁମାନେ ନାନାଜାତିରେ ବିଭକ୍ତ, ଏମାନଙ୍କ ମଧ୍ୟରେ ବ୍ରାହ୍ମଣ ଜାତି ଉଚ୍ଚତମ । ବ୍ରହ୍ମଚର୍ଯ୍ୟ ଏବଂ ବିଦ୍ୟାଶିକ୍ଷା ହେତୁ ଏକସମୟରେ ଏମାନେ ଉଚ୍ଚତମ ଥିଲେ, ପୁଣି ଅନ୍ୟାନ୍ୟ ଜାତି ମାନଙ୍କର ଗୁରୁ ଓ ଆଦର୍ଶ ସ୍ଥାନୀୟ ଥିଲେ । ଆଜି ବ୍ରାହ୍ମଣ ମାନଙ୍କ ମଧ୍ୟରେ ଆଉ ବ୍ରହ୍ମଚର୍ଯ୍ୟ ନାହିଁ, ବ୍ରହ୍ମଚର୍ଯ୍ୟ ପରିବର୍ତ୍ତେ ବାଲ୍ୟବିବାହ ପ୍ରତିଷ୍ଠିତ, ପୁତ୍ର କନ୍ୟା ମାନଙ୍କୁ ବାଲ୍ୟ ସମୟରେ ବିବାହ ଦେଇଦେବା ପିତା ମାତାଙ୍କର ପ୍ରଧାନ କର୍ତ୍ତବ୍ୟ ରୂପେ ପରି ଗୃହୀତ ହୁଏ, ସେମାନଙ୍କୁ ବିଦ୍ୟାଶିକ୍ଷା ଦେବା ଅତିରିକ୍ତ କଥା, ଏଥିନିମନ୍ତେ ପିତା ମାତା ଆପଣାଙ୍କୁ ଦାୟୀ ମନେ କରନ୍ତି ନାହିଁ । ଅନେକେ କହନ୍ତି ଯେ ଭାଗ୍ୟ କପାଳେ ଥିଲେ ପାଠ ହେବ, ତାହାର ବ୍ରତ ଓ ବିବାହ କରିଦେବା ଆମ୍ଭର କର୍ତ୍ତବ୍ୟ, ତାପରେ ଯେ ଯାହା କର୍ମଭୋଗ କରିବ, ଆମ୍ଭକୁ ଆଉ ନିନ୍ଦା ନଥିବ । ଆମ୍ଭମାନଙ୍କର ସମାଜର ଅବସ୍ଥା ଓ ରୀତିର ଏତେଦୂର କଳୁଷିତ ହୋଇ ପଡ଼ିଅଛି ଯେ ଆପଣାର ପୁତ୍ରକୁ ବାଲ୍ୟ ସମୟରେ ବିଦ୍ୟାଶିକ୍ଷା ଦେଇନାହିଁ ବୋଲି କୌଣସି ଗୃହସ୍ଥ ସମାଜରେ ନିନ୍ଦା ବା ଲାଞ୍ଛନା ଭୋଗ କରିନାହିଁ, କିନ୍ତୁ ଯଥା ସମୟରେ ଆପଣାର ପୁତ୍ର କନ୍ୟାର ବିବାହ କରି ଦେଇ ନଥିଲେ ସେ ଅନେକ ନିନ୍ଦା ଓ ଲାଞ୍ଛନା ଭୋଗ କରିଥାଏ ପୁଣି ସମୟେ ୨ ଜାତି ଓ ସମାଜରୁ ବହିଷ୍କୃତ

ହୁଏ । ଏହି ସାମାଜିକ ଅବସ୍ଥାର ପରିବର୍ତ୍ତନ ନହେଲେ ବିଦ୍ୟାଶିକ୍ଷାର ବହୁଳ ପ୍ରଚାର ସମ୍ଭବପର ହୋଇ ନପାରେ । ବିଦ୍ୟାଶିକ୍ଷା ଯେପରି ଏହି ସାମାଜିକ କୁରୀତି ଦୂର କରି ପାରେ, ଏହି ସାମାଜିକ ଅବସ୍ଥାର ପରିବର୍ତ୍ତନ ହେଲେ ବିଦ୍ୟାଶିକ୍ଷା ମଧ୍ୟ ସେହିପରି ସହଜ ଏବଂ ସୁଗମ ହୋଇପାରେ । ସୁତରାଂ ବିଦ୍ୟାଶିକ୍ଷା ସଙ୍ଗେ ୨ ଏହି ସାମାଜିକ କୁରୀତିର ଦୂରୀକରଣ ଚେଷ୍ଟା ଏକାନ୍ତ ଆବଶ୍ୟକ ।

ବ୍ରହ୍ମଚର୍ଯ୍ୟ ଯେପରି ବିଦ୍ୟାଶିକ୍ଷାର ସହାୟତା କରେ ବାଲ୍ୟ ବିବାହ ସେହିପରି ବିଦ୍ୟାଶିକ୍ଷାର ପ୍ରତିବନ୍ଧକ ହୋଇଥାଏ ।

ଛାତ୍ର ମାନଙ୍କ ଶିକ୍ଷାର ସୁବିଧା ନିମନ୍ତେ ଯେପରି ନାନାବିଧ ଆୟୋଜନ ହୋଇଯାଏ, ବାଲ୍ୟ ବିବାହ ରହିତ କରିବା ନିମନ୍ତେ ବିହିତ ଉପାୟ ଅବଲମ୍ବନ କରା ଏକାନ୍ତ ବାଞ୍ଛନୀୟ । ପୁରୀ ବ୍ରାହ୍ମଣ ସମିତି ବିଷୟ ବର୍ଣ୍ଣନା କଲାବେଳେ ଦୀପିକା ସମ୍ପାଦକ ମହାଶୟ ଛାତ୍ରମାନଙ୍କ ବ୍ରହ୍ମଚର୍ଯ୍ୟ ରକ୍ଷା ନିମନ୍ତେ ଯେଉଁ ପ୍ରସ୍ତାବ କରି ଅଛନ୍ତି ତାହା ଅତି ଉତ୍ତମ ପ୍ରସ୍ତାବ ଅଟେ । ଏହି ପ୍ରସ୍ତାବାନୁଯାୟୀ କାର୍ଯ୍ୟ ହେଲେ ଛାତ୍ର ସମାଜରୁ କିୟତ୍ ପରିମାଣରେ ବାଲ୍ୟ ବିବାହ ପ୍ରଥା ରହିତ ହୋଇ ଉଚ୍ଚ-ଶିକ୍ଷା ପ୍ରାପ୍ତିର ମାର୍ଗ ସୁଗମ ହେବା ସମ୍ଭାବନା । ସମିତି ଏହି ବିଷୟରେ, ଆଶା ହୁଏ, ସୁବିଚାର କରିବେ ।

ଏହି ବାଲ୍ୟ ବିବାହ ପ୍ରଥା ଭାରତୀୟ ଉନ୍ନତି ମୂଳରେ କୁଠାରାଘାତ ସ୍ୱରୂପ । ଏହି ବାଲ୍ୟ ବିବାହ ବ୍ୟବସ୍ଥା ଭାରତ ଜାତି ମାନଙ୍କର ବଳ ବୀର୍ଯ୍ୟ ସ୍ୱଚ୍ଛନ୍ଦ୍ୟ ଓ ଶିକ୍ଷା ସ୍ୱାଧୀନତା, ଏବଂ ସଂକ୍ଷେପରେ ମନୁଷ୍ୟତ୍ୱ ପର୍ଯ୍ୟନ୍ତ ଅପହରଣ କରିଅଛି ଏବଂ କରୁଅଛି । ଏହି ପ୍ରଥାର ନିଷେଧ ନହେଲେ ବିବାହ ବୟସ ଦିନୁଦିନ ନ୍ୟୂନ ହୋଇ ପଡ଼ିଲେ ଭାରତ ଜାତିର ଅଧୋଗତି ଅବଶ୍ୟମ୍ଭାବୀ ଏହି । ବାଲ୍ୟ ବିବାହ ରୂପକ ସଂକ୍ରାମକ କୀଟ ଉଚ୍ଚ ଜାତିରୁ ନୀଚଜାତିକୁ କ୍ରମଶଃ ସଂକ୍ରାମିତ ହେଉଅଛି । ବ୍ରାହ୍ମଣମାନଙ୍କୁ ଅନୁକରଣ କରି ଓଡ଼ିଆ, ଗୌଡ଼, କେଉଟ, କଣ୍ଡ୍ରା, ଇତ୍ୟାଦି ସମସ୍ତ ଜାତି ଆପଣା ୨ ସମାଜରେ ବାଲ୍ୟ ବିବାହ ରୀତି ପ୍ରଚଳନ କରୁଅଛନ୍ତି । ଏହିରୀତି ସମାଜରୁ ସମୂଳ ବିନଷ୍ଟ କରିବା ନିମନ୍ତେ ନାନାବିଧ ଉପାୟ ଅବଲମ୍ବନ କରା କର୍ତ୍ତବ୍ୟ ।

ବିବାହିତ ଛାତ୍ର ମାନଙ୍କୁ ସ୍କୁଲ୍ ଓ କଲେଜରେ ଅଧ୍ୟୟନ କରିବାକୁ ଅଧିକାର ଦିଆ ନଯାଉ, କିମ୍ବା ଉଚ୍ଚଶିକ୍ଷାର ଦ୍ୱାର ସେମାନଙ୍କ ପକ୍ଷେ ବନ୍ଦ କରା ଯାଉ ।

୨୫ ବର୍ଷ ପର୍ଯ୍ୟନ୍ତ ଅବିବାହିତ ରହିବା ସରତ ଉପରେ ଛାତ୍ରମାନେ ସ୍କୁଲ ବା କଲେଜ ଶ୍ରେଣୀମାନଙ୍କରେ ଭୁକ୍ତ ହୁଅନ୍ତୁ ।

ବିବାହିତ ଛାତ୍ରମାନେ ବୃତ୍ତି ପ୍ରାପ୍ତିରୁ ବଞ୍ଚିତ ରହନ୍ତୁ । ଏବଂ ୨୫ ବର୍ଷ ପର୍ଯ୍ୟନ୍ତ ଅବିବାହିତ ରହିବାପାଇଁ ଛାତ୍ରଠାରୁ ବା ତାହାଙ୍କ ଅଭିଭାବକ ମାନଙ୍କ-ଠାରୁ ସରତ ଲେଖି ନେଇ ଉପଯୋଗୀ ଛାତ୍ରଙ୍କୁ ବୃତ୍ତି ସାହାଯ୍ୟ ଦିଆଯାଉ ।

ପ୍ରକାଶ ଥାଉକି, ଆଜି ହିନ୍ଦୁ ସମାଜର ଅଧୋଗତି ପ୍ରବଣତା ଦେଖି ଏହାସଧ୍ୟ ବୋଲି ଯାଇପାରେ ଯେ ସ୍କୁଲରେ ପ୍ରବେଶ କରିବା ଏବଂ ବୃତ୍ତି ପ୍ରାପ୍ତି ବିଷୟରେ ଏହି ସରତ ଧାର୍ଯ୍ୟ ହେଲେ, ହୁଏତ ଅନେକ ଉତ୍ସାହୀ, ବୁଦ୍ଧିମାନ ଏବଂ ପ୍ରତିଭାଶାଳୀ ବାଳକମାନେ ବିଦ୍ୟାଶିକ୍ଷା ଲାଭରୁ ଆଜୀବନ ବଞ୍ଚିତ ରହି-ପାରନ୍ତି, ଯେହେତୁ ଅନେକ କୁସଂସ୍କାରାଚ୍ଛନ୍ନ ପିତା ମାତା ଓ ଅଭିଭାବକମାନେ ଭାବି ଅଛନ୍ତି ଯେ ପୁତ୍ର କନ୍ୟାକୁ ବିଦ୍ୟାଶିକ୍ଷା ଦେବା ଅପେକ୍ଷା ସେମାନଙ୍କୁ ବିବାହ ଦେଇଦେବା ସେମାନଙ୍କର ପବିତ୍ରତର କର୍ତ୍ତବ୍ୟ । ଏହି ବ୍ୟକ୍ତିଗତ ପ୍ରତିଭା ବୁଦ୍ଧିମତ୍ତା ଦ୍ୱାରା ସମାଜର ଯେଉଁ ଉପକାର ହୁଏ, ବାଲ୍ୟ ବିବାହର ପ୍ରଚଳନ ଦ୍ୱାରା ସମାଜର ତଦପେକ୍ଷା ଅଧିକ କ୍ଷତି ସାଧିତ ହେବା ସଙ୍ଗେ ୨ ବିବାହିତ ବ୍ୟକ୍ତିର ବୁଦ୍ଧି. ବଳ ବୀର୍ଯ୍ୟ ଓ ଆୟୁଷର ହ୍ରାସ ହୁଏ, ସୁତରାଂ ବାଲ୍ୟାବସ୍ଥାରେ ବିବାହ କରିବା ନିତାନ୍ତ ଅକର୍ତ୍ତବ୍ୟ ! ବରଂ ଆଜୀବନ ଅବିଦ୍ୟ ରହିବା ଶ୍ରେୟସ୍କର ।

ପୁଣାଠାରେ ବ୍ରାହ୍ମଣ ସମିତିର ନ୍ୟାୟ ନାନାସ୍ଥାନରେ ବିବାହ ସଂସ୍କାର ସମିତି ଗଠିତ ହେଉ । ସଂସ୍କାର ପ୍ରୟାସୀ ଶିକ୍ଷିତ ଲୋକମାନେ ଏହି ସମିତିର ସଭ୍ୟହୋଇ ବିବାହ ସଂସ୍କାରର ଆବଶ୍ୟକତା ଲୋକ ସାଧାରଣଙ୍କୁ ବୁଝାଇ ଦିଅନ୍ତୁ । ଏହି ସଂସ୍କାର ପକ୍ଷପାତୀ ଲୋକମାନଙ୍କୁ ଆପଣା ଦଳଭୁକ୍ତ କରନ୍ତୁ, ଏମାନଙ୍କ କାର୍ଯ୍ୟ ତତ୍ପରତା ଓ ସଦାଦର୍ଶ ଦେଖି କ୍ରମଶଃ ଲୋକେ ଆକୃଷ୍ଟ ହେବାର ସମ୍ଭାବନା । ପୁରୁଷ ମାନଙ୍କର ବିବାହ ବୟସ ବୃଦ୍ଧି କରିବା ସହଜ ସାଧ୍ୟ, ସୁତରାଂ ପ୍ରଥମେ ଏହି ସଂସ୍କାର କରାଯାଉ ତାପରେ ବାଳିକା ବିବାହ ରହିତ କରିବା ଚେଷ୍ଟା କରା ଯାଉ ।

ପରିଶେଷରେ ଏପରି ଏକ ଆଇନ କରିବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କୁ ଅନୁ-ରୋଧ କରଯାଉ ଯଦ୍ୱାରା ବିବାହିତ ଛାତ୍ରମାନେ ସ୍କୁଲ ବା କଲେଜରେ ଭୁକ୍ତ-ହୋଇ ପାରିବେ ନାହିଁ ।

ଏହିପରି ନାନାବିଧ ଉପାୟ ଅବଲମ୍ବନ ଦ୍ୱାରା ଅଶାହୁଏ ବାଲ୍ୟ ବିବାହ ବହୁପରିମାଣରେ ରହିତ ହୋଇପାରେ ।

# ଶିକ୍ଷକତାରେ ଜାତୀୟ ଜୀବନ ।

ପୂର୍ବରେ ଆମ୍ଭମାନଙ୍କର ବ୍ରହ୍ମଚର୍ଯ୍ୟ ନିୟମ ଥିଲା । ଏହି ନିୟମ ପାଳନହିଁ ଛାତ୍ର ଜୀବନ ଥିଲା । ଛାତ୍ରମାନେ ଗୁରୁଙ୍କ ଗୃହରେ ଶିକ୍ଷାଲାଭ କରୁଥିଲେ । ଗୁରୁମାନଙ୍କ ଆଦର୍ଶରେ ଛାତ୍ର ମାନଙ୍କର ଶରୀର ଏବଂ ଚରିତ୍ର ଗଠିତ ହେଉଥିଲା । ଛାତ୍ରମାନଙ୍କର ଭାବୀ ଜୀବନର ନିୟାମକ ଅଟନ୍ତି କେବଳ ଶିକ୍ଷକ, ଏମନ୍ତକି ଶିକ୍ଷକତା ଗୁଣରେ ଛାତ୍ରର ଭାବୀ ଜୀବନ ଗଢ଼ାହୁଏ, ସୁତରାଂ ଭଲଛାତ୍ର ବା ଭାବୀ ମନୁଷ୍ୟ ତିଆରି କରିବାକୁ ହେଲେ ପ୍ରଥମେ ଭଲ ଶିକ୍ଷକ ରଖିବା ଆବଶ୍ୟକ । ଶିକ୍ଷକ ମାନଙ୍କ ଶିକ୍ଷା ଏବଂ ଆଦର୍ଶ ହେତୁ କେହି ଛାତ୍ର ପୁସ୍ତକ କୀଟ ହୁଅନ୍ତି, କେହି ବଡ଼ ବିଦ୍ୟାଳୟ ପରୀକ୍ଷାରେ କେବଳ ପାସ କରନ୍ତି, କେହି ବା ଜ୍ଞାନ ସମ୍ପାଦନ କରନ୍ତି, କେହି ଆଳସ୍ୟପରାୟଣ, କେହି ବା କର୍ତ୍ତବ୍ୟନିଷ୍ଠ ହୁଅନ୍ତି, ପୁଣି କେହି କେହି ସ୍ୱାର୍ଥପର କେହିବା ପରୋପକାରେ ଲିପ୍ତ ହୁଅନ୍ତି, ଇତ୍ୟାଦି ।

ଆଉ ସେହି ଗୁରୁ ଶିଷ୍ୟ ପରଂପରା ଆଜି ଆମ୍ଭମାନଙ୍କ ମଧ୍ୟରେ ନାହିଁ । ସ୍କୁଲ ଶିକ୍ଷା ଗୋଟିଏ ଅନୁଷ୍ଠାନ ଯାହାରକି ପରିଣାମ ଫଳ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା । ପରୀକ୍ଷାଟା ଯଦି ଗୋଟିଏ କଳ ହୁଏ ତେବେ ଶିକ୍ଷକ ଉକ୍ତ କଳର ପରିଚାଳକ । କେଉଁ ଯନ୍ତ୍ରରେ ନିକ୍ଷେପିତ ହେଲେ କେଉଁ ଚିଜର ଧାରି ପ୍ରସ୍ତୁତ ହେବାକୁ ହୁଏ, ତାହାର ଜ୍ଞାନହିଁ ଶିକ୍ଷକ ମାନଙ୍କର ନିର୍ଦ୍ଦିଷ୍ଟ । ଯେଉଁ ଛାତ୍ର ଡେପୁଟି ବା ମୁନସଫୀ କରି ମାସିକ ଟ ୩୦୦ ଙ୍କା ବା ୫୦୦ ପାଇବା ଆଶାରେ ପରୀକ୍ଷା-ଶିକ୍ଷା କରେ, ମିଥ୍ୟା ସମ୍ବନ୍ଧେ ସଂଘଠନ ପଟୁ ଓକୀଲ ହୋଇ ଅନେକଙ୍କ ଘର ବୁଡ଼ାଇବା ପାଇଁ ଓକିଲାତି ପାସ କରେ, ବା କିରାଣିଗିରି କରି ଜୀବନ ଯାପିବାକୁ କିଛି ଗୋଟେ ପରୀକ୍ଷାରେ ପାସ ହୋଇ ପଡ଼େ, ସେହି ଛାତ୍ରର ପ୍ରାଣ ବେଶଭୂଷା ପ୍ରଭୃତି ବାହ୍ୟ ଡ଼ମ୍ବର ପ୍ରତି ଆକୃଷ୍ଟ ହେବା ସହଜ କଥା । ଲକ୍ଷ୍ୟ ଅନୁରୂପ ଉପାୟ ଅବଲମ୍ବନ କରା ପ୍ରକୃତିର ନିୟମ । ଲକ୍ଷ୍ୟ ଅନୁଚ୍ଚ ବା ନୀଚ ହେଲେ ସଂଯମାଦି ବ୍ରହ୍ମଚର୍ଯ୍ୟ ବା ନିରାଡମ୍ବର ଜୀବନ ବୃଥା ସାଧନାମାତ୍ର-ଋଷି ଜୀବନରେ ରୂକ୍ଷ ତାପସାବତାର ମାତ୍ର । ଯଦି ବିଦ୍ୟାଶିକ୍ଷାର ପରିମାଣ ଚାକିରି, ଯଦି ଚାକିରିର ଉଦ୍ଦେଶ୍ୟ ଧନ ସମ୍ପାଦନ, ଯଦି ଧନର ଫଳ କେବଳ ନିଜ ଶାରୀରିକ ଭୋଗ ବିଳାସିତା, ତେବେ ସେ ବ୍ରହ୍ମଚର୍ଯ୍ୟ ତଥା ଶିକ୍ଷାରୁ ବା କି ପ୍ରୟୋଜନ ? କାହାକୁହିଁ କଟୁ ବଚନ ନକହିବା ଦ୍ୱାରା ଶ୍ରେଷ୍ଠ କଅଣ ଯଦିଚ ଅନ୍ତଃକରଣ କୁଟିଳତାରେ ସର୍ବଦା ଆବିଳ, ଯଦିଚ କୌଣସି ମହତ୍ କାର୍ଯ୍ୟରେ ହାତ ନଦେବା ତେତେବ ହଲ୍ଲା ପାଣିରେ ଗୋଡ ନଦେବା କେଉଁ ଶିଷ୍ଟତା ବା ସୌଜନ୍ୟ ।

ଝଙ୍କାକୁ ଠିକ ରଖିଲେ ପାହୁଲା ଅଧଲା ନିଜେ ନିଜେ ସହଜରେ ସଂଗୃହୀତ ହୋଇପଡ଼େ । ଭାଷା ଦ୍ୱାରା ଭାବ ନିଚୟ ବିକାଶ ପ୍ରାପ୍ତ ହେଲେ ହେଁ ଭାଷା ଅଟେ ବହିରାବରଣ ଏବଂ ଭାବ ଅନ୍ତଃସାର । ଶରୀର ସୁସ୍ଥ ନଥିଲେ ଧୂସା ମଜା ହୋଇ ସ୍ନାନ କଲେ କିବା ନିର୍ମଳ ସୁନ୍ଦର ବସ୍ତ୍ର ପରିଧାନ କଲେ ଶରୀରରେ କି ବଳ ବା ଜ୍ୟୋତି ଦେହେ ? ଛାତ୍ରମାନଙ୍କର ଅନ୍ତଃକରଣ ସଂଶୋଧିତ ହେଲେ ସେମାନଙ୍କର ବାହ୍ୟାଚାର ଓ ବ୍ୟବହାର ଶିକ୍ଷଣରେ କିଛି ପ୍ରୟୋଜନ ହୁଏନାହିଁ । ବୃକ୍ଷର ମୂଳ ନଥିଲେ କି ଅଗ୍ରର ଭଲହୁଏ ? ଆମ ଦେଶର ଗୁରୁ ଗୋସାଇଁ ମାନଙ୍କ ପରି ଯଦି ଶିକ୍ଷକମାନେ ଛାତ୍ରମାନଙ୍କୁ ଚିଡା କାଟିଦେଇ ବସିବେ, ତେବେ ଛାତ୍ରମାନଙ୍କର ସଂଯମ, ବ୍ରହ୍ମଚର୍ଯ୍ୟ ବା ପ୍ରକୃତ ଶିକ୍ଷା କାହୁଁ ଆସିବ ? ଗୁରୁମାନେ ଶିଷ୍ୟ ମାନଙ୍କୁ ଯେପରି ଚିଡା କାଟି ଦିଅନ୍ତି ଶିକ୍ଷକମାନେ ତଦ୍ରୂପ ଛାତ୍ରମାନଙ୍କୁ ପାସ କରାଇ ଉପାଧି ଧାରୀ ବା "ମାର୍କାମରା" କରାଇ ଦିଅନ୍ତି । ଏହାନୁହେ ପ୍ରକୃତଶିକ୍ଷା । ଛାତ୍ରମାନଙ୍କ ଆଗରେ ମହତ ଆଦର୍ଶ ରଖିବାକୁ ହେବ, ସେମାନଙ୍କ ଲକ୍ଷ ଉଚ୍ଚ ରଖିବାକୁ ହେବ ।

ଶିକ୍ଷକ ଯେପରି ପୋଥି ମନୁଷ୍ୟ ଗଢିଦେଇ ପାରନ୍ତି ସେହିପରି ପ୍ରକୃତ ମନୁଷ୍ୟ ତିଆର କରିପାରନ୍ତି । ଜଣେ ବ୍ୟକ୍ତିତ୍ୱସମ୍ପନ୍ନ ଆଦର୍ଶ ଶିକ୍ଷକଙ୍କୁ ଦିଅ; ଦେଖିବ ଯେ ଦଶବର୍ଷରେ ଦେଶରେ ୧୦ ହଜାର ମନୁଷ୍ୟ ବାହାରିବେ । କୌଣସି ଦେଶ ବା ଜାତି କି ସଂସ୍କୃତ, ଉନ୍ନତ ବା ଯେ କୌଣସି ପ୍ରକାର ବଦଳାଇ ଦେବାକୁ ହେଲେ ତାହା ଛାତ୍ର ମାନଙ୍କ ଦ୍ୱାରା କରାଯାଇ ପାରେ । ସେହେତୁ ଛାତ୍ରଜୀବନକୁ ଭାବି ଜାତୀୟ ଜୀବନ କହନ୍ତି । ଛାତ୍ରମାନଙ୍କୁ ଜାତୀୟ ଛାଞ୍ଚରେ ଗଢିବାକୁ ହେବ ଯେପରି କି ଭବିଷ୍ୟତରେ ସେମାନେ ବ୍ୟକ୍ତିଗତ ସଂକୀର୍ଣ୍ଣତା ବର୍ଜନ କରିବାକୁ ସକ୍ଷମ ହେବେ । ମାତୃଭାଷା ପ୍ରତି ମମତା ପରମ ଦେଶ ହିତୈଷିତା । ଛାତ୍ରମାନେ ପରୀକ୍ଷା ପାସ ପ୍ରତି ଯେତେଦୂର ଅଗ୍ରହାନ୍ୱିତ, ମାତୃ-ଭାଷା ଶିକ୍ଷାପ୍ରତି ତେତେଦୂର ବୀତସ୍ପୃହ । ଆଜ ସରକାରକ ମାତୃଭାଷାକୁ ଯେମନ୍ତ ଜାତିନିର୍ଣ୍ଣୟ କରାଯାଉଅଛି । ଯେଉଁମାନେ ମାତୃଭାଷାକୁ ହେୟ କରନ୍ତି, ମାତୃ-ଭାଷାର ଶ୍ରୀବୃଦ୍ଧି ଓ ପୁଷ୍ଟି ସାଧନରେ ଉଦାସୀନ ରହନ୍ତି ସେମାନଙ୍କର ଜାତୀୟ ଜୀବନ ନାହିଁ । ଜାତୀୟ ଜୀବନ ବିହୀନ ମନୁଷ୍ୟତ୍ୱ ପଶୁତ୍ୱ ଅପେକ୍ଷା ହୀନତର । ଜ୍ଞାନାର୍ଥ ଯେଉଁ ଶିକ୍ଷା ଲାଭ କରିବାକୁ ହୁଏ ତାହା ଯେପରି ପ୍ରକୃତ ବିଦ୍ୟା; ଧନୋପାର୍ଜ୍ଜନ ନିମିତ୍ତ ଯେଉଁ ଶିକ୍ଷା ପାଇବାକୁ ହୁଏ ତାହା ସେହିପରି ବିଶୁଦ୍ଧ ଅବିଦ୍ୟା । ଅତଏବ ଶିକ୍ଷକ ମାନଙ୍କର ଛାତ୍ର ଜୀବନରେ ସଂଯମ ଶିକ୍ଷା ସଙ୍ଗେ ସଙ୍ଗେ ଜ୍ଞାନ ପିପାସା, ଜାତିହିତ ଚିକୀର୍ଷା ଉଦ୍ରେକ କରାଇବା ଉଚିତ ।

---

# ଉପଦେଶ

ବାଲ୍ୟାବସ୍ଥାହିଁ ସତ୍‌ଶିକ୍ଷା ଓ ସଦୁପଦେଶର ସୁସମୟ ଅଟେ, ଯେରୂପ ଉତ୍ତପ୍ତ ଲୌହ ସହଜରେ ନୁଆଁ ଯାଇଥାଏ, ଅଙ୍କୁର ସମୟରେ ବୃକ୍ଷକୁ ଯେଉଁ ଦଗରେ ବଢ଼ାଇଲେ ସେହି ଦଗରେ ବଢ଼ି ଯାଏ । ପୁଣି ବାଲ୍ୟାବସ୍ଥାହିଁ ଈଶ୍ୱରୀୟ ଅବସ୍ଥା ଅଟେ ଯେହେତୁ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ବିଷୟ ବାସନା ଓ ବିଷୟାସକ୍ତି ବୃଦ୍ଧି ଲାଭ କରେ ଏବଂ ନାନାବିଧ ଅଶାଶ୍ୱତ ପାର୍ଥିବ ଚିନ୍ତାରେ ମନ ସହିତ ସକଳ ଇନ୍ଦ୍ରିୟର ଉଦ୍‌ବେଗ ଜନ୍ମିଥାଏ । ଏହି କାରଣରୁ ବାଲ୍ୟାବସ୍ଥାକୁ ସ୍ୱର୍ଗ ରାଜ୍ୟ କୁହା ଯାଇଥାଏ । ସୂର୍ଯ୍ୟ ରଶ୍ମି ଦ୍ୱାରା କିମ୍ବା ପ୍ରଦୀପ ତେଜ ଦ୍ୱାରା ତମିସ୍ର ଦୂରୀକୃତ ହୋଇପାରେ, କିନ୍ତୁ ଯୌବନ ତମିରର ଏପରି କୌଣସି ପ୍ରତିକାର ନାହିଁ । ଧନମଦ ଜୀବନର ଶେଷାବସ୍ଥାରେ ମଧ୍ୟ ଉପଶାନ୍ତ ଲଭି ପାରେନାହିଁ, ଐଶ୍ୱର୍ଯ୍ୟ ତମିରାନ୍ଧତ୍ୱ କୌଣସି ଅଞ୍ଜନରେ ଦୂରୀଭୂତ ହୁଏନାହିଁ । ଗର୍ଭେଶ୍ୱରତ୍ୱ, ଅଭିନବ ଯୌବନ, ଅପ୍ରତିମ ରୂପ, ଅମାନୁଷିକ ଶକ୍ତି - ଏହି ସବୁ ଅନର୍ଥ ଉତ୍ପାଦକ ଅଟେ । ପ୍ରତ୍ୟେକେ ଅବିନୟର ଆସ୍ପଦ । ଶାସ୍ତ୍ର ଜଳ ପ୍ରକ୍ଷାଳିତ ନିର୍ମଳା ବୁଦ୍ଧି ମଧ୍ୟ ଯୌବନାରମ୍ଭରେ କଳୁଷିତ ହେବାକୁ ଲାଗେ । ଯେରୂପ ଧୂଳିଯୁକ୍ତ ପ୍ରଚଣ୍ଡ ବତାସ ଶୁଷ୍କ ପତ୍ରକୁ ଆପଣାର ଇଚ୍ଛାନୁସାରେ ଉଡାଇ ନେଇଯାଏ, ତଦ୍ରୂପ ରଜୋଗୁଣ ବିଶିଷ୍ଟ ପ୍ରକୃତି ଯୌବନାବସ୍ଥାରେ ମନୁଷ୍ୟକୁ ଆପଣାର ବଶୀଭୂତ କରି ପକାଏ । ଅଜ୍ଞାନାନ୍ଧ ଲୋକେ ଉନ୍ମାର୍ଗରେ ପ୍ରବେଶ କରି ଥାନ୍ତି, ପୁଣି ଇନ୍ଦ୍ରିୟାସକ୍ତ ଲୋକେ ଅସତ୍ କର୍ମରେ ଅନୁରକ୍ତ ଥାଆନ୍ତି । କୁସୁମ ଶର ପ୍ରହାର ଜର୍ଜରିତ ହୃଦୟ ରନ୍ଧ୍ରରେ ଉପଦେଶ ବାରି ବିନିର୍ଗତ ହୋଇ ପଡଇ । ପୁଣି ଦୁଷ୍ଟ ପ୍ରକୃତି ଲୋକମାନଙ୍କ ପକ୍ଷେ ଜନ୍ମ ସଂସ୍କାର କିମ୍ବା ଉଚ୍ଚଶିକ୍ଷା ଅକାରଣ ହୋଇ ଯାଇ ଥାଏ ଏବଂ ଜଳ ଅଗ୍ନି ନିର୍ବାପନ କ୍ଷମ ହେଲେହେଁ ବାଡବାନଳକୁ ଉପଶମ କରି ପାରେ ନାହିଁ । କିନ୍ତୁ ସ୍ଫଟିକ ମଣିରେ ଯେରୂପ ଚନ୍ଦ୍ର କିରଣ ପ୍ରବେଶ କରି ପାରେ, ତଦ୍ରୂପ ବାଲ୍ୟାବସ୍ଥାରେ ମନୁଷ୍ୟ ଉପଦେଶ ଗ୍ରହଣ କରି ପାରି ଥାଏ । ଅଭବ୍ୟ ଜନମାନଙ୍କ କର୍ଣ୍ଣରେ ସଦୁପଦେଶ ଶୂଳ ପ୍ରାୟ ବୋଧ ହୁଏ, କିନ୍ତୁ ସୁଶୀଳ ବାଳକମାନଙ୍କର କର୍ଣ୍ଣାଭରଣ ହୋଇଥାଏ । ଜ୍ଞାନ ଦ୍ୱାରା ଜରାବିହୀନ ବୃଦ୍ଧତ୍ୱ ପ୍ରାପ୍ତ ହୁଏ । ଗୁରୁପଦେଶ ବାଳକ ଶିଷ୍ୟର ସକଳ ପ୍ରକାର ମଳ ପ୍ରକ୍ଷାଳନ କରି ଅଜ୍ଞାନ ତମିରକୁ ବିନାଶ କରି ଥାଏ । ଏହା ସୁବର୍ଣ୍ଣ ନିର୍ମିତ ନ ହେଲେହେଁ ସୁନ୍ଦରଶ୍ରୀ କର୍ଣ୍ଣାଭରଣ ଅଟେ । ସାଧାରଣ ଲୋକଙ୍କ ଅପେକ୍ଷା ରାଜକୁମାରମାନଙ୍କ ପକ୍ଷେ ସଦୁପଦେଶ ଶିକ୍ଷା ଜୀବନରେ ଅଧିକତର ଉପାଦେୟ ଓ ପ୍ରୟୋଜନୀୟ, କାରଣ ଏହି ଗର୍ଭେଶ୍ୱର କୁମାରମାନେ ଉପଦେଶ ପ୍ରତି ଅତୀବ ଅବହେଳା କରି

ଥାନ୍ତି, ଉଦ୍ଧାମଦର୍ପ ହେତୁ ସଦୁପଦେଶ ପ୍ରତି କର୍ଣ୍ଣ ବଧିର ମୁଦ୍ରିତ ରଖି ଥାନ୍ତି, ଅଥବା କର୍ଣ୍ଣ ଦେଇଥିଲେ ହେଁ ନିମୀଳିତ ଗଜମୂର୍ଖ ପରି ଉପଦେଷ୍ଟା ପ୍ରତି ଅବହେଳା ପ୍ରଦର୍ଶନ କରିଥାନ୍ତି । ରାଜପ୍ରକୃତି ଅହଂକାର-ଦାହ-ଜ୍ୱର-ମୂର୍ଚ୍ଛାନିଳାକାରରେ ବହ୍ୱଳିତ ହୋଇ ଥାଏ । ମଦମତ୍ତ ରାଜାମାନଙ୍କ ପ୍ରତି ଭୟ ହେତୁ ରାଜପରିଜନ ବା ପରିଷଦବର୍ଗ ଉପଦେଶ ବା ପରାମର୍ଶ ଦେଇ ପାରନ୍ତି ନାହିଁ, ସେମାନଙ୍କ ପ୍ରତିଶବ୍ଦକ ମାତ୍ର ହୋଇ ଥାନ୍ତି ।

ଅତଏବ ବାଲ୍ୟାବସ୍ଥାହିଁ ଉପଦେଶ ଗ୍ରହଣର ପ୍ରକୃତ ସୁସମୟ ଅଟେ । କି ରାଜା, କି ପ୍ରଜା, କି ଧନକୁବେର, କି ଧନହୀନ, କି ଦରିଦ୍ର, କି ଗର୍ବେଶ୍ୱର କି ନୀଚ ଜନ୍ମା ସମସ୍ତେ ଉପଦେଶର ପାତ୍ର ଅଟନ୍ତି । ଏହି ସମୟରୁ ଭେଦାଭେଦ ଜ୍ଞାନ ଜୀବନର ବିଷମୟ ଓ ଘୃତମୟ ଫଳ ସମ୍ପାଦନ କରଇ ।



## ସାହିତ୍ୟ ଭଣ୍ଡାର ।

ଜାତୀୟ ସାହିତ୍ୟହିଁ ଜାତୀୟ ସମ୍ପତ୍ତି ଅଟେ । ସାହିତ୍ୟ ଦ୍ୱାରା ଜାତୀୟ ଉନ୍ନତି ଏବଂ ଅବନତିର ପରିଚୟ ମିଳେ । ଜାତିର ଉନ୍ନତି କ୍ରମେ ସାହିତ୍ୟ ବୃଦ୍ଧିଲାଭକରେ । ସାହିତ୍ୟର ବୃଦ୍ଧି ସଙ୍ଗେ ସଙ୍ଗେ ତାହାର ରକ୍ଷଣାବେକ୍ଷଣ ଆବଶ୍ୟକ ଯେପରି ତାହା କାଳକ୍ରମେ ନଷ୍ଟଭ୍ରଷ୍ଟ ନହୋଇ ଚିରକାଳ ସକାଶେ ସ୍ଥାୟୀରୂପେ ରହେ । ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଚିନ୍ତାଶୀଳ ଲୋକେ ଆପଣା ରୁଚି ଅନୁସାରେ ନାନାବିଧ ସାହିତ୍ୟ ଲେଖିଯାଇ ଥାନ୍ତି । ଏପରି ଅନେକ ସାହିତ୍ୟ ସୁରକ୍ଷିତ ହୋଇ ନପାରି କାଳକ୍ରମେ ନଷ୍ଟ ହୋଇଯାଇଥାଏ ପୁଣି ତହିଁରୁ କେତେ ମଧ୍ୟ ଲୋକଙ୍କ ସ୍ମରଣରେ ନଥାଏ । ଏହି ଲୁପ୍ତ ସାହିତ୍ୟ ପୁନରପି ପ୍ରକାଶ ପାଏନାହିଁ କିମ୍ବା ତାହାର ଆଦର୍ଶରେ ଅନ୍ୟାନ୍ୟ ପୁସ୍ତକ ଲେଖାହେବା ସହଜ ନୁହେ ! ସାହିତ୍ୟର ଏହିପରି ଦୁରବସ୍ଥାରୁ ଲୋକେ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟକ୍ଷମ ହୋଇ ପାରନ୍ତି ନାହିଁ । ଜାତୀୟ ସାହିତ୍ୟ ଆଦର୍ଶ ଅଭାବରେ ଅନ୍ୟ ଜାତୀୟ ସାହିତ୍ୟର ଅନୁକରଣ କରିବାକୁ ବାଧ୍ୟ ହେବାକୁ ହୁଏ । ଏହି ଅନୁକରଣରୁ ପ୍ରାଚୀନ ଜାତୀୟ ରୀତିନୀତି ଓ ଭାଷାର ପ୍ରଣାଳୀ ବିଲୁପ୍ତ ହୋଇ ସାହିତ୍ୟ କଦାକାର ଧାରଣକରେ । ଜାତୀୟ ସାହିତ୍ୟ ଜ୍ଞାନାଭାବରୁ ଲୋକେ ଆପଣାର ପ୍ରାଚୀନ ଅବସ୍ଥାର ଗୌରବ ଜାଣି ନପାରି ଆପଣାକୁ ନୀଚ ଜ୍ଞାନକରି କର୍ମ କ୍ଷେତ୍ରରେ ମାନବୋଚିତ କାର୍ଯ୍ୟ କରିବାକୁ ଅଗ୍ରସର ହୋଇ ପାରନ୍ତି ନାହିଁ । ଅତଏବ ସାହିତ୍ୟ ସର୍ବଦା ସଂରକ୍ଷଣୀୟ ।

ସକଳ ପ୍ରକାର ସାହିତ୍ୟ ଆଗ୍ରହର ସହିତ ରକ୍ଷଣୀୟ । ଉଚ୍ଚ ନୀଚ, ସରସ ନୀରସ ଭେଦ ନ ରଖି ସକଳପ୍ରକାର ସାହିତ୍ୟ ରଖାଯିବା ଉଚିତ, ଯେହେତୁ ପ୍ରାଚୀନ ସାହିତ୍ୟଜ୍ଞାନ ଦ୍ୱାରା ଜାତିର ପ୍ରାଚୀନ ଅବସ୍ଥାକ୍ରମ ଜଣାଯାଏ । କେତେବେଳେ ଏହାର ପତନ ଥାଏ, କେତେବେଳେ ଉତ୍ଥାନ ଥାଏ, କେତେବେଳେ ଲୋକେ ଭକ୍ତି-ରସରେ ଅପ୍ଲୁତ ହୋଇଥାନ୍ତି, ନତୁବା ଭୟାନକ କଷ୍ଟରେ ଜର୍ଜରିତ ହୋଇ-ଥାନ୍ତି, କେତେବେଳେ ଶିଳ୍ପ ବାଣିଜ୍ୟ କୁଶଳ ହୋଇ ଭାଗ୍ୟବାନ ହୋଇଥାନ୍ତି ଅବା ପରମୁଖାପେକ୍ଷୀ ଭିକ୍ଷୁ ହୋଇଥାନ୍ତି ବା କେତେବେଳେ ଧନଲୋଲୁପ ଗୃଧ୍ନୁ ବା ମୁକ୍ତହସ୍ତ ହୋଇ ଥାନ୍ତି—ଏହି ଇତିହାସ ଜ୍ଞାନରୁ ଲୋକେ ଆପଣାର ଭାବୀ ଉନ୍ନତି ପ୍ରତି ଯତ୍ନଶୀଳ ହୋଇ କ୍ରମୋନ୍ନତି ଲାଭ କରନ୍ତି । କେତେକ ଗଦ୍ୟ ପଦ୍ୟ କାହାଣୀ ବା ପଦରୁ ମଧ୍ୟ ପ୍ରାଚୀନ ଅବସ୍ଥାର ପରିଚୟ ମିଳିଥାଏ । ଯଥା 'ନିସ୍ତାତ' ପଦ ଦ୍ୱାରା ଗୋଟିଏ ସୁନ୍ଦର ପ୍ରାଚୀନ ରୀତି ଜଣାଯାଉଅଛି । ଏହିପରି ପ୍ରସ୍ଥାନ, ଉତ୍ସର୍ଗ, ଅନ୍ତଃବଣ, ମଣ୍ଡପ, ଇତ୍ୟାଦିରୁ ପ୍ରାଚୀନ ରୀତି ନୀତିର ପରିଚୟ ମିଳେ ।

ଅତଏବ ବକ୍ତବ୍ୟ ଏହି ଯେ ଅସ୍ମମାନଙ୍କର ଉତ୍କଳ ସାହିତ୍ୟର ସଂରକ୍ଷଣ ଚେଷ୍ଟା କରାଯାଉ ।

ଗୋଟିଏ ସାହିତ୍ୟ ଭଣ୍ଡାର ସ୍ଥାପିତ ହେଉ; ଏହି ଭଣ୍ଡାରରେ ପ୍ରାଚୀନ, ଆଧୁନିକ ସକଳ ସାହିତ୍ୟରୁ ଖଣ୍ଡେ ଲେଖେ ରଖାଯାଉ । ରଚୟିତାମାନଙ୍କୁ ଏହି ଭଣ୍ଡାରକୁ ଅପଣା ଆପଣା ପୁସ୍ତକରୁ ଖଣ୍ଡେଲେଖେ ପଠାଇବାକୁ ହେବ । ଏହି ଭଣ୍ଡାରର ଅନ୍ୟତମ ନାମ "ଉତ୍କଳ ପାଠାଗାର" ହେଉ, ଏହା ଉତ୍କଳ ସାହିତ୍ୟ ସମାଜର ଅଙ୍ଗୀଭୂତ ହୋଇ କଟକରେ କୌଣସି ଖ୍ୟାତନାମା ବ୍ୟକ୍ତିଙ୍କ ତତ୍ତ୍ୱା-ବଧାନରେ ରଖାଯାଉ । ନୂତନ ପୁରାତନ ଯାହାକିଛି ସାହିତ୍ୟ ଅଛି ତାହାସବୁ ସଂଗ୍ରହ କରାଯିବ, ପୁଣି ଖଣ୍ଡେ ଖଣ୍ଡେ ଅପଣା ପୁସ୍ତକ ଦେବା ସକାଶେ ପ୍ରଣେତା ଓ ସତ୍ତ୍ୱାଧିକାରୀ ମାନଙ୍କୁ ଅନୁରୋଧ କରାଯିବ । ଏହି ସଦନୁଷ୍ଠାନ ସକାଶେ ଆବଶ୍ୟକୀୟ ଧନ ଚାନ୍ଦାଦ୍ୱାରା ସଂଗୃହୀତ ହେବ; ପୁଣି ରାଜା ଜମିଦାରମାନେ ଏହାର ପୃଷ୍ଠପୋଷକ ହେବେ ।

ସାହିତ୍ୟ ସମାଜର ସଭ୍ୟମାନେ ଏହି ବିଷୟରେ ଆଲୋଚନା କରି କର୍ତ୍ତବ୍ୟ ସ୍ଥିରକରିବା ସକାଶେ ଅନୁରୋଧ କରୁଅଛୁଁ । ପ୍ରସ୍ତାବଟି ମନୋନୀତ ହେଲେ ତାହାର ବିଶେଷ ବିବରଣ ଉପସ୍ଥାପିତ କରାଯିବ ।

——○——

# ଆଚାର ଓ ବିଚାର ॥

ଅଗ୍ରେରେ ଲକ୍ଷ୍ମୀ ବଗ୍ରେରେ ପଣ୍ଡିତ ବୋଲି କଥାଅଛି । ଏହି କଥାର ଲୌକିକ ଅର୍ଥ କିମିତ ? ଯେଉଁ ଲୋକ ଶ୍ରୁତି, ସ୍ମୃତି, ପୁରାଣ, ଇତିହାସ, ତର୍କ, ମୀମାଂସା ଇତ୍ୟାଦି ବେଶି ପରିମାଣରେ ଜାଣନ୍ତି ସେମାନେ ବୋଲନ୍ତି ପଣ୍ଡିତ । ଏମାନେ ବିବିଧ ବ୍ୟାଖ୍ୟା କରି ପାରନ୍ତି, ନାନାବିଧ ସମାଧାନ କରି ପାରନ୍ତି, ଏହିପରି ଆପଣାର ଧୀଶକ୍ତି ସହିତ ଖେଳ କୌତୁକ କରୁଥାନ୍ତି । ଏମାନେ ଯେଉଁ ଭାବ ପ୍ରକାଶ କରନ୍ତି, ଯେଉଁ ଜ୍ଞାନ ପ୍ରଚାର କରନ୍ତି, ଯେଉଁ ଦୃଷ୍ଟାନ୍ତ ଦିଅନ୍ତି, ଯେଉଁ ଉପଦେଶ ଦିଅନ୍ତି, ତଦନୁଯାୟୀ ଆଚରଣ କରନ୍ତି ନାହିଁ, ସମ୍ପୂର୍ଣ୍ଣ ବିପରୀତ ଆଚରଣ କରନ୍ତି । ଅନେକ ପଣ୍ଡିତ ଆପଣାର ଜ୍ଞାନ ବା ପାଣ୍ଡିତ୍ୟକୁ ଉଦର ନିମିତ୍ତ ବା କୌଣସି ସଙ୍କୀର୍ଣ୍ଣ ସ୍ୱାର୍ଥାଭିଳାଷ ପୂରଣ ନିମିତ୍ତ ବେଶରୂପେ ଧାରଣ କରିଥାନ୍ତି । ଏମାନେ କହନ୍ତି ଅଜ୍ଞାନ ତମିର ଧ୍ୱଂସ କରିବା ନିମିତ୍ତ ଜ୍ଞାନରୂପ ସୂର୍ଯ୍ୟଙ୍କୁ ଆରାଧନା କରିବାହିଁ ଗାୟତ୍ରୀ । ଏହି ଜ୍ୟୋତି ଦ୍ୱାରା ବ୍ରହ୍ମ ସାକ୍ଷାତକାର ଲାଭ ହୁଏ । ବେଦରେ ନିୟୋଗ ପଦ୍ଧତିର ପ୍ରବର୍ତ୍ତନା ଦିଆ ଯାଇଅଛି । ଗୃହିଣୀମାନେ ଗୃହସ୍ଥମାନଙ୍କର ସହଧର୍ମିଣୀ । ସ୍ତ୍ରୀମାନେ ଦେବତା ମାନଙ୍କର ପୂଜ୍ୟ ଅଟନ୍ତି । ଗୁଣ କର୍ମ ଭେଦରେ ଚାରି ବର୍ଣ୍ଣର ସୃଷ୍ଟି । ବେଦ ଅଟେ ଅଲଙ୍ଘନୀୟ ବିଧିବାକ୍ୟ । ସ୍ମୃତି, ପୁରାଣ, ଇତିହାସ, ଧର୍ମଶାସ୍ତ୍ର ଇତ୍ୟାଦି ଶ୍ରୁତିର ଅନୁସର ଥାଏ । ଶ୍ରୁତି ବିରୁଦ୍ଧ ବାକ୍ୟ କଦାପି ଗ୍ରାହ୍ୟ ହୋଇପାରେ ନାହିଁ । ନିରାମିଷାହାର ଅଟେ ସାତ୍ତ୍ୱିକ ଆହାର । ଆମିଷାଭିଳାଷ ଦେହକୁ କଳଙ୍କିତ ଏବଂ ମନକୁ ଅପବିତ୍ର କରି ପକାଏ । ବ୍ରହ୍ମଚର୍ଯ୍ୟ ଅଟେ ବିଦ୍ୟାଶିକ୍ଷାର, ଯୁବକ ଜୀବନରେ ପରମ ସାହଚର୍ଯ୍ୟ । ଅହିଂସା ଅଟେ ପରମ ଧର୍ମ । ମିଥ୍ୟାଠାରୁ ବଳି ପାପ ନାହିଁ । ଆତ୍ମଜ୍ଞାନରେ ଭେଦ ବିଚାର ନାହିଁ । ଜାତି, ରୂପ, କୁଳ ଇତ୍ୟାଦି ଭକ୍ତି କଣ୍ଟକ ହୁଏ । ଅତିଥି ଅଟନ୍ତି ଦେବତା, ଏହାଙ୍କୁ ଜାତି ନପଚାରି ଭୋଜନ ଦେବ । କାଷ୍ଠ, ପାଷାଣ ଲୌହମୂର୍ତ୍ତି ଏସବୁ ଅଜ୍ଞାନ ଦେବତା । ସତ୍ୟଂ ବଦିଷ୍ୟାମି ଋତଂ ବଦିଷ୍ୟାମି ଇତ୍ୟାଦି, କିନ୍ତୁ ଏହି ପଣ୍ଡିତମାନଙ୍କର ଆଚରଣ ଦେଖନ୍ତୁ । ଅନେକେ ଈଶ୍ୱର ଚିନ୍ତା ଓ ଜ୍ଞାନ ବିଜ୍ଞାନ ଚର୍ଚ୍ଚା ପରିତ୍ୟାଗ କରି ଶୁଆପରି ଗାୟତ୍ରୀ ଗୁଣ୍ଡି ଦେଇ ଖିରପିଠା ନେଇ ସୂର୍ଯ୍ୟଙ୍କୁ ପୂଜା କରନ୍ତି । ରାହୁ ରାକ୍ଷସ ଆସି ସୂର୍ଯ୍ୟ ଚନ୍ଦ୍ରଙ୍କୁ ଆକ୍ରମଣ କରେବୋଲି ଗ୍ରହଣ କାଳେ ଦାନ ଦିଅ ବ୍ୟବସ୍ଥା କରିଛନ୍ତି । ଶିଶୁ ଦୁହିତାକୁ ବିଧବା କରି ଘରେ ରଖି ବୃଦ୍ଧ ବୟସରେ ନିଜେ ଯୁବତୀ ପତ୍ନୀ ସହିତ ମାତୁଥାନ୍ତି । ବିଧବା ବାଳିକା ବେଳକୁ ନିରାହାର ଏକାଦଶୀ ବ୍ୟବସ୍ଥା, ନିଜବେଳକୁ ଅନ୍ୟ କେହି ପ୍ରତିନିଧି ସ୍ୱରୂପ ଏକାଦଶୀ ପାଳିବ, ନିଜେ ସେ ମାଂସଭୋଜନ କରିବେ । ସ୍ୱାମୀର ଦିଅଁ ଦେବତାଙ୍କୁ ସ୍ତ୍ରୀ ପୂଜା

ଆରାଧନା କରି ପାରିବେ ନାହିଁ । ସ୍ତ୍ରୀ ଏଣେ ଚୁଁ ଚୁଁ କରୁଥିବେ, ପୁରୁଷ ତେଣେ ଗଜ ଗର୍ଜନ କରୁଥିବେ । ଗୃହିଣୀ ଏଣେ ଦାଣ୍ଡ ଛୁଆଁ ଘରେ ନପୁରାଇ ଗୁଆ ଗୁଡ ପୂଜା କରୁଥିବେ, ପୁରୁଷ ତେଣେ ଶକ୍ତି ପୂଜାକରି ମଦମତ୍ତ ହୋଇ ପଠାଣ ସଙ୍ଗରେ ଯୋଗଣ କରୁଥିବେ । ସ୍ତ୍ରୀ ଗୁଡାକ କେବଳ ପୁଅ ଝିଅ ଜନ୍ମ କରିବା ଯନ୍ତ୍ର କିବା ରାତି ଦିନ ଖଟିବା ଦାସୀ ନହୁବା ପୁରୁଷର ପାଶବକ ପ୍ରବୃତ୍ତି ଚରିତାର୍ଥ କରଣର ଏକ ଯନ୍ତ୍ର ବିଶେଷ । ମିଥ୍ୟାବାଦୀ, ପକ୍ଷପାତୀ, ଲମ୍ପଟାଗ୍ରଗଣ୍ୟ ମଦ୍ୟପ ହେଉ ମଧ୍ୟ ବ୍ରାହ୍ମଣର ପୁଅ ବ୍ରାହ୍ମଣ; ପୁଣି ଶିକ୍ଷିତ, ସଂଯମୀ, ନ୍ୟାୟନିଷ୍ଠ ଓ ଧର୍ମପରାୟଣ ହେଉ ମଧ୍ୟ ଶୁଦ୍ର ପୁଅ ସବୁବେଳେ ଅସ୍ପୃଶ୍ୟ ଶୁଦ୍ର ହୋଇ ରହେ । ବେଦ ପଠନ ଏବଂ ବେଦ ପଦ୍ଧତି ଉପେକ୍ଷିତ ହୁଏ । ପୁରାଣ ଗଳ୍ପକୁ ଯେମିତି କାଠ ପଥରର ଦାଆଁ ଗଢା ହୁଏ । ବ୍ରାହ୍ମଣ ଗୃହସ୍ଥମାନେ ଗୃହିଣୀ ନାମରେ ଶୁଖୁଆ କିଣି ଖାଆନ୍ତି ପୁଣି ପେଟ ପାଇଁ ନିଜେ ମାଛ ଧରନ୍ତି ଓ ପକ୍ଷୀ ମାରନ୍ତି । ଛବର୍ଷର ନବର୍ଷର ବାଳକ ଓ ବାଳିକା ମାନଙ୍କୁ ବିବାହ ଦିଆଯାଏ । ବ୍ରାହ୍ମଣ କଉଡି ବାଦକୁ ହାଡି କଉଡି ମଦକୁ । ଶହେ ପଦ କଥାରେ ପଦେ ସତ ନଥାଏ । ମିଥ୍ୟା ସାକ୍ଷ୍ୟ ଦେବାରେ ବ୍ରାହ୍ମଣ ପଣ୍ଡିତମାନେ ଧୁରନ୍ଧର । କେହି ମିଥ୍ୟା ବାଦୀ ଲୋକ ପାପୀ ବୋଲି କେବେ ପରିତ୍ୟକ୍ତ ହୁଏନାହିଁ । ସତ୍ୟବାଦିତା ନାମରେ କେବଳ ଛଳ କୌଶଳର ପ୍ରୟୋଗ ହୁଏ । ବ୍ରାହ୍ମଣ କରଣ ମାନେ ହାଡି ବାଉରିଙ୍କ ଛାଇରେ ଗୃଲନ୍ତି ନାହିଁ । କେହି ଯୋଗୀ ବୈରାଗୀ ହୁଅନ୍ତୁ ପଛେ ନୀଚଜାତି ଲୋକ ଘରେ ଖାଆନ୍ତି ବୋଲି ତାହାଙ୍କୁ ବାହାର ପିଣ୍ଡାରେ ଖାଇବାକୁ ଦିଅନ୍ତି । ପୂଜକ ଗୋଟିଏ ନାହାନ୍ତି, କିନ୍ତୁ କୋଟିଏ ପିତୁଳା ଦେଉଳ ଗଢା ହେଉଛି ।

ବର୍ଣ୍ଣର ଓ ଅର୍ଣ୍ଣର ମଧ୍ୟରେ ଏହିଭେଦ ଦେଖାଯାଏ । ବର୍ଣ୍ଣବାନ ଲୋକମାନେ କି ଅର୍ଣ୍ଣର ହୀନ ! ବର୍ଣ୍ଣର ଓ ଅର୍ଣ୍ଣର ମଧ୍ୟରେ ଆକାଶ ପାତାଳର ପ୍ରଭେଦ ବିଦ୍ୟମାନ ! ହିନ୍ଦୁ ସମାଜର କି ଘୋର ପତନ !

---

## ମାତୃଭାଷା ।

ଧିକ ସେ ଜନମ ! ଜନ୍ମ ଯେମିତି ଜାତ ହୁଏ । ଜନ୍ମ ଓ ଭାଷା ମଧ୍ୟରେ ଘନିଷ୍ଠ ସମ୍ବନ୍ଧ । ଭାଷା କୌଣସି ବ୍ୟକ୍ତି କୁ ପୋଷେ, ପାଳେ, ବଢାଏ, କର୍ମଣ୍ୟ କରେ, ଭବୁକ କରେ, ପୁଣି ମନୁଷ୍ୟ କରେ । ଭାଷାହିଁ ପ୍ରାଣିମାନଙ୍କର ଦ୍ୱିତୀୟ ମାତା ବା ପ୍ରଧାନ ମାତା । ଏହେତୁ ଏହାକୁ ମାତୃଭାଷା କହନ୍ତି । ନିଜ ମାତା ପ୍ରତି ଯେଉଁ ସନ୍ତାନର ସ୍ନେହ ନାହିଁ, ମମତା ନାହିଁ, ଭକ୍ତି ଶ୍ରଦ୍ଧା ନାହିଁ ସେହି

ନରାଧମ କି ମନୁଷ୍ୟ ? ସେ ଯଦି ମନୁଷ୍ୟ ତେବେ ପାଷଣ୍ଡ ବା ପାଷାଣ କିଏ ? ନିଜ ଭାଷା ପ୍ରତି ଯାହାର ସ୍ନେହ ନାହିଁ, ତାହାର ନିଜ ଜାତି ପ୍ରତି ମମତା କାହୁଁ ଆସିବ, ପୁଣି ପ୍ରାଣୀ ଜଗତ ପ୍ରତି ତାହାର ସମଦର୍ଶିତା କାହୁଁ ଆସିବ ?

ମାତୃଭାଷାର ସେବା ଚର୍ଚ୍ଚା ଯେ କରେ ନାହିଁ, ମାତୃଭାଷାର ମହିମା ଓ ଗୌରବ ସେ କାହୁଁ ଜାଣିବ ? ଲୋକେ ଶିକ୍ଷାଲାଭ କରନ୍ତି । ଏହି ଶିକ୍ଷାବଳରେ ମାତୃଭାଷାର ଉନ୍ନତି ସାଧନ କରିବା ପାଇଁ ଲୋକେ ଧନ ଉପାର୍ଜ୍ଜନ କରି ପ୍ରଥମେ ଆପଣାର ପିତା ମାତା ଓ ପରିବାର ମାନଙ୍କୁ ପୋଷଣ କରନ୍ତି । ଏହାହିଁ ମାନବ ଜାତିର ତଥା ସଂସାରର ନିୟମ । ଅବଶ୍ୟ ସ୍ଥାନେ ୨ କୁଳାଙ୍ଗାର ବା ଚୋର-କୁରାତିମାନେ ଦେଖା ଯାନ୍ତି, ଯେଉଁମାନେ ଆପଣା ଉପାର୍ଜ୍ଜିତ ଧନରେ ନିଜର ପିତା ମାତାଙ୍କୁ ପୋଷନ୍ତି ନାହିଁ । ସେହିପରି ଯେଉଁ ସନ୍ତାନମାନେ ଶିକ୍ଷିତ ହୁଅନ୍ତି, ସେମାନେ ଆପଣାର ମାତୃଭାଷାର ଉନ୍ନତି ସାଧନ କରନ୍ତି । ଯେଉଁ ଶିକ୍ଷିତ ଲୋକ ମାତୃଭାଷାର ଉନ୍ନତି ପ୍ରତି ଉଦାସୀନ ସେ ପ୍ରକୃତ ଶିକ୍ଷିତ ପଦବାଚ୍ୟ ନୁହେ । ଯେ ପୁଣି ମାତୃଭାଷାକୁ ହତାଦରକରେ, ଏବଂ ମାତୃଭାଷାର ଉନ୍ନତି ପଥରେ ମୂର୍ତ୍ତିମାନ ବାଧା ସ୍ୱରୂପ, ସେ କି ଜନ୍ତୁ ଜଣାଯାଏ ନାହିଁ । ସେକି ମନୁଷ୍ୟ ପଦବାଚ୍ୟ ହୋଇ ପାରେ ? କେହି ୨ ଏପରି କହନ୍ତି— "ମୋର ଯଦି ଅମୁକ କାର୍ଯ୍ୟଟା ହେଲା ନାହିଁ, ମୋହର ପୁଅ ଯଦି ଅମୁକ କାମଟା ପାଇଲା ନାହିଁ, ମୋ ଅମୁକ କାମ ପାଇବାରେ ଯଦି ଅମୁକ ଲୋକ ସାହାଯ୍ୟ କଲାନାହିଁ ତେବେ ମୁଁ ତାହାର କାର୍ଯ୍ୟରେ ବ୍ୟାଘାତ ଜନ୍ମାଇବି, ତାହାର କ୍ଷତି କରିବି, ଏମନ୍ତ କି ଜାତୀୟ କାର୍ଯ୍ୟ ହେଉ ପଛେ ତାହାର ଅନୁଷ୍ଠିତ କାର୍ଯ୍ୟମାନ ଖରାପ କରିବି—ବୃତ୍ତି ପଣ୍ଡ ଭାଙ୍ଗି ଦେବି; ସମବାୟ ଶକ୍ତି କି ଛିନ୍ନଭିନ୍ନ କରି ଦେବି, ମାତୃଭାଷାକୁ ଖଣ୍ଡଖଣ୍ଡ କରି ଦେବି, ତାହାର ମୌଳିକ ପାର୍ଥକ୍ୟ ଓ ସୌନ୍ଦର୍ଯ୍ୟ ଧ୍ୱଂସକରି ଦେବି । ଏଥର ମୋ ଭାଷାରେ ଅନ୍ୟ ଭାଷା ମିଶାଇ କହିବି, ଅନାର୍ଯ୍ୟ କୁତ୍ସିତ କହି କିରାଣ୍ଟ ଭାଷା କହି ମୋଭାଷାର ସତ୍ତା ନାଶ କରିବି ।" ଏମାନଙ୍କ ହେତୁ କି ଭାଷା ତଥା ଜାତି ଉଚ୍ଛନ୍ନ ହୋଇଯିବ ? ଏହି କଥା ଶୁଣି ଗୋଟିଏ ଘଟଣା ମନେ ପଡ଼େ । ତେଲୁଗୁ ବ୍ରାହ୍ମଣମାନେ ଆମିଷ ଖାଆନ୍ତି ନାହିଁ । କୌଣସି କମା (ତେଲୁଗୁ ବ୍ରାହ୍ମଣ)ର କଂସା ଗିନାରେ କେହି ଆମିଷ ଭୋଜୀ ମାଛ ଖାଇଦେଲା, ସେତେବେଳେ ସେହି କମା ରାଗି ଉଠି କହିଲେ ସେ ମୋହର ଗିନାରେ ମାଛ ଖାଇଦେଲା ମୁଁ ତାହାର ତାଟିଆରେ ବସ୍ତା ଖାଇଦେବି ।

---

# ବ୍ୟାଧିକରଣ ।

ଭାଷାର ଉତ୍ପତ୍ତି ଆଗ କିବା ବ୍ୟାକରଣ ରଚନା ଆଗ, ଏହି ବିଷୟରୁ ସେଦିନ ତର୍କ ବିତର୍କ କରି କେହି କେହି ପଣ୍ଡିତ କହନ୍ତି ଯେ ପ୍ରଥମେ ବ୍ୟାକରଣର ସୃଷ୍ଟି ଏବଂ ବ୍ୟାକରଣ ନିୟମାନୁସାରେ ଭାଷା ରଚିତ ହୁଏ । ଏହାଙ୍କ ବିଚାରରେ ବ୍ୟାକରଣହିଁ ବ୍ୟାକରଣ ଶିକ୍ଷାର ଲକ୍ଷ । ବାକ୍ୟର ପ୍ରୟୋଗ, ଭାଷାର ଅର୍ଥ, ମନର ଭାବ ଇତ୍ୟାଦି ଛାଡିଦିଆ ଯାଇପାରେ, ଏସବୁ ଯେଉଁଠା ତା ହେଉ ବ୍ୟାକରଣସୂତ୍ରାନୁସାରେ ଭାଷାର ଗଠନ ହେଲା କି ନା ଦେଖାଯାଏ । ବ୍ୟାକରଣ ପାଠହିଁ ବିଦ୍ୟା ଶିକ୍ଷା । ବ୍ୟାକରଣ ସୂତ୍ର ଘୋଷିବାରେ ଜୀବନବ୍ୟାପୀ ପରିଶ୍ରମ କରିବାକୁ ହୁଏ । ସମସ୍ତ କଥାରେ ବ୍ୟାକରଣ ସୂତ୍ର ଲଗାଇବାକୁ ହୁଏ । ଯାହାକି ଲିଖିତ ବ୍ୟାକରଣ ସୂତ୍ରର ଅନ୍ତର୍ଗତ ହୁଏନାହିଁ ତାହାକୁ ଅଶୁଦ୍ଧ ଭାଷା ବା ଅପଭାଷା କୁହାଯାଏ । ବ୍ୟାକରଣ ବଶ ହେତୁ ଭାବପ୍ରତି ଯଥାଯୁକ୍ତ ବିଚାର ଓ ଲକ୍ଷ ରହେ ନାହିଁ । ପ୍ରତିମା ପୂଜକମାନେ ଯେଉଁପରି ବ୍ରହ୍ମଙ୍କୁ ପରିତ୍ୟାଗ କରି ପିତୁଳାରେ ପ୍ରତିମାବଦ୍ଧ ରହନ୍ତି, ଜାତି ବିଚାରରେ ଯେପରି ମନୁଷ୍ୟତା ନଷ୍ଟହୁଏ, ରୂପ ଦୃଷ୍ଟିରେ ଯେପରି ଗୁଣପ୍ରତି ଲକ୍ଷ ରହେ ନାହିଁ, ଶ୍ୱାନ ଯେପରି ମଇଳା ଅନ୍ୱେଷଣ କରେ, ସେହିପରି ଏହି ଜାତିର ନାୟକ ଗଣ ଭାବର ବିଚାର ନକରି ବ୍ୟାକରଣ ନିୟମ ପ୍ରତି ଆକୃଷ୍ଟ ହୁଅନ୍ତି ।

ବ୍ୟାକରଣ ଦ୍ୱାରା ଭାଷା ଜାଣିବାକୁ ହୁଏ, ଏବଂ ଶୁଦ୍ଧ ବିଶୁଦ୍ଧରୂପେ କହିବା ଲେଖିବା ପଢ଼ିବା ଓ ବୁଝିବା ଇତ୍ୟାଦି କରିବାକୁ ହୁଏ । ବ୍ୟାକରଣ ଅଟେ ସାଧ୍ୟ ଏବଂ ଭାଷା ଅଟେ ସାଧନା । ଭାଷାର ବ୍ୟବହାର ନିୟମାନୁସାରେ ବ୍ୟାକରଣ ଲେଖାଯାଏ । କିନ୍ତୁ ବ୍ୟାକରଣ ନିୟମାନୁସାରେ ଭାଷା ତିଆରି ହୋଇନାହିଁ । ବ୍ୟାକରଣ ନ ପଢ଼ି ମଧ୍ୟ ତୁମ୍ଭେ ଯଦି ଅନ୍ୟ ଉପାୟ ଦ୍ୱାରା ଭାଷା ଜାଣିପାର ତେବେ ବ୍ୟାକରଣର ଆଉ ପ୍ରୟୋଜନ ନାହିଁ । ଭାଷାରୁ ତୁମ୍ଭେ ବ୍ୟାକରଣ ବାହାର କରିପାର । ଭାଷା ପ୍ରୟୋଗ ପ୍ରଣାଳୀକି ସହଜ, ସ୍ୱଳ୍ପ, ସୁନ୍ଦର, ସୁବୋଧ୍ୟ ବ୍ୟକ୍ତ କରିବାହିଁ ବ୍ୟାକରଣ । ବ୍ୟାକରଣ ଅଟେ ଭାଷାର ପଥ ପ୍ରଦର୍ଶକ ଏବଂ ଭାଷା ଅଟେ ବ୍ୟାକରଣର ଆତ୍ମା ବା ମୂଳ ବିଷୟ । ବିଷୟ ବା ଭାବ ବିହୀନ ବ୍ୟାକରଣ ନିୟମ ଅଟେ ବ୍ୟାଧିକରଣ ମାତ୍ର । ଏହି ବ୍ୟାକରଣ ବ୍ୟାଧିଗ୍ରସ୍ତ ହୋଇ ଅନେକ ଲୋକ ସଦ୍‌ଭାବରୁ ବଞ୍ଚିତ ହୁଅନ୍ତି ।

# ସ୍ୱଭାବ ଅନୁସାରେ ଶିକ୍ଷାର ଫଳ ।

ବିଦ୍ୟାରୁ ବିନୟ, ଶାନ୍ତି ଏବଂ ସନ୍ତୋଷ ଜାତ ହେବାର କଥା । କିନ୍ତୁ ଦେଖାଯାଉଅଛି ଅନେକ ଲୋକଠାରେ ବିପରୀତ ଫଳ ଫଳୁଅଛି । କେହି ୨ ବିଚକ୍ଷଣ ବୁଦ୍ଧିମାନ ଲୋକ ଅନେକ ପାଠ ପଢ଼ନ୍ତି, ଅନେକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି ବା ପାସ୍ କରନ୍ତି । ଏମାନଙ୍କ ପେଟଖେର ଢେଉଡେଗୁଡ଼େ ପାଠ ଥାଏ, କିନ୍ତୁ ସେସବୁ ଜ୍ଞାନ ବୁଦ୍ଧି ବିନୟ ସୌଜନ୍ୟରେ ପରିଣତ ନହୋଇ ଅତ୍ମାଭିମାନ, ଅହଙ୍କାର, ବିବାଦ, କ୍ରୋଧ ଇତ୍ୟାଦି ଜାତ କରାଏ । ଗୁଣ-କର୍ମ ଓ ସ୍ୱଭାବ ଅନୁସାରେ ମନୁଷ୍ୟର ମନୁଷ୍ୟତ୍ୱ ବା ପଶୁତ୍ୱର ପରିଚୟ ମିଳେ । ଲୋକ ଯେତେ ବିଦ୍ୱାନ୍ ହେଉ, ଯେତେ ଧନବନ୍ତ ହେଉ ଆପଣାର ସ୍ୱଭାବ ଅନୁସାରେ କାର୍ଯ୍ୟ କରେ । ଆଜିକାଲିର ଜନ୍ମଗତ ବ୍ରାହ୍ମଣମାନେ ବିଶେଷତଃ ଶାସନୀ ବ୍ରାହ୍ମଣମାନେ ଯଜନ, ଯାଜନ, ଅଧ୍ୟୟନ ଓ ଅଧ୍ୟାପନକୁ ଗୌଣ ପକ୍ଷ ଏବଂ ପରିଗ୍ରହକୁ ଆପଣାର ମୁଖ୍ୟ ଧର୍ମ, ବୃତ୍ତି ଓ ବ୍ୟବସାୟ କରିଛନ୍ତି । ଆମ ଶାସନର ଜଣେ ବିଚକ୍ଷଣ ବୁଦ୍ଧିମାନ ବ୍ରାହ୍ମଣ ସଂସ୍କୃତ ପଢ଼ା ଶୁଣା କରିଛନ୍ତି, ଅସାଧାରଣ ଅଧ୍ୟୟନ ପ୍ରିୟ; ବ୍ୟାକରଣ, କାବ୍ୟ, ନ୍ୟାୟ, ସ୍ମୃତି ଇତ୍ୟାଦି ଅନେକ ଗୁଡିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେଣି, ନିଜର କିଛି ସାମାନ୍ୟ ଜମି ବାଡିରେ ଏକ ପ୍ରକାର ପରିବାର ପୋଷଣ କରି ଚଳିଯାନ୍ତି; ତଥାପି ପରିଗ୍ରହ ପରିତ୍ୟାଗ କରିପାରି ନାହାନ୍ତି, ମାଗିବାଠାକୁହିଁ ମନ କରିଛନ୍ତି । ଏହି ବ୍ରାହ୍ମଣ ପଣ୍ଡିତ ସେଦିନ ଖଣ୍ଡେ ବ୍ୟାକରଣ ପୁସ୍ତକ କିଣିବା ନିମନ୍ତେ ମୋଠାରୁ ଟ ୭ ମାଗି ନେଲେ ପୁଣି କିଛିଦିନ ପରେ ଅନ୍ନ କିଛି ଭରଣ ପୋଷଣ ନିମନ୍ତେ ମାଗିବାରୁ ଏହାଙ୍କୁ ଧାନ ତିନି ନଉତି ଦେବାକୁ କୁହାଗଲା । କିନ୍ତୁ ତହିଁରେ ସେ ତୃପ୍ତ ନହୋଇ ଆଉ ଅଧିକ ନଦେଲାରୁ ସେହି ଧାନ ନେଲେ ନାହିଁ, ଅନେକ କଟୁକଥା କହିଲେ, ତୁମ୍ଭର ଦୟା ଧର୍ମ ବିଚାର ନାହିଁ, ତୁମ୍ଭେ ଅଦାତା, ତୁମ୍ଭେ କାହାକୁ କିଛି ଦେଉନାହିଁ, ମୋ ଭଳି ବ୍ରାହ୍ମଣ ପଣ୍ଡିତଙ୍କୁ ଯଦି ଭରଣେ ଦୁଇଭରଣ ଧାନ ଦେଉନାହିଁ, ତେବେ ତୁମ୍ଭେ କାହାକୁ ଅବା କଣ ଦେଉଥିବ- ଏହିପରି ନାନାପ୍ରକାର କଟୁକଥା କହି ଧାନ ନନେଇ କ୍ରୋଧ କରି ଚାଲିଗଲେ । ଏହି ପଣ୍ଡିତ ମହାଶୟ ପୁସ୍ତକ କିଣିବାପାଇଁ ଟ ୭ ନେଲା ବେଳେ ମୋହର ଅନେକ ପ୍ରଶଂସା କରିଥିଲେ । ମାଗିବାମାତ୍ରେ ଟ ୭ ଦେଇଦେବା ସହଜ କଥା ନୁହେଁ, ଏହା ଅତି ମହାଦାନ; ସମସ୍ତେ ଏପରି ଦେଇ ପାରନ୍ତି ନାହିଁ, ଆପଣ ଏହି ଦାନ ହେତୁ ଅଶେଷ ଧନ୍ୟବାଦର ପାତ୍ର । ଏପରି ଅନେକ ପ୍ରଶଂସା କରି ଥିଲେ, ଏବେ ଧାନ ତିନି ନଉତି ଦେବାରୁ ତାହା ନନେଇ ଅସନ୍ତୁଷ୍ଟ ହୋଇ ଅନେକ ନିନ୍ଦା କଲେ ।

ଏହାଙ୍କୁ କି କହି ପଣ୍ଡିତ ଲକ୍ଷଣ ବା ବ୍ରାହ୍ମଣର ଧର୍ମ ? ଯାହାର ଯେଉଁ ସ୍ୱଭାବ, ବିଦ୍ୟାଶିକ୍ଷାରେ କି ତାହା ଛାଡିପିବ ? ପାତ୍ରର ରଙ୍ଗ ଅନୁସାରେ ଜଳର ବର୍ଣ୍ଣ ଦେଖାଯାଏ । ଅନେକ ଅବିଦ୍ୟ ମୂର୍ଖ ବ୍ରାହ୍ମଣ ଶାନ୍ତ ବିଣୀତ ସନ୍ତୁଷ୍ଟ ରହନ୍ତି ପୁଣି ଅନେକ ବିଦ୍ୱାନ ପଣ୍ଡିତ ଦୁଷ୍ଟ ସ୍ୱଭାବ, କ୍ରୋଧ ପ୍ରକୃତିକ, ଉଦ୍ଧତ ଏବଂ ଅସନ୍ତୁଷ୍ଟ ଦେଖାଯାନ୍ତି । ପେଟରେ କେତେ ପାଠ ରହୁ, ତୁ ଯେତେ ମାଠିବୁ ମାଠ, ମୁଁ ସେହି ଦାରପୋଡା ଢାଠ ।

—o—

## ଶବ୍ଦ ତତ୍ତ୍ୱ ।

ବିସର୍ଜ୍ଜନ—ଏହି ପଦର ଅର୍ଥ ବିଶେଷରେ ସର୍ଜ୍ଜନ, ବିଶେଷ ଭାବରେ ସୃଷ୍ଟି, ନିର୍ମାଣ, ତିଆରି ବା ଉତ୍ପନ୍ନ କରିବା । ମାତ୍ର ଆଜି ଆମ୍ଭମାନଙ୍କ ନିକଟରେ ଏହାର ଅର୍ଥ ତ୍ୟାଗ । ସତ୍‌କାର୍ଯ୍ୟରେ ତ୍ୟାଗ କରିବା ଦ୍ୱାରା ଅମ୍ଭେମାନେ ଭବିଷ୍ୟତ ପାଇଁ ଅମ୍ଭମାନଙ୍କ ସକାଶେ କିଛି ଯୋଗାଡ଼ କରିଥାଉଁ । ଏହେତୁ ତ୍ୟାଗ ମାନବର ଏକ ସୁମହତ କାର୍ଯ୍ୟ ଅଟେ । ଲୋକରେ କଥା ଅଛି କି, "ଦେଇଥିଲେ ପାଇ, ବୁଣିଥିଲେ ଦାଇ" । ଅତଏବ ବିସର୍ଜ୍ଜନର ଅର୍ଥ ତ୍ୟାଗ । ପୁଣି କୌଣସି ପଦାର୍ଥ ହେଉ ବିସର୍ଜନ କରିଦେଲେ, ଯଥା ନିର୍ମିତ ପ୍ରତିମା ଗୁଡିକୁ ପୂଜା ଅର୍ଚ୍ଚନା ପରେ ଜଳରେ ଫିଙ୍ଗି-ଦେଲେ ଫେରେ ନୂତନ ସୃଷ୍ଟି କରିବାକୁ ହୁଏ । ଅତଏବ ବିସର୍ଜନର ଅର୍ଥ ଉପସଂହାର ହେଲେହେଁ ବିଶେଷ ରୂପେ ସର୍ଜ୍ଜନା । ଏହି ଭାବାର୍ଥ ମଧ୍ୟ ଉକ୍ତ ପଦର ଅନ୍ତର୍ଭୁକ୍ତ ଅଟେ ।

ବିତରଣ—ବିଶେଷ ଭାବରେ ଉତ୍ତୋର । ତ୍ୟାଗ ବା ଦାନ ଦ୍ୱାରା ଏହି ଭବ ସାଗରରୁ ତରିବାକୁ ହୁଏ । ଅତଏବ ବିତରଣର ଅର୍ଥ ଦାନ । ଉପସର୍ଗ ବିଶେଷରେ ଅର୍ଥ ବିଶେଷ, ଏହାମଧ୍ୟ ଅଟଳ ନିୟମ ନୁହେ । ବ୍ୟବହାର ସମ୍ବନ୍ଧ ଯୋଗରୁ ଶବ୍ଦର ଅର୍ଥ ନିରୂପିତ ହୋଇଥାଏ । ଉପବାସ—ନିକଟରେ ବାସ କରିବା, ପରମାତ୍ମା ପରମେଶ୍ୱରଙ୍କ ନିକଟବର୍ତ୍ତୀ ହେବା । ସାମୀପ୍ୟ, ସାରୂପ୍ୟ, ପ୍ରଭୃତି ନାନାବିଧ ମୁକ୍ତି ମଧ୍ୟରେ ଉପବାସାଦି ନିୟମ ଦ୍ୱାରା ସାମୀପ୍ୟ ମୁକ୍ତି ସାଧନ କରାଯାଇ ପାରେ । ଉପବାସର ଅର୍ଥ ନୁହେ ଯେ କେବଳ ଆହାର ତ୍ୟାଗ କରି ରହିବା, କିନ୍ତୁ ଆହାର ତ୍ୟାଗ କରିବା ଉପବାସର ଏକ ନିୟମ ହୋଇ ପାରେ । ଆହାର ତ୍ୟାଗର ଅର୍ଥ ଏପରି ନୁହେ ଯେ ପ୍ରାଣପଣେ ସକଳ ପ୍ରକାର ଆହାର ତ୍ୟାଗ କରି ଦେବାକୁ ହେବ । ଅହାର କରିବା ଦ୍ୱାରା (ଉଦରମ୍ଭରିମାନଙ୍କ ଦୃଷ୍ଟାନ୍ତ ନିଅନ୍ତୁ) ଅନେକ ସମୟରେ

ମଳମୂତ୍ର ଉତ୍ସର୍ଗାଦି ପ୍ରତିବନ୍ଧକ, ମନର ମନ୍ଦଭାବ ଓ ଅବୟବର ଆଳସ୍ୟ ଜନ୍ମାଏ; ପୁଣି ଜ୍ଞାନ ଧ୍ୟାନ ପୂର୍ବକ ମନୋଯୋଗ ଓ ଏକାଗ୍ରଚିତ୍ତ ସାଧନ ହୋଇ ନପାରେ । ଅତଏବ ସ୍ୱଳ୍ପାହାର କରି ଜ୍ଞାନ, ଧ୍ୟାନ, ଈଶ୍ୱରୋପାସନା କରିବାକୁ ହୁଏ । କ୍ଷୁଧା ତୃଷା ହେତୁରୁ ଅଙ୍ଗ ପ୍ରତ୍ୟଙ୍ଗ ଦୁର୍ବଳ ହୋଇ ପଡ଼ିବ, ତେଜ ଓଜ ନଷ୍ଟ ହେବ, ମନସ୍ଫୂର୍ତ୍ତି ବିକାଶ ପାଇବ ନାହିଁ ପୁଣି ଯଠରେ ସନ୍ତପ୍ତ ହୋଇଥିବା ହେତୁରୁ ମନ ସଂଯୋଗ ଓ ଏକାଗ୍ର ଲକ୍ଷ୍ୟ ସାଧନ ହୋଇପାରିବ ନାହିଁ । ଏଣେ ଦୂର ଅହାର ତ୍ୟାଗ କରିବା ଦ୍ୱାରା ଈଶ୍ୱରୋପବାସ କରିବା ଦୂରେ ଥାଉ କ୍ରମଶଃ ଈଶ୍ୱରଙ୍କଠାରୁ ଦୂରବର୍ତ୍ତୀ ହୋଇ ଯିବାକୁ ପଡ଼େ । ଆମ୍ଭ ଦେଶରେ ଅନେକେ ଓଷା ବ୍ରତ ପାଳିଥାନ୍ତି, ଏକାଦଶୀ, ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଉପବାସ କରିଥାନ୍ତି, ଅନେକେ ଜଳ ଟୋପାଏ ମଧ୍ୟ ଗ୍ରହଣ କରି ନଥାନ୍ତି, କିନ୍ତୁ ଅସତ୍ପ୍ରସଙ୍ଗ, ଅସଦାଳାପ, ମିଥ୍ୟା ଭାଷଣ, ଲୋଭାସକ୍ତି ଓ ଅନିଷ୍ଟ ଚିନ୍ତନ ଇତ୍ୟାଦି ମନ୍ଦ କାର୍ଯ୍ୟରେ ବ୍ୟାପୃତ ଥାଆନ୍ତି । ଯେରୂପ କେହି କେହି ନାମ ସ୍ମରଣକାରୀ ଭକ୍ତମାନେ ହାତରେ ଜପାମାଳା ଗଡ଼ାଉ୨ ଶୁଣୁଥିବି ଦରଦାମ ବୁଝି ନେଇ ଥାଆନ୍ତି, ସେହିରୂପେ ଅନେକେ ଉପବାସ କରି ଦୂର ବାସରେ ପିଡ଼ ଥାଆନ୍ତି ।

ଉପନୟନ—ଦ୍ୱିଜ ମାନଙ୍କର ଯଜ୍ଞସୂତ୍ର ଧାରଣ ସଂସ୍କାର ବିଶେଷ । ବ୍ୟୁତ୍ପତ୍ତି ଅନୁସାରେ ଏହାର ଅର୍ଥ ନିକଟକୁ ଅଣିବା ବା ଆଣିବା, ଅର୍ଥାତ୍ ବେଦ ଶିକ୍ଷା କରିବା ସକାଶେ ଗୁରୁଙ୍କ ନିକଟେ ଉପନୀତ ହେବା । ବ୍ରାହ୍ମଣର ସଂସ୍କାର କର୍ମ ମାନଙ୍କରେ ଏହା ଏକ ପ୍ରଧାନ କର୍ମ ଅଟେ । କିନ୍ତୁ ଆଜି କାଲି ଏହି ଅର୍ଥର ଅନର୍ଥ କରା ଯାଇଅଛି । ଉପନୟନ ପ୍ରଥା ଗୋଟିଏ ନାମ ମାତ୍ର ନିଃସାର ବ୍ୟାପାର ହୋଇ ପଡ଼ିଅଛି, କର୍ପୂର ଯାଇ କନା ମାତ୍ର ଅଛି । ପୁରୋହିତ ମୁଖ ନିଃସୃତ ବେଦ ବାକ୍ୟରୁ ଦୁଇ ଚାରିପଦ ବେଦ ଉପରେ ବସି ଶୁଣି ଦେବା ମାତ୍ରେ ବେଦ ଅଧ୍ୟୟନର ସମାପନ କରାଯାଇ ଥାଏ । ଉକ୍ତ ସଂସ୍କାର ସମ୍ବନ୍ଧୀୟ ଅନ୍ୟାନ୍ୟ କର୍ମ ଗୁଡ଼ିକ ମଧ୍ୟ ଏହି ରୀତିରେ ସମାପ୍ତ ହୋଇ ଥାଏ । ଏହି କର୍ମାନୁଷ୍ଠାନ ପରେ ମୂର୍ଖ ବିପ୍ର ଗୁଡ଼ିଆକ ଏକାବେଳକେ ନିଷ୍ଣାତ ହୋଇ ପଡ଼େ । ଧନ୍ୟ ସେ ଉପନୟନ ବିଧାନ, ଯାହାର ଐନ୍ଦ୍ରଜାଲିକ ମନ୍ତ୍ର ଶ୍ରବଣ ମାତ୍ରେ ବର୍ଷକୁ ବର୍ଷ ଅସଂଖ୍ୟ ବାଳକ ବ୍ରାହ୍ମଣ ରୂପେ ପରିଗୃହୀତ ହୋଇ ଯାଆନ୍ତି । ଇଂରାଜ ମାନେ କଳ କୌଶଳ ବଳରେ ଅନେକ ଜିନିଷ ତିଆରି କରି ପାରନ୍ତି କିନ୍ତୁ ଆମ୍ଭେମାନେ ଏହି ଉପନୟନ ନାମକ ବୈଦିକ ଯନ୍ତ୍ର ବଳରେ ଅସଂଖ୍ୟ ବ୍ରାହ୍ମଣ ଗଢି ପାରୁଅଛୁଁ । ଏହି ବ୍ରାହ୍ମଣ ମାନଙ୍କ ମହିମା ସାମାନ୍ୟ ନୁହେ ।

—:-○-:—

# ସାହିତ୍ୟ ପ୍ରସଙ୍ଗ ।

ଭାଷା ଏବଂ ସାହିତ୍ୟର ଉନ୍ନତିରେ ଦେଶ ଓ ଜାତିର ଉନ୍ନତି ହୁଏ । ଦେଶମିଶ୍ରଣ ବୋଲ, ବିଶ୍ୱବିଦ୍ୟାଳୟ ସ୍ଥାପନ ବୋଲ, ବ୍ୟବସ୍ଥାପକ-ଦଳରେ ନିଜ-ଦଳର ସଂଖ୍ୟା ବୃଦ୍ଧି ବୋଲ, ଏହିସବୁ ସାଧନା କେବଳ ବାଣୀ ଓ ସାହିତ୍ୟର ଉତ୍କର୍ଷ ସିଦ୍ଧି ସକାଶେ । ଏହିଲକ୍ଷ ପ୍ରତି ଦୃଷ୍ଟି ନ ରଖିଲେ ଉକ୍ତ ସମସ୍ତ ଆୟୋଜନ କେବଳ ବୃଥା ଅସ୍ଥାନ ମାତ୍ର । କେବଳ ରାଜନୈତିକ ଆନ୍ଦୋଳନରେ, ସରକାର ଚାକିରି ପାଇବା ଚେଷ୍ଟାରେ, ବି. ଏ, ବି. ଏଲ ପାଶ୍ କରି ଓକିଲ ସଂଖ୍ୟା ବଢ଼ାଇ-ବାରେ, ବ୍ୟବସ୍ଥାପକ ସଭାରେ ବସିବାପାଇଁ ଲୋକଙ୍କ ମତ ସମ୍ପାଦନ କରିବାରେ କିମ୍ବା ଇଂରେଜୀ ଭାଷାରେ ବକ୍ତୃତାକରି ପ୍ରବନ୍ଧ ଲେଖି ପ୍ରତିଷ୍ଠା ଉପାର୍ଜ୍ଜନ କରିବାରେ ଦେଶର ଉପକାର ଓ ଜାତିର ଉନ୍ନତି ସାଧିତ ହୋଇପାରେ ନାହିଁ । ଦେଶମିଶ୍ରଣାଦି ରାଜନୈତିକ ଆନ୍ଦୋଳନ ସଙ୍ଗେ ସଙ୍ଗେ ମାତୃ ଭାଷା ଓ ଜାତୀୟ ସାହିତ୍ୟର ପୁଷ୍ଟି, ସୌନ୍ଦର୍ଯ୍ୟ ଏବଂ ଉପାଦେୟତା ବର୍ଦ୍ଧନ କରିବାକୁ ହେବ । ଉତ୍କଳୀୟମାନେ ଆପଣାକୁ ଅନୁନ୍ନତ ଭାବନା କରି ଆତ୍ମଧିକ୍କାର ଭୋଗ କରୁଅଛନ୍ତି । ବଙ୍ଗାଳି ଜାତି ଭାରତରେ ଏକ ଉନ୍ନତ ଜାତି ବୋଲାଉଅଛନ୍ତି । ଏହାର କାରଣ କଣ ? ଉତ୍କଳ ସାହିତ୍ୟ ପ୍ରାଚୀନ ହେଲେହେଁ କ୍ଷୁଦ୍ର,ଅକିଂଚନ,ନିଶ୍ଚେଷ୍ଟ, ନିଷ୍ପ୍ରଭ, ଦୀନ ହୀନ ହୋଇ ପଡିଅଛି, କିନ୍ତୁ ବଙ୍ଗ ସାହିତ୍ୟ ଅପେକ୍ଷାକୃତ ଅଳ୍ପକାଳର ହେଲେ ମଧ୍ୟ ପୁଣି ପ୍ରାଚୀନ ସମ୍ବଳ ଏବଂ ଆଦର୍ଶ ଯାଚ ନଥିଲେହେଁ ଆଧୁନିକ ଯୁଗର ଦେଶକାଳ-ପାତ୍ରୋଚିତ ଆଦର୍ଶସଂଗ୍ରହ କରି ଦିନକୁ ଦିନ ଉନ୍ନତି ଲାଭକରି ବର୍ତ୍ତମାନ ଶୀର୍ଷ-ସ୍ଥାନୀୟ ହେବାକୁ ବସିଅଛି । ବିଷୟ ବିଭାଗରେ କିବା ଧର୍ମରାଜ୍ୟରେ ଅଙ୍କ ରକ୍ଷଣଶୀଳତା ଯେପରି ସଂକୀର୍ଣ୍ଣତା ସଂପାଦନକରେ ସାହିତ୍ୟକ ଉନ୍ନତିର ମଧ୍ୟ ସେହିପରି ଅନ୍ତରାୟ ହୁଏ । ସୁତରାଂ ଜାତୀୟ ସାହିତ୍ୟିକ କ୍ଷେତ୍ରର ପରସ୍ପର ବୃଦ୍ଧି ଓ ଉନ୍ନତି ସାଧନ ସକାଶେ ବସୁଧୈବ ଔଦାର୍ଯ୍ୟ ଅବଲମ୍ବନ କରିବାକୁ ହେବ । ନୂତନ ପାଠ୍ୟ ପୁସ୍ତକ ଓ ଗ୍ରନ୍ଥ ପ୍ରଣୟନ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଉନ୍ନତ ସାହିତ୍ୟରୁ ଜ୍ଞାନ ବିଜ୍ଞାନଗର୍ଭିକ ବିବିଧ ସାର ସଂଗ୍ରହ କରି ତହିଁର ଉତ୍କଳାନୁବାଦ କରି ରଖି-ବାକୁ ହେବ । ଜ୍ଞାନସାଗର ଅସୀମ, ଜୀବନ ଗୋଷ୍ପଦ ସସୀମ । ଅତଏବ ବିଦ୍ୟାର୍ଥୀ-ମାନଙ୍କ ଶିକ୍ଷା ଦୀକ୍ଷା ଓ ଆଦର୍ଶ ସକାଶେ ବିଜାତୀୟ ବିଦେଶୀୟ ବିବିଧ ସାହିତ୍ୟରୁ ସାର ସଂଗ୍ରହକରି ଉତ୍କଳ ଭାଷାରେ ଅନୁବାଦ କରିବାକୁ ହେବ ।

ପାଠକମାନଙ୍କ ଅବଗତ ଓ ଉତ୍ସାହ ବର୍ଦ୍ଧନ ନିମନ୍ତେ ଜଣାଉ ଦଅଯାଉଅଛି ଯେ, ସ୍ୱାମୀ ଶ୍ରୀମଦ୍‌ଦୟାନନ୍ଦ ସରସ୍ୱତୀ ପ୍ରଣୀତ ସତ୍ୟାର୍ଥ ପ୍ରକାଶ ଗ୍ରନ୍ଥ ପୂର୍ବାର୍ଦ୍ଧର ଉତ୍କଳାନୁବାଦ ଶେଷ ହୋଇ ଅଛି ଏବଂ ତାହାଙ୍କର ଅନ୍ୟାନ୍ୟ ପୁସ୍ତକରୁ ସଂକଳିତ "ଗୃହାଶ୍ରମ ଓ ପଞ୍ଚ ମହାଯଜ୍ଞ ବିଧି" ଲେଖା ଶେଷ ହୋଇଅଛି । ସତ୍ୟାର୍ଥ ପ୍ରକାଶ ଉତ୍ତରାର୍ଦ୍ଧର ଅନୁବାଦ ଲାଗିଅଛି । ଏହି ତିନି ଖଣ୍ଡ ପୁସ୍ତକ ଛପା ହୋଇ ଶୀଘ୍ର ପ୍ରକାଶିତ ହେବ ।

ଦରିଦ୍ର ଉତ୍କଳସାହିତ୍ୟ କ୍ଷେତ୍ର ଅନୁର୍ବର ହୋଇ ପଡ଼ିଅଛି । ତହିଁରେ ବର୍ତ୍ତମାନ ପ୍ରଣୀତ ଓ ଅନୁବାଦିତ ଗ୍ରନ୍ଥ ମୁଦ୍ରାଙ୍କନ ଉପକରଣ ଗୁଡ଼ିକର ମହାର୍ଘ ଉପସ୍ଥିତ । ସୁଭିକ୍ଷ କାଳର ଲେଖା ଗୁଡ଼ିକ ଛପା ହୋଇ ନପାରି ଅନେକ ସ୍ଥାନରେ ପଡ଼ିରହି ଉଇଲାଗି ଯାଉ ସାରିଲାଣି, ଆଜିକାଲି ଲେଖକମାନଙ୍କର ଲେଖା ଗୁଡ଼ିକ କେତେଦିନ ବା କିପରି ଏହି ଘୋର ଦୁର୍ଭିକ୍ଷ ଭୟାନକ ଅନ୍ଧକାରକୁ ଅତିକ୍ରମ କରି ଆଲୋକରେ ପ୍ରକାଶିତ ହେବ ! ଯାହା ହେଉ ଧୈର୍ଯ୍ୟ ଅବଲମ୍ବନ କରିବାକୁ ହେବ, ଲେଖି ରଖିବାକୁ ହେବ । ଈଶ୍ୱରଙ୍କ ବିଚିତ୍ର ରାଜ୍ୟରେ କିଣ ଅପୂର୍ବ ? ଅବସ୍ଥାର ଆନୁକୂଲ୍ୟ ଓ ସମ୍ବଳର ବାହୁଲ୍ୟ ଘଟିପାରେ ।



## ସାମ୍ପ୍ରଦାୟିକ ବିଦ୍ୟାଳୟ

ସେଦିନ ସୁବିଖ୍ୟାତ ଓକିଲ ଡାକ୍ତର ରାସବିହାରୀ ଘୋଷ କହିଥିଲେ ଯେ, ଆଜିକାଲି କୌଣସି ପ୍ରକାର ଉପାର୍ଜ୍ଜନ କରିବା ଭଳି ଶିକ୍ଷା ଦେବାର ଯେଉଁ ପଦ୍ଧତି ହୋଇଅଛି, ତାହା ସର୍ବତୋଭାବେ ନିନ୍ଦନୀୟ । ଧର୍ମ, ଜ୍ଞାନ ଓ ସାମାଜିକ ଉନ୍ନତି ପ୍ରକାଶ ମନକୁ ଯୋଗ୍ୟ କରିବା, ଅପର ସାଧାରଣଙ୍କୁ ଶିକ୍ଷାଦେବା କାରଣ ଉତ୍ସାହିତ କରିବା ବିଶ୍ୱବିଦ୍ୟାଳୟର କାର୍ଯ୍ୟ ପୁଣି କହି ଅଛନ୍ତି, ଭାରତୀୟ ସରକାରୀ ବିଶ୍ୱବିଦ୍ୟାଳୟମାନଙ୍କରେ ଧର୍ମଶିକ୍ଷା ଦେବାର ପ୍ରୟୋଜନ ନାହିଁ ପୁଣି ସୁବିଖ୍ୟାତ ଦାର୍ଶନିକ ପଣ୍ଡିତ ଷ୍ଟୁଆର୍ଟ ମିଲଙ୍କର କଥା ଉଦ୍ଧୃତ କରି କହିଅଛନ୍ତି, ବିଶ୍ୱବିଦ୍ୟାଳୟ ସକଳ ଜାତି ଓ ସକଳ ସମ୍ପ୍ରଦାୟର ଲୋକ ସକାଶେ ମୁକୁଳା ରହିବ ଏବଂ ଉଚ୍ଚ ଶିକ୍ଷା ଦିଆଯିବ ଏହାର ପ୍ରଧାନ ଉଦ୍ଦେଶ୍ୟ ହେବା ଉଚିତ । ସାମ୍ପ୍ରଦାୟିକ ବିଦ୍ୟାଳୟ ସ୍ଥାପନ ବା ସାମ୍ପ୍ରଦାୟିକ ଶିକ୍ଷା ଦ୍ୱାରା ଅନୁଦାର ଏବଂ ସଂକୀର୍ଣ୍ଣ ଭାବର ବୃଦ୍ଧି ହୁଏ । ଏଥିରେ ମତଦ୍ୱୈଧ ରହି ନ ପାରେ । ଅସ୍ମମାନଙ୍କର ସାମ୍ପ୍ରଦାୟିକତା ପ୍ରିୟ କାପିକା-ସମ୍ପାଦକ ମଧ୍ୟ ଘୋଷ ମହାଶୟଙ୍କର ଏହି ମତକୁ ସର୍ବାନ୍ତଃକରଣରେ

ଅନୁମୋଦନ କରୁ ଅଛନ୍ତି । ରାସବେହାରୀବାବୁଙ୍କର ମତ ଯେ ବିଶ୍ୱବିଦ୍ୟାଳୟ ପ୍ରତି ପ୍ରଯୁଜ୍ୟ, ନଗର ବା ପଲ୍ଲୀଗ୍ରାମ ବିଦ୍ୟାଳୟ ପ୍ରତି ଖଟିବ ନାହିଁ, ଏହା ବୋଲାଯାଇ ନ ପାରେ । ସାମ୍ପ୍ରଦାୟିକତା ସଙ୍କୀର୍ଣ୍ଣତାର ନାମାନ୍ତର ମାତ୍ର । ସଙ୍କୀର୍ଣ୍ଣତା ଦ୍ୱାରା ଉଦାରତା ଲାଭ କରିବା କେବଳ ବିଡ଼ମ୍ବନା । ସାମ୍ପ୍ରଦାୟିକ ଅନୁଷ୍ଠାନରୁ କୌଣସି ଏକ ଦିଗରେ ବା ଦଶ ବିଶେଷରେ ସଦ୍ୟ ଫଳପ୍ରାପ୍ତ ହେଲେହେଁ ଏହି ସାମ୍ପ୍ରଦାୟିକତା ପରିଣାମରେ ଉଦାରତାର ଅନ୍ତରାୟ ହୋଇ ଉଠେ । ହିନ୍ଦୁ ମାନଙ୍କର ଜାତି ଚତୁଷ୍ଟୟ ବ୍ୟବସ୍ଥା ଏହାର ଜ୍ୱଳନ୍ତ ଉଦାହରଣ । ଗୁଣର ପରିଚୟ ଓ କର୍ମକାଣ୍ଡର ସୁବିଧା ନିମନ୍ତେ ଜାତିବିଭାଗର ସୃଷ୍ଟି ଥିଲା । କିନ୍ତୁ ଆଜି ଏହି ଜାତିଭେଦ-ବିଷ ଭାରତୀୟ ଆର୍ଯ୍ୟଜାତିକି ଛାରଖାର କରି ପକାଇଅଛି ।

---

# ଅଧୀତି ବୋଧାଚରଣ ପ୍ରଚାର ।

କେବଳ ପାଠ ପଢିଲେତ ହୁଏନାହିଁ, କିମ୍ବା ପାଠ ପଢି ପରୀକ୍ଷାରେ ପାସ କଲେମଧ୍ୟ ତହିଁରେ ପ୍ରୟୋଜନ ନାହିଁ । କୋଡ଼ିଏ ପାଠ ମୁଣ୍ଡରେ ମୁଣ୍ଡାଅ, ପେଟେ ପାଠ ପେଟରେ ଭରତି କର, ତହିଁରେ ବା ତୁମ୍ଭର କି ପ୍ରୟୋଜନ? ଗଧ ଚନ୍ଦନ କାଠ ବହେ, ସେ କି ତାର ସୁଗନ୍ଧ ଭୋଗ କରି ପାରେ ? ଅବଶ୍ୟ ପାଠ ପଢିବାକୁ ହେବ, ଯାହା ପଢ଼ିବାକୁ ହୁଏ, ତାହା ଯଥାର୍ଥ ବୁଝିବାକୁ ହେବ, ଯାହା ବୋଧ କରିବ, ତଦନୁସାରେ ଆଚରଣ କରିବ ଏବଂ ତାହା ସବୁ ଲୋକରେ ପ୍ରଚାର କରିବ । ଯାହାହେଉ ଯଦି ତାହା ହୃଦୟଙ୍ଗମ କରିବ ନାହିଁ ବା ବୁଝି ପାରିବ ନାହିଁ, ସେହି ପାଠରେ ପ୍ରୟୋଜନ ନାହିଁ, ପୁଣି ଯାହା ବୋଧ କରିବ, ଯଦି ତଦନୁସାରେ ଆଚରଣ କରିବ ନାହିଁ, ଏବଂ ତାହା ଲୋକରେ ପ୍ରଚାର କରିବ ନାହିଁ, ତେବେ ସେହି ବୋଧର କିଛି ପ୍ରୟୋଜନ ନାହିଁ । ବୋଧ, ଆଚରଣ ଏବଂ ପ୍ରଚାର ନଥିଲେ ବିଦ୍ୟାହୁଏ ବନ୍ଧ୍ୟା ବା ନିଷ୍ଫଳା ।

ଅନେକେ ପାଠ ପଢ଼ନ୍ତି, କିନ୍ତୁ ଶୁଆ ପରି ପଢ଼ନ୍ତି, ଯାହା ପଢ଼ନ୍ତି, ତାହା ହୃଦୟଙ୍ଗମ କରି ପାରୁ ନ ଥାନ୍ତି, ତାହାର ଅର୍ଥ ବୁଝି ପାରି ନଥାନ୍ତି । ଆଜି କାଲି ପରୀକ୍ଷା ପଦ୍ଧତି ପ୍ରଚଳିତ ଥିବାରୁ ଏମାନେ ପରୀକ୍ଷାକୁ ଲକ୍ଷ କରି ପଢ଼ନ୍ତି । ପରୀକ୍ଷା ଶେଷରେ ସେହି ପାଠ ସବୁ କେବଳ ପୁସ୍ତକଗତ ବା ପୋଥିପାଠ ହୋଇଥାଏ । ପରହସ୍ତ ଧନପରି ପୁସ୍ତକଗତ ବିଦ୍ୟା ଦରକାର ବେଳେ କର୍ମରେ ଆସେ ନାହିଁ । ଯେଉଁମାନେ ଅତି ବୁଝି ସୁଝି ମର୍ମ ଭେଦକରି ଗୂଢାର୍ଥମାନ ହୃଦୟଙ୍ଗମ କରି ପଢ଼ାଶୁଣା କରନ୍ତି, ସେମାନେ ଆପଣା ବୋଧ ଅନୁସାରେ ଆଚରଣ କରନ୍ତି ନାହିଁ । ନ୍ୟାୟ,

ଦୟା, ସତ୍ୟ, ସଂଯମ ଇତ୍ୟାଦ ବିଷୟରେ ସେମାନେ କେତେ କଥା ଜାଣନ୍ତି; କେତେ କହନ୍ତି, କେତେ ଲେଖନ୍ତି, କେତେ ଦୃଷ୍ଟାନ୍ତ ଶୁଣନ୍ତି,କେତେ ଆଦର୍ଶ ଦେଖନ୍ତି, ତଥାପି ସେମାନଙ୍କର ଚୈତନ୍ୟ ଉଦୟ ହୁଏନାହିଁ, ପ୍ରବୃତ୍ତି ଜନ୍ମେ ନାହିଁ, ସେମାନେ ଅପଣା ବୋଧ ବା ଧାରଣାର ଠିକ ବିପରୀତ ଆଚରଣ କରନ୍ତି, ସାଧୁ ସନ୍ନ୍ୟାସୀ ପରି କହନ୍ତି, କିନ୍ତୁ ପରମ ନାସ୍ତିକ ପାଷଣ୍ଡ ପରି ଆଚରନ୍ତି । ଏମାନେ ଲଜ୍ଜା,ଶଙ୍କା, ଭୀତି ଏବଂ ସଂକୀର୍ଣ୍ଣ ସ୍ୱାର୍ଥରେ ବାଧା ହେତୁ ଅପଣାର ବିବେକ, ଜ୍ଞାନ ଓ ଧାରଣାନୁସାରେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରି ପାରନ୍ତି ନାହିଁ । ସ୍ତ୍ରୀ ଶିକ୍ଷା ଏକାନ୍ତ ଆବଶ୍ୟକ, ଅବରୋଧପ୍ରଥା ସ୍ତ୍ରୀ ଶିକ୍ଷାର ପ୍ରଧାନ ଅନ୍ତରାୟ, ଜନ୍ମଗତ ଜାତି ହେତୁ କେହି ମନୁଷ୍ୟ ଅସ୍ପୃଶ୍ୟ ହୋଇ ପାରେନାହିଁ । ଅନେକ ଶିକ୍ଷିତ ଲୋକଙ୍କ ମନରେ ଏହିସବୁ ଧାରଣା ଦୃଢ଼ୀଭୂତ ରହିଅଛି । ଅଥଚ ସ୍ତ୍ରୀଲୋକ ଶିକ୍ଷିତା ହେଲେ, ଅବରୋଧକୁ ଟିକିଏ ଆଡେଇ ଦେଇ ପଦାକୁ ବାହାରିଲେ ଏମାନଙ୍କର ତାହା ସହ୍ୟ ହୁଏନାହିଁ । ଛୁଆଁ ଦୋଷ ଉଠାଇ ଦେବାକୁ କେତେ ଲୋକ ସଭା ସମିତିରେ ଚିତ୍କାର କରନ୍ତି, କିନ୍ତୁ କଣ୍ଡରା, ବାଉରି ଆଦି ଲୋକମାନଙ୍କୁ ସ୍ପର୍ଶ କରିବାକୁ ସଙ୍କୁଚିତ ହୁଅନ୍ତି ପୁଣି ଅତି ଅନେକ ଶିକ୍ଷିତ ବିଦ୍ୱାନ ବା ପଣ୍ଡିତଂମନ୍ୟ ଲୋକମାନେ ଅପଣା ମନର ଭାବ ପ୍ରକାଶ ବା ପ୍ରଚାର କରନ୍ତି ନାହିଁ, ଅଥବା ତୁମ ଆମ ଆଗରେ ରହସ୍ୟ ଭାବରେ କହିଦେଲେ ସୁଦ୍ଧା ସଭା ସମିତିରେ ବା ପ୍ରକାଶ୍ୟ ଭାବରେ ପ୍ରଚାର କରନ୍ତି ନାହିଁ ।

ଆଜି ଅଧ୍ୟୟନର ପରିଣତି କେବଳ ଧନୋପାର୍ଜ୍ଜନ । ଅର୍ଥ ସଂଗ୍ରହହିଁ ଅସ୍ଥ ବୋଧ, ଆଚରଣ ଏବଂ ପ୍ରଚାର । ଏହି ଅର୍ଥ ମଧ୍ୟ ସ୍ୱବୃତ୍ତି ବା କୁତ୍ସିତ ମାର୍ଗରେ ସମ୍ପାଦନ କରିବାକୁ ହୁଏ । ଅଧ୍ୟୟନ ପ୍ରଣାଳୀ ଦୋଷରୁ ଏହି ମନ୍ଦ ଫଳ ଫଳେ । ପରୀକ୍ଷା ଦେବାପାଇଁ ଅଧ୍ୟୟନ କରିବାକୁ ହୁଏ, ଏବଂ ଉପାଧି ଲାଭହିଁ ପରୀକ୍ଷାଫଳ । ବୋଧ ବିହୀନ ହେଲେ ମଧ୍ୟ ଅନେକ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଦେଖାଯାଏ । ସୁତରାଂ ଆଧୁନିକ ରୀତିର ପରୀକ୍ଷା ଫଳ ସବୁବେଳେ ବୋଧର ଯଥେଷ୍ଟ ପରିଚୟ ଦେଇ ପାରେ ନାହିଁ । ଆଚରଣ ଓ ପ୍ରଚାର କଥା ଛାଡ । ଅଧ୍ୟୟନ ସହିତ ଏହାର କୌଣସି ସମ୍ପର୍କ ନଥାଏ । ପୁଣି ଆଚରଣ ବା ପ୍ରଚାରର କୌଣସି ପରୀକ୍ଷା ଗୃହୀତ ହୁଏନାହିଁ । ଅତଏବ ଅଧ୍ୟୟନଟା କେବଳ ନିରର୍ଥକ ହୋଇପଡେ । ଆଚରଣ ବିହୀନ ଅଧ୍ୟୟନ ଏକାନ୍ତ ନିଷ୍ପ୍ରୟୋଜନ । ଏହାମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଆଚରଣ ଓ ପ୍ରଚାର ମାର୍ଗରେ ବହୁ ବାଧାବିଘ୍ନ ବିଦ୍ୟମାନ । ତଥାପି ଜ୍ଞାନ ସମ୍ପାଦନ ପରେ ଉଦ୍ୟମ, ଅଧ୍ୟବସାୟ ଓ ସାହସ ସହକାରେ ସଂଯମ ଓ ତ୍ୟାଗ ସ୍ୱୀକାର ପୂର୍ବକ ଆଚରଣ ଓ ପ୍ରଚାର ପାଇଁ ସର୍ବଦା ବିଶେଷ ଚେଷ୍ଟା କରିବା ଉଚିତ ।

# ଜାତୀୟ ଶିକ୍ଷା ।

ମହାତ୍ମା ଗାନ୍ଧି କହିଲେ, ସରକାରୀ ସ୍କୁଲ ବର୍ଜନ କରି ଜାତୀୟ ବିଦ୍ୟାଳୟ ସ୍ଥାପନ କରିବାକୁ ହେବ । ସମଗ୍ର ଭାରତର ପ୍ରତିନିଧିସ୍ୱରୂପ କଂଗ୍ରେସ ମହାଜାତୀୟ ସଭାରେ ଏହି କଥା ଧାର୍ଯ୍ୟ ହେଲା । ଏବେ ସଞ୍ଜୀବନୀ କହନ୍ତି ଯେ ଗାନ୍ଧିଙ୍କର ଏହି ପ୍ରସ୍ତାବ ଏବଂ ଚେଷ୍ଟା ବିଫଳ ହେବ, ବିଶ୍ୱ ବିଦ୍ୟାଳୟକୁ ଧ୍ୱଂସ କରିବାକୁ ଯାଇ ପରିଣାମରେ ସେ ନିଜେ ଚୂର୍ଣ୍ଣ ହେବେ, ପୁଣି ଭାରତର ଶିକ୍ଷିତ ଲୋକମାନେ ତାହାଙ୍କ ବିରୋଧରେ ଉଠିବେ । ଭାରତର ଶିକ୍ଷିତଲୋକଙ୍କ କଥା ଥାଉ, ସମସ୍ତ ଜଗତ ଖଡ୍ଗହସ୍ତ ହେଲେ ମଧ୍ୟ ମହାତ୍ମାମାନେ ଆପଣା କର୍ତ୍ତବ୍ୟର ଢଳେ ବିଚଳିତ ହୁଅନ୍ତି ନାହିଁ, ସେମାନେ ସମୟାନୁଗାମୀ ନୁହନ୍ତି, ଐହିକ କ୍ଷୁଦ୍ର ଜୀବନ ପାଇଁ ଆତ୍ମାକୁ ନଷ୍ଟ କରନ୍ତି ନାହିଁ । ସଞ୍ଜୀବନୀ କଥାରେ ଗାନ୍ଧି ଉଡ଼ିବା ପୁଅ ନୁହନ୍ତି । ଗାନ୍ଧିଙ୍କ ପ୍ରସ୍ତାବ କଂଗ୍ରେସରେ ଧାର୍ଯ୍ୟ ହୋଇଅଛି । ତେବେ ଗାନ୍ଧି ପର୍ବତରେ ମୁଣ୍ଡ ପେସୁଛନ୍ତି କିମ୍ବା କଂଗ୍ରେସ ବିରୋଧୀହୋଇ ସଞ୍ଜୀବନୀ ସମୁଦ୍ରରେ ସନ୍ତରଣ କରିବାକୁ ବାହାରିଛନ୍ତି ? ଗାନ୍ଧିଙ୍କର ମୁଣ୍ଡ ଭାଙ୍ଗିବ କିମ୍ବା ସଞ୍ଜୀବନୀ ବୁଡ଼ି ମରିବେ ଦେଖାଯିବ ।

ସଞ୍ଜୀବନୀ କହନ୍ତି ଯେ, ଭୂଦେବ, ଈଶ୍ୱରଚନ୍ଦ୍ର ଆଦି ଯେଉଁ ବିଶ୍ୱ ବିଦ୍ୟାଳୟରେ ଶିକ୍ଷାଲାଭ କରିଛନ୍ତି ତହିଁରେ ପଢ଼ିଲେ ଆତ୍ମା ଧ୍ୱଂସ ହୁଏନାହିଁ, ଜାତୀୟ ପାପ ହୁଏ ନାହିଁ ବରଂ ସେହି ବିଶ୍ୱ ବିଦ୍ୟାଳୟ ଲାଗି ଦେଶର ଉନ୍ନତି । ତେବେ ଗାନ୍ଧି ନିଜେ କେଉଁ ବିଶ୍ୱବିଦ୍ୟାଳୟରେ ପଢ଼ିଥିଲେ ? ଭାରତ ବିଶ୍ୱବିଦ୍ୟାଳୟର ବିଶ୍ୱବିଦ୍ୟାଳୟ ଯେ ବିଲାତ ବିଶ୍ୱ ବିଦ୍ୟାଳୟ, ତହିଁରୁ ଗାନ୍ଧି ଉତ୍ତୀର୍ଣ୍ଣ ହୋଇ ନାହାନ୍ତି କି ? ସେହି ବିଶ୍ୱ ବିଦ୍ୟାଳୟର ଫଳ ତ ଏବେ ଏହି ଗାନ୍ଧି । ଯଦି ଗାନ୍ଧିଙ୍କ କଥାରେ ଭାରତର ଅନିଷ୍ଟ ହୁଏ, ତେବେ ସେଥିପାଇଁ ସେହି ବିଶ୍ୱ ବିଦ୍ୟାଳୟ ଦାୟୀ ନୁହେ କି ? ଗାନ୍ଧି ପ୍ରମୁଖ ସହସ୍ରସଂଖ୍ୟକ ସୁଶିକ୍ଷିତ ସୁବିଖ୍ୟାତ ଲୋକ ସରକାର ଶିକ୍ଷା ପ୍ରଣାଳୀର ବିରୋଧୀ ଏବଂ ଜାତୀୟ ବିଦ୍ୟାଳୟ ସ୍ଥାପନ ପ୍ରୟାସୀ । ଏମାନେ ସମସ୍ତେ ସେହି ବିଶ୍ୱ ବିଦ୍ୟାଳୟରେ ଶିକ୍ଷା ଲାଭ କରିଛନ୍ତି । ଏମାନଙ୍କ କଥା କାହିଁକି ଅସତ୍ୟ, ସଞ୍ଜୀବନୀ କଥା ବା କାହିଁକି ସତ୍ୟ ? ରାମକୃଷ୍ଣ, ଚୈତନ୍ୟ, ଦୟାନନ୍ଦ ପ୍ରଭୃତି କେଉଁ ବିଶ୍ୱ ବିଦ୍ୟାଳୟରେ ନ ପଢି କଣ ମୂର୍ଖ ବା ଅପଣ୍ଡିତ ଥିଲେ ? ସେମାନେ ଭାରତର କଲ୍ୟାଣସାଧନ କରିଯାଇ ନାହାନ୍ତି ?

ଭାରତରୁ ଯେତେବେଳେ ଜାତୀୟ ଶିକ୍ଷା ଲୁପ୍ତ ହେଲା, ଲୋକେ ଜାତୀୟ ଶିକ୍ଷାର ମହିମା, ମହତ୍ତ୍ୱ ଏବଂ ଜାତୀୟ ପୂର୍ବ ଗୌରବ ଜାଣି ପାରୁଲେ

ନାହିଁ, ସେତେବେଳେ ବ୍ରିଟିଶ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ସେହି ବିଶ୍ୱ ବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ ହୋଇ କେହି କେହି ବୁଦ୍ଧିମାନ୍ ପ୍ରତିଭାଶାଳୀ ବ୍ୟକ୍ତିମାନେ ଜାତୀୟ ଶିକ୍ଷାର ଉପକାରିତା ବୁଝି ପାରୁଛନ୍ତି ଏବଂ ସରକାରୀ ବା ପାଶ୍ଚାତ୍ୟ ଶିକ୍ଷାର ଦୋଷ ଧରି ପାରୁଛନ୍ତି । ସରକାରୀ ବିଶ୍ୱ ବିଦ୍ୟାଳୟରେ ଶିକ୍ଷା ପାଇ ନ ଥିଲେ ଜାତୀୟ ଶିକ୍ଷାର ଉପାଦେୟତା ଅଧୁର ଅନେକକାଳ-ପର୍ଯ୍ୟନ୍ତ ହୃଦୟଙ୍ଗମ ହୋଇ ପାରି ନ ଥାନ୍ତା । ଯେ କୌଣସି ବିଦ୍ୟାଳୟରେ ଯେଉଁମାନେ ସତ୍‌ଶିକ୍ଷା ପ୍ରାପ୍ତ ହୁଅନ୍ତି, ସେମାନେ ଆପଣା ବିବେକ ଓ ବୁଦ୍ଧି ଅନୁସାରେ ସେହି ବିଦ୍ୟାଳୟର ମଧ୍ୟ ଦୋଷାଦୋଷ, ଲୋପାଲୋପ ଧରି ପାରନ୍ତି, ଯେପରି କେହି କେହି ହିନ୍ଦୁ ଗୃହରେ ଲାଳିତ ପାଳିତ ହୋଇ ହିନ୍ଦୁ ଧର୍ମରେ ଶିକ୍ଷିତ ଦୀକ୍ଷିତ ହୋଇ ସେହି ହିନ୍ଦୁ ଧର୍ମର ଅସାରାଂଶ ବର୍ଜ୍ଜନକରି ବ୍ରାହ୍ମ ଧର୍ମ ସ୍ଥାପନ କରିପାରିଛନ୍ତି ।



## ଛାତ୍ର ଜୀବନ ।

ପ୍ରତ୍ୟେକ କାର୍ଯ୍ୟ ସାଧନ ପାଇଁ କୌଣସି ଏକ ଅନୁକୂଳ ଅବସ୍ଥା ଥାଏ । ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ପାଇଁ ଛାତ୍ର ଜୀବନ ଆବଶ୍ୟକ ଏବଂ ଛାତ୍ର ଜୀବନ ନିର୍ବାହ କରିବା ସକାଶେ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଲୋଡ଼ା ହୁଏ । ବ୍ରହ୍ମଚର୍ଯ୍ୟ ଓ ଛାତ୍ର ଜୀବନ ଉଭୟ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ଅଛି, ଏମନ୍ତ କି, ଏକର ଅଭାବରେ ଅନ୍ୟର ସମାଧା ହୋଇ ପାରେ ନାହିଁ । ଛାତ୍ରଜୀବନହିଁ ବ୍ରହ୍ମଚର୍ଯ୍ୟ, ବ୍ରହ୍ମଚର୍ଯ୍ୟହିଁ ଛାତ୍ରଜୀବନ । ଅବିଦ୍ୟା ଦୂର କରିବା ଏବଂ ବିଦ୍ୟା ଶିକ୍ଷା ଲାଭ କରିବା ଅଟେ ଛାତ୍ର ଜୀବନର ମୂଳ ଉଦ୍ଦେଶ୍ୟ । ଏହି ଶିକ୍ଷା ଲାଭ କରିବା ପାଇଁ ବ୍ରହ୍ମଚର୍ଯ୍ୟ ଆବଶ୍ୟକ । ବିନା ବ୍ରହ୍ମଚର୍ଯ୍ୟରେ ପ୍ରକୃତ ବିଦ୍ୟା ଶିକ୍ଷା ଲାଭ ହୋଇ ପାରେନାହିଁ । ବ୍ରହ୍ମଚର୍ଯ୍ୟ ବ୍ରତରେ ନିମ୍ନ ବିବୃତ ନିୟମମାନ ପାଳନ କରିବାକୁ ହୁଏ । ବିବାହିତ ଜୀବନ ପ୍ରଥମାବସ୍ଥାରେ ବିଦ୍ୟା ଶିକ୍ଷାର ଘୋର ଅନ୍ତରାୟ ହୁଏ । ସୁତରାଂ ବ୍ରହ୍ମଚର୍ଯ୍ୟର ପ୍ରଥମ ନିୟମ ଅଟେ ଅବିବାହିତ ରହିବା । କୌଣସି ଛାତ୍ରପକ୍ଷରେ ବିବାହ କରିବା କଦାପି ଉଚିତ ନୁହେ । ଛାତ୍ରାବସ୍ଥାରେ ବିବାହହେଲେ ଛାତ୍ରତ୍ୱ ନଷ୍ଟ ହୁଏ ଅର୍ଥାତ୍ ବିଦ୍ୟା ଶିକ୍ଷା ହୋଇପାରେ ନାହିଁ ପୁଣି ବିବାହର ମର୍ଯ୍ୟାଦା ରହେ ନାହିଁ, ଏବଂ ତାହା ସୁଫଳପ୍ରଦ ହୁଏନାହିଁ । ଯେଉଁମାନେ ଛାତ୍ରାବସ୍ଥାରେ ବିବାହ କରନ୍ତି ନାହିଁ ସେମାନେ ପରେ ବିବାହର ମର୍ମ୍ମ ଓ ଧର୍ମ୍ମ ବୁଝିପାରନ୍ତି, ପୁଣି ଯଥାର୍ଥ

ଦାମ୍ପତ୍ୟ ଭୋଗ କରି ପାରନ୍ତି । ଜ୍ଞାନୀ ଲୋକମାନେ, ଦେଶ ସେବକମାନେ, ଆଦର୍ଶ ମହାପୁରୁଷମାନେ ବିବାହକୁ ଏକ ପବିତ୍ର ଐଶ୍ୱର୍ଯ୍ୟ ମନେ କରନ୍ତି, ବିବାହ ସମ୍ବନ୍ଧରେ ପାଶବିକ ବା ଜାନ୍ତବ ଭାବ ରଖନ୍ତି ନାହିଁ, ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବା ପାଇଁ ସ୍ତ୍ରୀ ସେବା କରନ୍ତି ନାହିଁ । ସ୍ତ୍ରୀ ଅଟେ ସହଗୃହିଣୀ, ସହଯୋଗିନୀ, ଏବଂ ସହଧର୍ମିଣୀ । ଜୀବନ ଯାତ୍ରା ନିର୍ବାହରେ ସହଯୋଗିତା ଓ ସହଧର୍ମାଚରଣ ପୂର୍ବକ ପରସ୍ପର ସହାୟ ହେବେ ବୋଲି ସ୍ତ୍ରୀ ଓ ପୁରୁଷ ମଧ୍ୟରେ ବିବାହ ପଦ୍ଧତି ପ୍ରତିଷ୍ଠିତ ଅଛି । କିନ୍ତୁ ଛାତ୍ର ଜୀବନରେ ଏହି ସହଯୋଗିତା ବା ସହଧର୍ମାଚରଣର ଆବଶ୍ୟକତା ନାହିଁ । ଛାତ୍ରଜୀବନ ଅଟେ ସାଧନା, ଏହି ସାଧନା ଦ୍ୱାରା ଗାର୍ହସ୍ଥ୍ୟ, ସନ୍ୟାସ ଇତ୍ୟାଦି ଆଶ୍ରମମାନ ସିଦ୍ଧ ହୁଏ ଅର୍ଥାତ୍ ଦାମ୍ପତ୍ୟ ଭୋଗ କରିବାକୁ ହୁଏ ଏବଂ ଧର୍ମାଚରଣ ପୂର୍ବକ ଲୋକହିତ ସାଧନ କରିବାକୁ ହୁଏ । ତେବେ ଛାତ୍ରଅବସ୍ଥାରେ ଦାମ୍ପତ୍ୟ କିପରି ସଙ୍ଗତ ବା ସମ୍ଭବ ହୋଇପାରେ ?

ବର୍ତ୍ତମାନ ସମାଜରେ ବିବାହର ଦୁଇଟି ଅବସ୍ଥା ଦେଖାଯାଏ, ସ୍ତ୍ରୀ ପୁରୁଷ ସହବାସ ଏବଂ ପିତା ମାତା କର୍ତ୍ତୃକ ବାଳକ ବାଳିକା ମଧ୍ୟରେ ବିବାହ ନିର୍ବନ୍ଧ—ଏହି ପରି ଦୁଇପ୍ରକାର ବିବାହ ପ୍ରଚଳିତ ଅଛି । ପ୍ରଥମୋକ୍ତ ବିବାହ ଅବଶ୍ୟ ବ୍ରହ୍ମ-ଚର୍ଯ୍ୟର ବିରୋଧୀ । ପୁଣି ବାଲ୍ୟ ବିବାହ ( ବିବାହ ନିର୍ବନ୍ଧ-ପିତା ମାତାଙ୍କର ଭାଗ୍ୟ ଦୌଲତର କ୍ରୀଡା କୌତୁକ ) ଛାତ୍ରଜୀବନର କମ କ୍ଷତିଜନକ ନୁହେ । ଯେ କୌଣସି ପ୍ରକାର ହେଉ ଏହି ବିବାହ ସଂସ୍କାର ଛାତ୍ର ଜୀବନର ଏକାଗ୍ରତାର ଅନ୍ତରାୟ ହୁଏ । ଏକାଗ୍ରତା ନଥିଲେ ସାଧନାରେ ସିଦ୍ଧି ଲାଭ ହୁଏ ନାହିଁ । ଅତଏବ ଛାତ୍ରମାନଙ୍କର ଅବିବାହିତ ରହିବା ଉଚିତ । ଏସମ୍ବନ୍ଧରେ ଅଜ୍ଞ ପିତାମାନଙ୍କର ଅନୁରୋଧ ଭାଙ୍ଗି-ଦେବା ମଧ୍ୟ ଛାତ୍ର ସନ୍ତାନ ପକ୍ଷରେ ନୀତି ବିରୁଦ୍ଧ ହୋଇ ପାରେ ନାହିଁ । ଯଦି କୌଣସି ଛାତ୍ରମାନେ ଅଜ୍ଞାନ ଅବସ୍ଥାରେ ପିତାମାତାଙ୍କ ହାତରେ କୁଣ୍ଢେଇ ଖେଳ ବା ପୁତ୍ତୁଳି ଖେଳ ପରି ବିବାହ ହୋଇ ପଡିଥାନ୍ତି ତେବେ ସେମାନେ ବିବାହିତ ହେଲେ ମଧ୍ୟ ଅବିବାହିତ ରହିବେ । ଅର୍ଥାତ୍ ସ୍ତ୍ରୀ ପୁରୁଷ ସଂସର୍ଗର ପାଶବିକ ଭାବ ମନରୁ ଏକାବେଳକେ ଦୂର କରିଥିବେ ।

ଛାତ୍ରମାନଙ୍କୁ ଏହିକଥା ସର୍ବଦା ମନେ ରଖିବାକୁ ହେବ ଯେ ଭାରତ ଦେଶର ମହର୍ଷିମାନେ ବ୍ରହ୍ମଚର୍ଯ୍ୟ ବଳରେ ଜଗଦ୍‌ଗୁରୁ ଥିଲେ ପୁଣି ମହାତ୍ମାମାନେ ଏହି ବ୍ରହ୍ମଚର୍ଯ୍ୟ ପ୍ରଭାବରେ ମରଣକୁ ଜିଣି ପାରିଅଛନ୍ତି, ଅମରତ୍ୱ ପ୍ରାପ୍ତ ହୋଇଛନ୍ତି । ଅତଏବ ଛାତ୍ର ଜୀବନର ସର୍ବ ପ୍ରଥମ ଏବଂ ଅପରିହାର୍ଯ୍ୟ ନିୟମ ଅଟେ ବ୍ରହ୍ମଚର୍ଯ୍ୟ ।

ଛାତ୍ରମାନଙ୍କ ହାତରେ ଅଛି ଦେଶର ଭବିଷ୍ୟତ୍ । ଛାତ୍ରମାନେହିଁ ଦେଶର ଆଶା ଭରସାର ସ୍ଥାନ । ଯେଉଁମାନେ ପ୍ରକୃତ ଛାତ୍ର ହୁଅନ୍ତି, ସେମାନେ କେବଳ ଦେଶର ତଥା ଲୋକର ଉପକାର କରନ୍ତି ଏବଂ ଉନ୍ନତି କରନ୍ତି । ଦୁର୍ଲ୍ଲଭ ମନୁଷ୍ୟତା ଲାଭ କରିବା ପାଇଁ ସର୍ବ ପ୍ରଥମେ ଛାତ୍ର ହେବାର ଦରକାର । ଛାତ୍ରମାନେ ହୁଅନ୍ତି ଦେଶର ଶିକ୍ଷକ, ସଂସ୍କାରକ, ସାଧକ, ସେବକ, ନିୟାମକ ଏବଂ ଅଭିଭାବକ । ଛାତ୍ର ଜୀବନ ଅଟେ ପବିତ୍ର ଏବଂ ଦାୟିତ୍ୱପୂର୍ଣ୍ଣ ଜୀବନ । ଛାତ୍ର ଜୀବନରେହିଁ ମନୁଷ୍ୟତା ବା ଦାୟିତ୍ୱଜ୍ଞାନ ପରିବର୍ଦ୍ଧିତ ହୁଏ । ଛାତ୍ର ଜୀବନ ସେଥିରେ ମନୁଷ୍ୟତା ଅଙ୍କୁରିତ ହୁଏ । ଏହି ଜୀବନର ଅବସ୍ଥାହିଁ ମନୁଷ୍ୟତା ବର୍ଦ୍ଧନର ଅନୁକୂଳ ଜଳବାୟୁ । ଛାତ୍ର ଜୀବନ ଅଟେ ଦିବ୍ୟସୁଖ ଏବଂ ଶାନ୍ତିମୟ ଜୀବନ । ଏଥିରେ ମନୁଷ୍ୟତା ଗଢ଼ା ହୁଏ ବୋଲି ଈଶ୍ୱର ଏହାକୁ ସୁଖ ଓ ଶାନ୍ତିର ଆସ୍ପଦ କରି ଅଛନ୍ତି । ଏହି ଜୀବନରେ କୁଟୁମ୍ବ ଜଞ୍ଜାଳ ନାହିଁ, ଅଯଥା ସ୍ୱାର୍ଥପରତା ନାହିଁ, ଲୋଭ ଲାଳସା ନାହିଁ, ଅଳସ୍ୟତା ନାହିଁ, ବିଳାସିତା ନାହିଁ, କୁଟିଳତା ନାହିଁ, ଅଛି କେବଳ ଉତ୍ସାହ, ଉଦ୍ୟମ, ଶୃଙ୍ଖଳା, ଉନ୍ନତି ସକାଶେ ବ୍ୟାକୁଳତା, ନିର୍ଭୀକତା, ନିଷ୍ପକ୍ଷପାତିତା, ନିରପେକ୍ଷତା, ସରଳତା, ମନସ୍ୱୀତା ଏବଂ ତେଜସ୍ୱୀତା । ଏଥିରେ ଅଧ୍ୟବସାୟ ପ୍ରତି ବିମୁଖତା ନାହିଁ, ଏବଂ ଅକୃତକାର୍ଯ୍ୟତାର ବିଷାଦ ନାହିଁ ।

ଶିକ୍ଷାହିଁ ଛାତ୍ର ଜୀବନର ପ୍ରଧାନ କର୍ତ୍ତବ୍ୟ । ଜ୍ଞାନ ସମ୍ପାଦନ ଅଟେ ଛାତ୍ର ଜୀବନର ପ୍ରଧାନ ଲକ୍ଷ । ଜ୍ଞାନ-ସମ୍ପାଦନ ଯେ କେବଳ ସ୍କୁଲରେ, କଲେଜରେ ବା ଚଉପାଠୀରେ ହୁଏ ଏମନ୍ତ ନୁହେ । ଏହି ବିଶାଳ ବ୍ରହ୍ମାଣ୍ଡ ଅଟେ ଛାତ୍ରର ବିଶ୍ୱ-ବିଦ୍ୟାଳୟ । ଛାତ୍ରମାନେ ସର୍ବତ୍ର ଶିକ୍ଷା ଲାଭ କରି ପାରନ୍ତି । କାଠଯୋଡ଼ି ତୀରେ, ଚିଲିକା ତୀରେ, ବୁଢ଼ାବଳଙ୍ଗ ଧାରେ, ପଲ୍ଲୀରେ, ନଗରରେ, ଗୋଶାଳାରେ, ବିଜ୍ଞାନ ମନ୍ଦିରରେ, କୃଷକ ମେଳରେ, ପଣ୍ଡିତ ପୁଞ୍ଜରେ, ହାଟରେ, ବାଟରେ ସର୍ବତ୍ର ଶିକ୍ଷା ଲାଭ କରି ପାରିବେ । ସ୍ୱାର୍ଥଚିନ୍ତା, ବିଷୟାସକ୍ତି ଏବଂ ଆମିଷାଭିଳାଷ ପରିତ୍ୟାଗ କଲେ ସମସ୍ତ ପ୍ରକାର ଦେଖାଶୁଣା ଅଟେ ଅସୀମ ଶିକ୍ଷାପ୍ରଦ । ପୋତାଧନ ବା ମୂଲ୍ୟବାନ ଅଳଙ୍କାର ରୂପେ ସଞ୍ଚିତ ଧନ ଯେପରି ପ୍ରକୃତ ଧନ ନୁହେ, ପୁସ୍ତକଗତ ବିଦ୍ୟା ସେହିପରି ବିଦ୍ୟା ନୁହେ । ଯେଉଁ ବିଦ୍ୟା ନିଜ ଚିନ୍ତା ଦ୍ୱାରା ଆତ୍ମସାତ୍ କରାଯାଇ ନାହିଁ ତାହା ବିଦ୍ୟା ନୁହେ । ପରୀକ୍ଷାରେ ପାସ କରିବା ବିଦ୍ୟାର ଉଦ୍ଦେଶ୍ୟ ନୁହେ । କିମ୍ବା ଉପାଧି ବିଶେଷ ବିଦ୍ୟାର ପରିଣାମ ନୁହେ । ଜ୍ଞାନ ଉପାର୍ଜ୍ଜନ କରିବାହିଁ ଶିକ୍ଷାର ମୂଳ ଉଦ୍ଦେଶ୍ୟ ଜ୍ଞାନ ପ୍ରତି ଏକାନ୍ତ ଲକ୍ଷ୍ୟ ରଖି ବିଦ୍ୟା ଶିକ୍ଷା କଲେ ପରୀକ୍ଷାରେ ଉତ୍ତୀର୍ଣ୍ଣତା ଲାଭ କରିବାକୁ ହୁଏ, ଉପାଧି ଲବ୍ଧ ହୁଏ ଏବଂ ଧନୋପାର୍ଜ୍ଜନ କ୍ଷମତା

କରେ; କିନ୍ତୁ ପରୀକ୍ଷା, ଉପାଧି ବା ଧନ ପ୍ରତି ଲକ୍ଷ ରହିଲେ ପ୍ରକୃତ ବିଦ୍ୟାଶିକ୍ଷା ବା ଜ୍ଞାନ ଲାଭ ହୁଏନାହିଁ ଅତଏବ ନିଷ୍କାମ ଶିକ୍ଷାହିଁ ପ୍ରକୃତ ଶିକ୍ଷା ।

ଶିକ୍ଷାର ଫଳ ଅଟେ ଜ୍ଞାନ, ଜ୍ଞାନ ଅଟେ ଅସୀମ; ସାମାନ୍ୟ ସସୀମ ବିଷୟ ଦ୍ୱାରା ଜ୍ଞାନର ପରିଣାମ ଆବଦ୍ଧ ନୁହେ, ଜ୍ଞାନ ଅଟେ ଅବିନଶ୍ୱର ଐଶ୍ୱର୍ଯ୍ୟ, କିନ୍ତୁ ବିଷୟ ହୁଏ ନଶ୍ୱର ପାର୍ଥିବ ମାତ୍ର । ଯେଉଁ ଶିକ୍ଷାର ଉଦ୍ଦେଶ୍ୟ ବା ପରିଣାମ ହୁଏ ପରୀକ୍ଷାରେ ପାସ, ବି,ଏ; ଏମ୍, ଏ; ବା କାବ୍ୟକଣ୍ଠ, ସାଙ୍ଖ୍ୟତୀର୍ଥ ଇତ୍ୟାଦି ଉପାଧି କିବା ଧନୋପାର୍ଜ୍ଜନ, ତାହା ଶିକ୍ଷା ନୁହେ, ଉକ୍ତ ଶିକ୍ଷା ଅଟେ କେବଳ କୁଶିକ୍ଷା । ଏହି କୁଶିକ୍ଷାର ମନ୍ଦଫଳ ଆଜି ସମାଜରେ ଅନୁଭୂତ ହୁଏ । ଅନେକ ଲୋକ ପାସ ପ୍ରଲୋଭନରେ ପଡି ପ୍ରକୃତ ଜ୍ଞାନଲାଭରୁ ଆଜୀବନ ବଞ୍ଚିତ ରହନ୍ତି । ଉପାଧି ଆବରଣରେ ଅନଭିଜ୍ଞତା ବା ମୂର୍ଖତା ଲୁକ୍କାୟିତ ରହେ । ପୁଣି ଅନେକ ଧନୀ ପରିବାରର ସନ୍ତାନମାନେ ବିଦ୍ୟାପ୍ରତି ଆଦର କରନ୍ତି ନାହିଁ । ଲକ୍ଷଭ୍ରଷ୍ଟ ହେବାରୁ ଶିକ୍ଷାର ପରିଣାମ କିପରି ଶୋଚନୀୟ ହୋଇ ଉଠୁଅଛି, ଲୋକରେ ମିଥ୍ୟାଗୁରୁ କିପରି ପ୍ରଶ୍ରୟ ପାଉଅଛି ଏବଂ ସମାଜ କିପରି ଦିନକୁଦିନ ହୀନବଳ, କ୍ଷୀଣପ୍ରଭ, ଅବିଦ୍ୟ ଏବଂ ଅପାରଗ ହୋଇ ପଡୁଅଛି ତାହା ସହଜରେ ଅନୁମେୟ । ଏହି ନୀଚ ଲକ୍ଷଦ୍ୱାରା ଉଚ୍ଚଶିକ୍ଷା କଳଙ୍କିତ ହୁଏ ।

ଛାତ୍ର ଜୀବନ ଅଟେ କି ମହତ୍, କି ଉଦାର, କି ପ୍ରଶାନ୍ତ, କି ପବିତ୍ର ଜୀବନ; ଏହାହିଁ ମର୍ତ୍ତ୍ୟ ମଣ୍ଡଳରେ ସ୍ୱର୍ଗରାଜ୍ୟ, ଈଶ୍ୱରଙ୍କର ବିଶେଷ ଆଦର ଓ ଆଶୀର୍ବାଦର ପାତ୍ର ଅଟନ୍ତି ଛାତ୍ରମାନେ । ସବୁବେଳେ ସବୁ ଦେଶର ଅଶ୍ରମ ବାସିମାନଙ୍କର ସ୍ନେହର ପାତ୍ର ଅଟନ୍ତି ଛାତ୍ରମାନେ । ଛାତ୍ରମାନେ ଛାତ୍ରତ୍ୱର ମହତ୍ତ୍ୱ ବୁଝି ନପାରନ୍ତି ଯେପରି ପ୍ରାଣିମାନେ ବାୟୁମଣ୍ଡଳର ଗୁଣ ନିଜ ଶରୀରରେ ଉପଭୋଗ କରି ପାରନ୍ତି ନାହିଁ । କିନ୍ତୁ ଜଗତର ମହାତ୍ମାମାନେ ଆଜୀବନ ଛାତ୍ର ରହନ୍ତି, ଛାତ୍ର ହେବାକୁ ଚାହାନ୍ତି । ପୌରାଣିକ ମାନଙ୍କର ପୃଥକ ସ୍ୱର୍ଗରାଜ୍ୟରେ ମଧ୍ୟ ଛାତ୍ର ଜୀବନ ଅଟେ ଅତ୍ୟନ୍ତ ଗୌରବାବହ । ଛାତ୍ର ଜୀବନହିଁ ସମାଜର ମେରୁଦଣ୍ଡ, ଛାତ୍ର ଜୀବନହିଁ ସମାଜର ଜ୍ଞାନ ଗଙ୍ଗା । ଯେଉଁ ଜାତିର ବା ସମାଜର ଛାତ୍ରବଳ ନାହିଁ ସେହି ଜାତି ବା ସମାଜ ନିତାନ୍ତ ଦୁର୍ବଳ । କେବଳ ବଳ ବସ୍ତୁ ନୁହେଁ ଛାତ୍ର ଜୀବନ ଅଟେ ସମାଜର ଶୋଭା, ସମାଜର ଆଭା, ସମାଜର ଜୀବନ ଏବଂ ସମାଜର ଅନ୍ତରସ୍ଥା । ଯେଉଁ ସମାଜ ଛାତ୍ର ଗୌରବ ଗ୍ରହଣ କରେନାହିଁ; ଛାତ୍ର ପ୍ରତି ଆଦର କରେନାହିଁ, ସେହି ସମାଜ ସମାଜ ନୁହେ, ଅଟେ କେବଳ ନର ପିଶାଚ ସମୂହ ବା ପଶୁ ଦଳ ।

ଯେଉଁମାନେ ଛାତ୍ରମାନଙ୍କ ସଙ୍ଗରେ ଆପଣାର ଜୀବନ ଯାପନ କରନ୍ତି, ଛାତ୍ର ମାନଙ୍କ ଜୀବନରେ ଆପଣାର କର୍ତ୍ତବ୍ୟ ନିର୍ଦ୍ଦେଶ କରନ୍ତି, ସେମାନଙ୍କ ସହିତ ସମ୍

ପ୍ରାଣତା ଉପଲବ୍ଧି କରନ୍ତି, ସେମାନଙ୍କର ପ୍ରେମଲାଭ କରନ୍ତି ଏବଂ ସେମାନଙ୍କର ଭକ୍ତି ଭକ୍ତି ଆକର୍ଷଣ କରି ପାରନ୍ତି, ସେମାନେ ଧନ୍ୟ । ସେମାନେହିଁ ଯଶସ୍ୱୀ, ତେଜସ୍ୱୀ ମନୀଷୀ ।

ବାଲ୍ୟ ବିବାହ ହିଁ ଏ ଛାତ୍ର ଜୀବନର ପରମ ଶତ୍ରୁ । ଶତ୍ରୁକୁ ଦମନ କରିବା ଏକା ଛାତ୍ରର ଛାତ୍ର ପଣିଆ, ଛାତ୍ରର କରାମତ, ଛାତ୍ରର ବୀରତ୍ୱ । ଆମ ହିନ୍ଦୁ ସମାଜରେ ସନାତନ ଧର୍ମ ନାମରେ, ଜ୍ୟୋତିଷ ନାମରେ, ପବିତ୍ର ପରମ୍ପରା ନାମରେ, ଆଜି ଏହି ବାଲ୍ୟ ବିବାହ ଅତ୍ୟାଚାର କରା ଯାଉଅଛି । ଅନେକ ଶିକ୍ଷିତ ବୋଲାଇବା ଲୋକେ ଅନ୍ଧ ବିଶ୍ୱାସର ବଶୀଭୂତ ହୋଇ ବାଲ୍ୟ ବିବାହ ପ୍ରବର୍ତ୍ତିତ ଅଛନ୍ତି, ଯଦିବା ପ୍ରବର୍ତ୍ତିତ ନାହାନ୍ତି, ତାହାପ୍ରତି ଉଦାସୀନ ରହନ୍ତି । ଅଶିକ୍ଷିତ ପିତା ମାତାଙ୍କ କଥା ଛାଡ଼ି ସେମାନେ ଭାବନ୍ତି ଯେ ସନ୍ତାନ ମାନଙ୍କୁ ବିବାହ କରିଦେବା ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ । ପୁଅ ପଛେ ପାଠ ନପଢୁ, ବଞ୍ଚିଥାଉ, ବିଭାହୋଇ କୁଟୁମ୍ବ ବଢ଼ାଉ, ଏହାହିଁ ପିତା ମାତାଙ୍କର ପୁତ୍ର ପ୍ରତି ଆଶୀର୍ବାଦ । ରାଜାଙ୍କ କଥା କଣ କହିବା, ଗଭର୍ଣ୍ଣମେଣ୍ଟ ଯଦି ଆମ୍ଭମାନଙ୍କର ମଙ୍ଗଳ କାମନା କରନ୍ତେ ତେବେ ବାଲ୍ୟ ବିବାହ ବିରୋଧରେ ଆଇନ ପାସ କରି ଦିଅନ୍ତେ, କାହାର କଥା ନମାନି ଆପଣାର ଇଂରାଜ ବୀରତ୍ୱ ରକ୍ଷା କରିବା ପାଇଁ ହେଲେ କରନ୍ତେ । ଆହା ! ଭାରତର କି ଦୁର୍ଭାଗ୍ୟ, ଗଭର୍ଣ୍ଣମେଣ୍ଟ ମନକୁ ଏହିକଥା ଲାଗୁନାହିଁ । ଛାତ୍ରମାନେ ଦେଶର ଭବିଷ୍ୟତ । ବର୍ତ୍ତମାନ ଛାତ୍ର ଗୁଡିକ ଯେପରି ହେବେ ଆମ୍ଭମାନଙ୍କର ଆଉ ଏକ ପୁରୁଷ ଠିକ ସେହିପରି ହେବ । ଅର୍ଥାତ୍ ଛାତ୍ରମାନେ ଯଦି ଏହି ବାଲ୍ୟ ବିବାହ କାଣ୍ଡରେ ନିଜେ ଯୋଗଦେବେ, ତାହାକୁ ପ୍ରଶ୍ରୟ ଦେବେ, ତେବେ ସେହି ବିବାହର ମନ୍ଦଫଳ ସେମାନେ ନିଜେ ଏହି ଦେହରେ ଭୋଗ କରିବେ । ଅତଏବ ଛାତ୍ରମାନଙ୍କୁ ଏହି ଅସ୍ୱାଭାବିକ ପୈଶାଚିକ ବିବାହ ବିରୋଧରେ ଯଥାଶକ୍ତି ସମ୍ଭବ ତୁମୂଳ ଆନ୍ଦୋଳନ କରିବାକୁ ହେବ । ସେମାନେ ଏହି ବିବାହ ବିରୋଧରେ ସର୍ବଦା ପ୍ରଚାର କରିବେ ଏବଂ କୌଣସି ବାଲ୍ୟ ବିବାହରେ ଯୋଗ ଦେବେ ନାହିଁ ।

ହିନ୍ଦୁ ସମାଜରେ ବର୍ତ୍ତମାନ ଯେଉଁ ସମସ୍ୟା ଉପସ୍ଥିତ ହୋଇଅଛି ତହିଁରେ ଏହି ଜାତି ବହୁଳ ସମାଜରେ ଆଉ ଏକ ଜାତି ଭେଦର ସୃଷ୍ଟି ହେବା ଉଚିତ, ଯଥା, ବାଲ୍ୟ ବିବାହ ଓ ଯୁବତୀ ବିବାହ । ଯେତେବେଳେ ଯୁବତୀ ବିବାହ ଦଳ ପ୍ରବଳ ହେବ ତେବେ ଗଭର୍ଣ୍ଣମେଣ୍ଟ ସୁଦ୍ଧା ଯୁବତୀ ବିବାହ ଆଇନ କରିବାକୁ ବାଧ୍ୟ ହେବେ । ଅତଏବ ଛାତ୍ର ମାନଙ୍କର ଆପଣା ମଧ୍ୟରେ ଯୁବତୀ ବିବାହ ଦଳ ସ୍ଥାପନ କରିବା ଉଚିତ ।

ଭାରତ ଦେଶ ଏକ ସମୟରେ ଜଗତର ଆଦର୍ଶ ଥିଲା । ଆଧ୍ୟାତ୍ମ ଜ୍ଞାନ ଗୌରବରେ ଭାରତବାସିମାନେ ଜଗତର ଗୁରୁ ଥିଲେ । ଯେଉଁଦିନ ଠାରୁ ହିନ୍ଦୁ ସମାଜରେ ଏହି ବେଦ ବିରୁଦ୍ଧ ବାଲ୍ୟ ବିବାହ ପ୍ରଚଳିତ ହେଲା ସେହି ଦିନଠାରୁ ଆର୍ଯ୍ୟ ଜାତିର ଅବନତି ଆରମ୍ଭ ହେଲା । ବୀର ପ୍ରସବିନୀ ବିଖ୍ୟାତ ଭାରତ ମାତାର ସନ୍ତାନମାନେ ଆଜି ହୀନବଳ, ହତବୀର୍ଯ୍ୟ, ଅବିଦ୍ୟ, ଅସଭ୍ୟ ବୋଲି ଲାଞ୍ଛିତ ହେଉ ଅଛନ୍ତି । ଆର୍ଯ୍ୟମାତାର ଏହି ଲାଞ୍ଛନା ଦୂର କରିବ କିଏ ? କେବଳ ଭାରତର ଛାତ୍ର ଗଣ ।

ବର୍ତ୍ତମାନ ଭାରତର ଅନଭିଜ୍ଞତା, ସମାଜର ଅନ୍ଧ ବିଶ୍ୱାସ ଏବଂ ଗଭର୍ଣ୍ଣ-ମେଣ୍ଟଙ୍କର ଉଦାସୀନତା ଦେଖିଲେ ଏହି ଆର୍ଯ୍ୟଭୂମିରୁ ଏହି ପୈଶାଚିକ ବାଲ୍ୟ ବିବାହ-ପ୍ରଥା ବିଦୂରୀତ ହେବା ସମ୍ଭାବନା ଦିଶୁନାହିଁ । ବାଲ୍ୟ ବିବାହରୁ ଶିଶୁ ବିବାହ, ଶିଶୁ ବିବାହରୁ ଗର୍ଭସ୍ଥ ବାଳକ ବାଳିକା ମାନଙ୍କପାଇଁ ବିବାହ ଯୋଗାଡ ହେବା କଥା ଶୁଭିଲାଣି । ଏତେବେଳେ କେବଳ ଛାତ୍ରମାନେ ଏକମାତ୍ର ଆଶା ଭରସାର ସ୍ଥଳ । ଛାତ୍ର ବଳ ସାମାନ୍ୟ ବଳ ନୁହେ । ଛାତ୍ରମାନେ ବ୍ରହ୍ମଚର୍ଯ୍ୟ ବଳରେ ବଳୀୟାନ୍ । ଛାତ୍ରମାନେ ଦିନକୁଦିନ ଉତ୍ତେଜିତ ହୋଇ ଉଠିବେ, ଦଳବଦ୍ଧ ହୋଇ ଏକମନ ଏକପ୍ରାଣରେ କାର୍ଯ୍ୟ କରିବେ, ତେବେ ଏହି ଅସ୍ୱାଭାବିକ ପୈଶାଚିକ ବାଲ୍ୟ ବିବାହ ପ୍ରଥା ସମାଜରୁ ଅଚିରେ ଦୂରୀଭୂତ ହେବ ।

— — ୦ — —

## ସାମ୍ପ୍ରଦାୟିକ ଶିକ୍ଷା ।

"ପୋଥି ବାଇଗଣ, ବାଡି ବାଇଗଣ" ଯେପରି ଦୁଇ ପ୍ରକାର, ପ୍ରକୃତ ବ୍ରାହ୍ମଣ, ଓ ନାମ ବ୍ରାହ୍ମଣ ତଦ୍ରୂପ ଦୁଇପ୍ରକାର । ପୋଥି ବ୍ରାହ୍ମଣମାନଙ୍କର ଗୁଣ, କର୍ମ ଓ ଲକ୍ଷଣ ଦେଖିଲେ ସେହି ବ୍ରାହ୍ମଣ ଜାତି ଜଗତରେ ଥିଲେ କି ନାହିଁ ସନ୍ଦେହ ଜାତହୁଏ । ଆଜିକାଲିର ବ୍ରାହ୍ମଣ ମାନଙ୍କୁ ଦେଖିଲେ ଶାସ୍ତ୍ରବର୍ଣ୍ଣିତ ବ୍ରାହ୍ମଣ କେବଳ ଆଦର୍ଶ ସକାଶେ କବି କପୋଳକଳ୍ପିତ କିମ୍ବା ଅପ୍ରାପ୍ୟ ଲକ୍ଷ ମାତ୍ର ବୋଲି ଭାବିବାକୁ ହୁଏ । ସେ ଯାହାହେଉ କୌଣସିକାଳେ ଏହି ବ୍ରାହ୍ମଣମାନେ ଲୋକର, ସମାଜର ବା ଜାତିର ଉତ୍କର୍ଷ ସାଧନ କରିଥିଲେହେଁ ବର୍ତ୍ତମାନ ଅଶିକ୍ଷିତ ବ୍ରାହ୍ମଣମାନେ ମାନବ ଜାତିର ଉନ୍ନତି ପଥରେ କଣ୍ଟକ ସ୍ୱରୂପ । ଅଶି-କ୍ଷିତ ରହିଲେ ଯେ କୌଣସି ଜାତିର ଲୋକ ହେଉ ଉନ୍ନତି ପଥର କଣ୍ଟକ ହୁଏ, ତେବେ କେବଳ ବ୍ରାହ୍ମଣ କାହିଁକି କଣ୍ଟକ ବୋଲି କଳଙ୍କିତ ହେବେ ?

ଏହି ପ୍ରଶ୍ନ କରାଯାଇପାରେ । ଏହାର ଉତ୍ତରରେ କୁହିବାକୁ ହେବ ଯେ ଏକ ସମୟରେ ଏମାନେ ବିଦ୍ୟା, ବଳ, ଜ୍ଞାନ କିଂବା କୌଶଳ ଦେଇ ଜାତିରେ ବଡ଼ିଆ ହୋଇ ସମାଜର ବ୍ୟବସ୍ଥାପକ ଏବଂ ନିୟାମକ ଥିଲେ । ଅଦ୍ୟାପି ଏମାନଙ୍କ ପ୍ରତି ଲୋକସାଧାରଣଙ୍କର ଭୟ, ଭକ୍ତି ଓ ବିଶ୍ୱାସର ଅବଶେଷ ଦେଖା-ଯାଏ । ସୁତରାଂ ଏମାନେ କୁଶିକ୍ଷା ଦେଇ ପୁଣି ମନ୍ଦ ଆଦର୍ଶ ଦେଖାଇ ଲୋକ-ସାଧାରଣଙ୍କର ଗୁରୁତର ଅନିଷ୍ଟ ସାଧନ କରିବାକୁ ଅନ୍ୟାନ୍ୟ ଜାତି ଅପେକ୍ଷା ବହୁତ ପରିମାଣରେ ଅବକାଶ ଓ ସାମର୍ଥ୍ୟ ପାଇଅଛନ୍ତି ।

ବ୍ରାହ୍ମଣମାନେ କି ଶିକ୍ଷା ଦେଉଅଛନ୍ତି, କି ଆଦର୍ଶ ଦେଖାଉଅଛନ୍ତି ? ଏମାନେ କହନ୍ତି ଯେ ପାଠ ପଢ଼ା ପଛେ ନହେଉ ସାମନ୍ତ ଶ୍ରେଣୀର ବ୍ରାହ୍ମଣେ ହିନ୍ଦୁଆ ବ୍ରାହ୍ମଣ ଘରେ ଖାଇ ଅଭିଜାତି ଏବଂ ବ୍ରହ୍ମତ୍ୱ ଧର୍ମକୁ ନଷ୍ଟ କର-ଦେବା ଉଚିତ ନୁହେ । ବାଳକ ବାଳିକାମାନଙ୍କୁ ବିବାହ କରଦେବା ପିତା ମାତାଙ୍କର ପ୍ରଧାନ କର୍ତ୍ତବ୍ୟ, ପୁଣି ଶୁଦ୍ଧ ଶ୍ରାଦ୍ଧ ଚଳାଇ ଦାନଘର ଯାଇ, ଦହି ଚୂଡ଼ା ସାମଗ୍ରୀ ଖାଇ, ଦ୍ୱାରେ ଦ୍ୱାରେ ବୁଲି ଭିକ୍ଷା ମାଗି ଦିନ ଯାପନ କରିବା ବ୍ରାହ୍ମଣମାନଙ୍କର ଅନାଦି ସିଦ୍ଧ ରୀତି ଅଟେ । ଏମାନେ ବିଦ୍ୟା ବା ଧନ ଉପାର୍ଜ୍ଜନ ନିମନ୍ତେ ବିଲାତ ବା ରେଙ୍ଗୁନ ଯାଆନ୍ତିନାହିଁ, ଗଲେ ଭାତଖିଆ ଜାତିଟା ଏକା-ବେଳକେ ନଷ୍ଟ ହୋଇଯିବ , ପିଣ୍ଡ ପ୍ରାପ୍ତି ସକାଶେ ବୃଦ୍ଧକାଳେ ମଧ୍ୟ ଟଙ୍କା ଦେଇ କନ୍ୟାଟିଏ କିଣିଆଣି ବିବାହ କରନ୍ତି, ଯୁବତୀ ବିଧବାକୁ ଆଜୀବନ ବଳ-ପୂର୍ବକ ବିଧବା ରଖନ୍ତି । ପୁଣି ଅତ୍ୟାଚାରୀ ପୁରୁଷ ସରଳା ବିଧବାର ସତୀତ୍ୱ ନଷ୍ଟକରି ସମାଜରେ ସୁନାପୁଅ ହୁଅନ୍ତି ନତୁବା ପଣ୍ଡିତମାନଙ୍କ ପ୍ରାୟଶ୍ଚିତରେ ପାପ ପ୍ରକ୍ଷାଳନ କରି ଦିଅନ୍ତି, କିନ୍ତୁ ବିଧବା ଅବଳା ଏକାବେଳକେ ଜନ୍ମ ଜନ୍ମାନ୍ତର ନିମନ୍ତେ କୁଳରୁ ଯାଆନ୍ତି ।

ଏହି ନାମ—ବ୍ରାହ୍ମଣ ଜାତିରୁ ପଇତା ବ୍ରହ୍ମତ୍ୱକୁ ବାହାରକରି ଫିଙ୍ଗିଦେବା ବର୍ତ୍ତମାନ ଅସାଧ୍ୟ । ଯେତେବେଳେ ଲୋକେ ନୂଆ ପଇତାର ସୃଷ୍ଟି କରି ଜାତିର ଠେଲ ବଢ଼ାଇବାକୁ ବସିଅଛନ୍ତି, ତେତେବେଳେ ପୁରୁଷାନୁକ୍ରମେ ଉତ୍ତରାଧିକାର ସତ୍ତ୍ୱେ ଯେଉଁ ପଇତା ଚାଲି ଆସିଅଛି ତାହାକୁ ଏବେ ଛାଡଦେବା ଅସମ୍ଭବ । ଏହେତୁ କାଳସୁତା କାନ୍ଧରେ ଥାଉ ଆମ୍ଭମାନଙ୍କର ଆପତ୍ତି ନାହିଁ, କିନ୍ତୁ ବ୍ରାହ୍ମଣ ସନ୍ତାନ-ମାନଙ୍କୁ ବିଶେଷ ଭାବରେ ଶିକ୍ଷା ଦେବାକୁହେବ, ଯେହେତୁ ଏମାନେ ସୁଶିକ୍ଷିତ ହେଲେ ଅନ୍ୟ ଲୋକଙ୍କୁ ଆଉ ଭୁଲାଇ ଦେଇ ପଥଭ୍ରଷ୍ଟ କରିବେନାହିଁ । ବୋଧ-

ହୁଏ ଏହାହିଁ ବ୍ରାହ୍ମଣ ସମିତି ଓ ବ୍ରାହ୍ମଣ ସନ୍ତାନମାନଙ୍କ ପୃଥକ ଶିକ୍ଷାର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟ ବ୍ୟତୀତ ସାମ୍ପ୍ରଦାୟିକ ଶିକ୍ଷାର ଉପାଦେୟତା କେଉଁଠାରେ ?

— ❀ —

# ହିନ୍ଦୁ ବିଧବା ଶିକ୍ଷା ।

ଉତ୍ତ ହିନ୍ଦୁଜାତିର ବିଧବାମାନଙ୍କ ପାଇଁ କଟକଠାରେ ହିନ୍ଦୁ ବିଧବା ଟ୍ରେନିଂ ସ୍କୁଲ୍ ସ୍ଥାପନ କରାଯାଇଅଛି । ଏହା ଏକ ଅତି ଉତ୍ତମ ଅନୁଷ୍ଠାନ । ଏଥିଦ୍ୱାରା ସମାଜର ଅଶେଷ ଉପକାର ସାଧିତ ହେବ, ଏଥିରେ ସନ୍ଦେହ ନାହିଁ । ବ୍ରାହ୍ମଣ ଜାତିରେ ବାଲ୍ୟବିବାହ ପ୍ରଚଳିତ ପୁଣି ବ୍ରାହ୍ମଣ ଓ କରଣ ଜାତିରେ ବିଧବାର ନିଯୋଗ ପ୍ରଥା ରହିତ ହେବାଯୋଗୁଁ ଅନେକ ବିଧବା ଅଶୟ ଓ ସମ୍ବଳ ବିହୀନା ହୋଇ ବହୁ କଷ୍ଟରେ କାଳାତିପାତ କରନ୍ତି । ଏମାନେ ବିଜ୍ଞାନ, ଧର୍ମ ଓ ଶିଳ୍ପଶିକ୍ଷା କଲେ ନିଜର ଜୀବିକା ନିର୍ବାହ ସଙ୍ଗେ ୨ ସମାଜର ବହୁତ ଉପକାର କରି ପାରିବେ । କିନ୍ତୁ ଏହି ରକ୍ଷଣଶୀଳ ସମାଜରେ ବିଧବା ଛାତ୍ରୀ ଘଟିବା ବଡ ଦୁଷ୍କର । ବିଧବା ହେଉ ବା ସଧବା ହେଉ ସ୍ତ୍ରୀ ସକାଶେ ବିଦ୍ୟାଶିକ୍ଷା ଦରକାର ନାହିଁ ବୋଲି ଏମାନଙ୍କର ଦୃଢ଼ ଧାରଣା । ଏମାନେ କୋଠା କୁଟି, ସୁତା କାଟି କିବା ଭିକ୍ଷା ଉପାସେ ଘରକୋଣେ ମରିବେ ସିନା, ପଦାକୁ ବାହାରିବେ ନାହିଁ । ମଫସଲ- ବାସିନୀ ବିଧବାମାନେ କଟକ ସହରରେ ଯାଇଁ ରହିବା କଥା ଶୁଣିଲେ ଚମକି ଉଠନ୍ତି । ଏମାନଙ୍କୁ ମଗାଇବା କାଠିକର କଥା ।

ଶିକ୍ଷାଦାନ ସକାଶେ ବିଧବା ଛାତ୍ରୀ ସଂଗ୍ରହ କରିବାର ଆଉ ଏକ ଉପାୟ ଅଛି । ପୁରୀ ହେଉଅଛି ହିନ୍ଦୁମାନଙ୍କର ମର୍ତ୍ତ୍ୟରେ ସ୍ୱର୍ଗ ବୈକୁଣ୍ଠ । ପରଦା ବାସିନୀ ସଂଭ୍ରାନ୍ତ ବିଧବାମାନେ ମଧ୍ୟ ପୁରୀ ଯିବାକୁ କୌଣସି ଆପତ୍ତି କରନ୍ତିନାହିଁ । ପୁରୀରେ ଜାତି ଯାଏ ନାହିଁ, ବରଂ ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳ ଲାଭ ହୁଏ । ଅନେକ ବିଧବା ପୁରୀରେ ଦାସୀ ହୋଇ ରହିବେ ପଛେ, ଅନ୍ୟ- ସ୍ଥାନରେ ରାଣୀ ହେବାକୁ ସହଜରେ ମଙ୍ଗିବେ ନାହିଁ । ଏହି ଟ୍ରେନିଂ ସ୍କୁଲ୍ କଟକଠାରେ ନ ହୋଇ ପୁରୀ ନଗରୀରେ ସ୍ଥାପିତ ହେଲେ ସେଠାରେ ଅନେକ ବିଧବା ଛାତ୍ରୀ ଘଟିବାର ସମ୍ଭାବନା । ସରକାର କର୍ତ୍ତୃପକ୍ଷଙ୍କର ଏ ବିଷୟରେ ସୁବି- ଚାର କରିବା କର୍ତ୍ତବ୍ୟ ।



# ବିଦ୍ୟାର୍ଥୀ ପ୍ରତି ବିଦ୍ୱେଷ ।

ବିଦ୍ୟାଶିକ୍ଷା, ସତ୍ସଙ୍ଗଲିପ୍ସା, ବୁଦ୍ଧି ଓ ଶକ୍ତିରୁ ମନୁଷ୍ୟର ଜାତି ଗୀତ ଓ ବୃତ୍ତିର ପରିଚୟ ମିଳେ । କୌଣସି ବ୍ୟକ୍ତିର ଗୁଣ କର୍ମ ଓ ସ୍ୱଭାବ ନଜାଣିଲେ ତାହାର ଜାତି ବା ବର୍ଣ୍ଣ ନିରୂପଣ କରାଯାଇ ପାରେ ନାହିଁ । କେବଳ ବିଦ୍ୟାଶିକ୍ଷା ଦ୍ୱାରା ଗୁଣ କର୍ମ ଓ ସ୍ୱଭାବ ବିକଶିତ ହୁଏ । ଅତଏବ ଜନ୍ମଗତ ଜାତି, ବଂଶଗତ ବୃତ୍ତି, ସମାଜ, ସମ୍ପ୍ରଦାୟ ଇତ୍ୟାଦି ଭେଦ ନିର୍ବିଶେଷରେ ବାଳକ ବାଳିକାମାନଙ୍କୁ ବିଦ୍ୟାଶିକ୍ଷା ଦେବାକୁ ହେବ । ଶିକ୍ଷା କ୍ଷେତ୍ରରେ ଯେଉଁମାନେ ଯେତେ ଉନ୍ନତି କରିପାରିବେ ତଦନୁସାରେ ସେମାନଙ୍କର ଜାତି ବା ବର୍ଣ୍ଣ ଓ ବ୍ୟବସାୟ ନିରୂପଣ କରିବାକୁ ହେବ । ଶିକ୍ଷା କ୍ଷେତ୍ରରେ ଯଦି ଜନ୍ମଗତ ଜାତି, ବୃତ୍ତି ଇତ୍ୟାଦି ଭେଦ ବିଚାର କରାଯାଏ ତେବେ ପରିଶେଷରେ ମଧ୍ୟ ବ୍ୟକ୍ତି ବିଶେଷର ଗୁଣ କର୍ମ ସ୍ୱଭାବ ବିଦ୍ୟା ବୁଦ୍ଧି ଓ ଶକ୍ତିପ୍ରତି ଲକ୍ଷ ନରଖି ସେହି ଭେଦଜ୍ଞାନ କରିବାକୁ ହୁଏ, ପ୍ରକୃତ ଜାତି ନିର୍ଣ୍ଣୟ କରାଯାଇପାରେ ନାହିଁ କିମ୍ବା ପ୍ରତିଭାର ସମୁଚିତ ସମାଦର କରାଯାଇ ପାରେ ନାହିଁ । କେବଳ ସ୍ତ୍ରୀ ପୁରୁଷ ଭେଦ ବ୍ୟତୀତ ପ୍ରାଥମିକ ଶିକ୍ଷାଳୟରେ ଛାତ୍ର ବା ଛାତ୍ରୀମାନଙ୍କ ମଧ୍ୟରେ ଅନ୍ୟ କୌଣସି ଭେଦ ବୁଦ୍ଧି କରା କର୍ତ୍ତବ୍ୟ ନୁହେ । ବିଦ୍ୟାଳୟରେ ବା ଶିକ୍ଷା କ୍ଷେତ୍ରରେ ଜନ୍ମଗତ ଜାତି ବୃତ୍ତି ଇତ୍ୟାଦି ଭେଦ ରଖିଲେ ବ୍ୟକ୍ତିଗତ ପ୍ରତିଭା ବିକାଶର ଅବକାଶ ରହିପାରିବ ନାହିଁ । କେହି ବେଶ୍ୟା ପୁତ୍ର ବଶିଷ୍ଠ, କିବା କୈବର୍ତ୍ତ ପୁତ୍ର ବେଦବ୍ୟାସ ହୋଇ ପାରିବେ ନାହିଁ ।

ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷ ମାନଙ୍କର ଶିକ୍ଷା ଦାନରେ ଛାତ୍ର ବା ଛାତ୍ରୀମାନଙ୍କ ମଧ୍ୟରେ ଜନ୍ମଗତ ଜାତି, ବଂଶଗତ ବୃତ୍ତି ବା କୌଣସି ସାମ୍ପ୍ରଦାୟିକ ଭେଦ ବୁଦ୍ଧି ରଖା ଅନୁଚିତ । କର୍ତ୍ତୃପକ୍ଷଙ୍କର ଏହି ଭେଦ ବିଚାର ଦେଖିଲେ ଅନେକ ମୂଢ଼ ଲୋକେ ଅସୂୟା ପରବଶ ହୋଇ କୌଣସି କୌଣସି ଛାତ୍ର ବା ଛାତ୍ରୀ ପ୍ରତି ଅଯଥା ଦୋଷାରୋପ କରି ତାହାକୁ ଶିକ୍ଷା ଲାଭରୁ ବଞ୍ଚିତ କରିବାକୁ ଚେଷ୍ଟା କରନ୍ତି । ଗଞ୍ଜାମ ବେଲଗୁଣ୍ଠାରୁ ଗୋଟିଏ ଅନାଥା ବାଳିକା ଯାଇ କଟକ ବାଳିକା ବିଦ୍ୟାଳୟରେ ପଢ଼ା ଶୁଣା କରୁଥିବା ଦେଖି ସହିନପାରି କେହି କେହି ତାହାପ୍ରତି ଜାତିଗତ ଦୋଷାରୋପ କରି କର୍ତ୍ତୃପକ୍ଷଙ୍କ ନିକଟକୁ ପତ୍ର ଲେଖୁ ଅଛନ୍ତି ବୋଲି ଶୁଣାଯାଏ ।

ଅତଏବ କର୍ତ୍ତୃପକ୍ଷ ମାନଙ୍କର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ଅନ୍ତ୍ୟଜ, ପତ୍ନିମା, ଦାସୀ, ବେଶ୍ୟା ଇତ୍ୟାଦି ଭେଦ ପରିତ୍ୟାଗ କରି ସଚ୍ଚରିତ୍ରା, ବିନୟ ସମ୍ପନ୍ନା ବୁଦ୍ଧିମତୀ ବାଳିକାକୁ ସାଦରେ ଗ୍ରହଣ କରିବା ଉଚିତ ।



# ଛାତ୍ରାବାସ ।

ଭାରତରେ ଆର୍ଯ୍ୟାବର୍ତ୍ତ ପୁଣ୍ୟଭୂମି, ଆର୍ଯ୍ୟ ମାନଙ୍କର ମାତୃଭାଷା ସଂସ୍କୃତ । କାଶୀ ସହରକୁ ଏହି ସଂସ୍କୃତ ଭାଷାର ମାତୃସ୍ଥାନ କହିଲେ ଚଳିବ । ଭାରତରେ କାଶୀଧାମ ଏକ ପ୍ରଧାନ ନଗରୀ । ଏଠାରେ ବର୍ତ୍ତମାନ ହିନ୍ଦୁଗୋଷ୍ଠି ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଅଛି । ଭାରତର ନାନାଦେଶରୁ ଛାତ୍ରମାନେ ଆସି ଏଠାରେ ସଂସ୍କୃତ ବିଦ୍ୟାଶିକ୍ଷା କରନ୍ତି । ଏଠାରେ ବିଦ୍ୟାଶିକ୍ଷା କରି ଯାଇ ଲୋକେ ଅନ୍ୟ ଦେଶରେ ଆପଣାକୁ ପଣ୍ଡିତ ବୋଲି ପରିଚୟ ଦଅନ୍ତି । ଯଦି ଯାହା ଘରେ ବସି ବିଦ୍ୟାଶିକ୍ଷା କରି ପାଣ୍ଡିତ୍ୟ ଲାଭ କରି ପାରନ୍ତି କିନ୍ତୁ ସଙ୍ଗ, ସ୍ଥାନ ଓ ଆଦର୍ଶ ଭେଦରେ ପାଣ୍ଡିତ୍ୟର ଭେଦ ଘଟିଥାଏ । କାଶୀ ନଗରରେ ସଂସ୍କୃତ ଶିକ୍ଷାର ଯେଉଁ ସୁବିଧା ଥାଏ ତାହା ଅନ୍ୟସ୍ଥାନରେ ଦେଖା ଯାଏନାହିଁ । ପୁଣି ପୁଣ୍ୟ ସଲିଳା ଗଙ୍ଗାନଦୀ ଓ ଶ୍ରୀ ବିଶ୍ୱନାଥ ପ୍ରଭୃତି ଦେବ ମନ୍ଦିର ଥିବା ଯୋଗୁଁ ଏହିସ୍ଥାନ ଏକ ପବିତ୍ର ତୀର୍ଥ ବୋଲି ପରିଗୃହୀତ ହୋଇଅଛି । ସମଗ୍ର ଭାରତରୁ ଅସଂଖ୍ୟ ଯାତ୍ରୀ ଆସି ଏହିସ୍ଥାନ ଦର୍ଶନ କରିଥାନ୍ତି । ପୁଣି ଶିଳ୍ପ କାରିଗର ହେତୁ ଏହି ନଗର ଖ୍ୟାତି ଲାଭ କରିଅଛି ।

ଭାରତବର୍ଷର ପ୍ରାୟ ସକଳ ଉନ୍ନତ ଜାତି ମାନଙ୍କର ଏଠାରେ ସ୍ମୃତିଚିହ୍ନ ରଖା ଯାଇଅଛି । ଧର୍ମଶାଳା, ଛାତ୍ରାବାସ, ଔଷଧାଳୟ ପ୍ରଭୃତି ସ୍ଥାପନ ପୂର୍ବକ ଅକ୍ଷୟ କୀର୍ତ୍ତି ରଖା ଯାଇ ଅଛି । କିନ୍ତୁ ଦୁଃଖର ବିଷୟ, ଗରିବ ନିରୀହ ଓଡ଼ିଆ ମାନଙ୍କର ଏଠାରେ ଚିହ୍ନ ବର୍ଣ୍ଣ ସୁଦ୍ଧା ନାହିଁ । ବିଶେଷତଃ ଗୋଟିଏ ଛାତ୍ରାବାସର ଅଭାବ ହେତୁ ଉତ୍କଳ ବିଦ୍ୟାର୍ଥିମାନେ ଏଠାରେ ବହୁ କଷ୍ଟ ଭୋଗ କରନ୍ତି, ଉପଯୁକ୍ତ ସାହାଯ୍ୟ ନପାଇ ବିଦ୍ୟା ଶିକ୍ଷା କରି ପାରନ୍ତି ନାହିଁ । ସଂସ୍କୃତ ଶିକ୍ଷା ଇଂରେଜୀ ବିଦ୍ୟାପରି ଅର୍ଥକରୀ ନୁହେଁ ବୋଲି ଲୋକେ ସଂସ୍କୃତ ଶିକ୍ଷା ପ୍ରତି ବୀତସ୍ପୃହ ହୋଇଥାନ୍ତି । ଯେ କେହି ସଂସ୍କୃତ ଶିକ୍ଷା ପାଇବାକୁ ଇଚ୍ଛାକରେ ସେ ଆବଶ୍ୟକୀୟ ଉତ୍ସାହ ଓ ସାହାଯ୍ୟ ପାଇ ପାରେ ନାହିଁ । ଅନେକ ବିଦ୍ୟାର୍ଥୀ ବାଳକମାନେ ଆପଣା ପିତା ମାତା ଓ ଅଭିଭାବକ ମାନଙ୍କଠାରୁ ଅନୁମତି ଉତ୍ସାହ ଓ ସାହାଯ୍ୟ ନପାଇ ପିତା ମାତାଙ୍କୁ ନକହି ଲୁଚି ବାହାରି ଯାଇ କାଶୀରେ ବିଦ୍ୟା ଶିକ୍ଷା କରନ୍ତି, କିନ୍ତୁ ସେଠାରେ ସାହାଯ୍ୟ ଓ ସହାନୁଭୂତିର ଅଭାବ ହେତୁ କୃତକାର୍ଯ୍ୟ ହୋଇ ନପାରି ଅର୍ଦ୍ଧଶିକ୍ଷିତ ବା ଅକୃତକାର୍ଯ୍ୟ ହୋଇ ଫେରି ଆସନ୍ତି ନତୁବା କେହି୨ ଉପଯୁକ୍ତ ସଂରକ୍ଷକ ଓ ଅଭିଭାବକ ନପାଇ ଲକ୍ଷଭ୍ରଷ୍ଟ ହୋଇ ପଡ଼ନ୍ତି । ଅତଏବ ଆମ୍ଭମାନଙ୍କର କର୍ତ୍ତବ୍ୟ ଏହି ଯେ କାଶୀ ଧାମରେ ଉତ୍କଳ ଛାତ୍ରମାନଙ୍କ ସକାଶେ ଗୋଟିଏ ଛାତ୍ରାବାସ ନିର୍ମାଣ କରାଯାଉ, ତହିଁରେ ସେମାନଙ୍କର

ଖାଦ୍ୟ ପାନର ବନ୍ଦୋବସ୍ତ କରାଯିବ । ପ୍ରଥମେ ୨୫ ଜଣ ଛାତ୍ର ନିମନ୍ତେ ସ୍ଥାନ ଯୋଗାଇ ଦିଆଯାଉ । ଏହି ଉତ୍କଳ ଛାତ୍ରାବାସର ତତ୍ତ୍ୱାବଧାନ କରିବା ନିମନ୍ତେ ଗୋଟିଏ କମିଟି ନିଯୁକ୍ତ ହେଉ ପୁଣି ସ୍ଥାନୀୟ କୌଣସି ଭଦ୍ରଲୋକଙ୍କ ଉପରେ ତହିଁର ରକ୍ଷଣାବେକ୍ଷଣ ଓ ଛାତ୍ରମାନଙ୍କ ରୀତିନୀତି ଓ ଚରିତ୍ର ସଂଗଠନ-ଦାୟିତ୍ୱ ନ୍ୟସ୍ତ କରାଯାଉ । ଏହି ସତ୍କାର୍ଯ୍ୟ ସକାଶେ ମୋଟାମୋଟି ଏକଲକ୍ଷ ଟଙ୍କା ଆବଶ୍ୟକ । ଏହି ଟଙ୍କାଟା କୋଉଁ ଆସିବ ? ଗରୀବ ଲୋକେ ବା ମଧ୍ୟବର୍ତ୍ତ ଲୋକମାନେ ମଧ୍ୟ ଦେଇ ପାରିବେ ନାହିଁ । କେବଳ ଉତ୍କଳର ରାଜା ମହାରାଜା ମାନେ ସହଜରେ ଅକ୍ଳେଶରେ ଦେଇ ପାରିବେ । ଏହି ମୂଳ ଲକ୍ଷେ ଟଙ୍କାର ସୁଧରେ ଛାତ୍ରାବାସର ନିର୍ମାଣ ଓ ତହିଁର ପରିଚାଳନ ନିର୍ବାହିତ ହେବ ।

ଅତଏବ ଅସ୍ମମାନଙ୍କର ଉତ୍କଳ ରାଜା ମହାରାଜ ମାନଙ୍କ ନିକଟେ ବିନୀତ ନିବେଦନ ଏହି ଯେ, ସେମାନେ ଆପଣା ମଧ୍ୟରେ ଚାନ୍ଦାକରି ଏକଲକ୍ଷ ଟଙ୍କା ସଂଗ୍ରହ କରି କାଶୀଧାମରେ ଏକ ଉତ୍କଳ ଛାତ୍ରାବାସର ପ୍ରତିଷ୍ଠା କରିବାକୁ ଚେଷ୍ଟାବାନ ହୁଅନ୍ତୁ । ବିଦ୍ୟାଦାନ ମହାପୁଣ୍ୟ । ଏହି ପୁଣ୍ୟ କାର୍ଯ୍ୟଦ୍ୱାରା ଦାତାମାନଙ୍କର ଧର୍ମ-ହେବ, ଉତ୍କଳରେ ସଂସ୍କୃତ ଶିକ୍ଷାର ପ୍ରଚାର ହେବ ପୁଣି କାଶୀ ଧାମରେ ତଥା ଭାରତରେ ଉତ୍କଳ ନାମ ସୁରକ୍ଷିତ ହେବ ।

—o—

## ବରୋଦାରେ ବିଦ୍ୟାଶିକ୍ଷା ।

ବାଳକ ଓ ବାଳିକାମାନଙ୍କ ସକାଶେ ବରୋଦା ରାଜ୍ୟରେ ଅପରିହାର୍ଯ୍ୟ ବିଦ୍ୟାଶିକ୍ଷା ପ୍ରଣାଳୀ ପ୍ରଚଳିତ ହୋଇଅଛି । ବାଳକମାନେ ୭ ଠାରୁ ୧୨ ବର୍ଷ ପର୍ଯ୍ୟନ୍ତ, ପୁଣି ବାଳିକାମାନେ ୭ ଠାରୁ ୧୦ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଳୟରେ ଉପସ୍ଥିତ ହୋଇ ବିଦ୍ୟାଶିକ୍ଷା କରିବାକୁ ବାଧ୍ୟ । ଯେଉଁ ବାଳକ ବାଳିକାମାନଙ୍କର ପିତା ମାତା ଦୁର୍ବଳ ଓ କାର୍ଯ୍ୟ ଅକ୍ଷମ, ଯେଉଁମାନେ ଶାରୀରିକ ଦୌର୍ବଲ୍ୟ ହେତୁ ଶିକ୍ଷା କରିବାକୁ ଅପାରଗ, ଯେଉଁମାନଙ୍କୁ ବିଦ୍ୟାଳୟରେ ଉପସ୍ଥିତ କରିବା ସକାଶେ ଏକ ମାଇଲରୁ ଅଧିକ ଦୂର ଯିବାକୁ ହେବ, କିମ୍ବା ଯେଉଁମାନଙ୍କ ଉପରେ କୁଟୁମ୍ବ ପୋଷଣ ଭାର ନ୍ୟସ୍ତ ଥାଏ, ସେମାନେ ମାତ୍ର ଅନିବାର୍ଯ୍ୟ ବିଦ୍ୟାଶିକ୍ଷାରୁ ବିମୁକ୍ତ । ଗରିବ ବାଳକ ବାଳିକାମାନଙ୍କୁ ପୁସ୍ତକ ଓ ସ୍ଲେଟ ବିତରଣ କରାଯାଏ । କୃଷି କର୍ମରେ ଯେପରି କୌଣସି ବ୍ୟାଘାତ ଘଟିବ ନାହିଁ, ତହିଁପ୍ରତି ଦୃଷ୍ଟି ରଖି ବିଦ୍ୟାଳୟର ସମୟ ନିରୂପିତ ହୋଇଥାଏ । ନୂତନ ବିଦ୍ୟାଳୟ ସ୍ଥାପନ ସକାଶେ

ବାର୍ଷିକ ଏକ ଲକ୍ଷ ଟଙ୍କାର ବ୍ୟୟ ମଞ୍ଜୁର ହୁଏ । ଶିକ୍ଷକମାନଙ୍କୁ ଶିକ୍ଷା ପ୍ରଣାଳୀ ଶିକ୍ଷା ଦେବା ସକାଶେ ଟ୍ରେନିଂ କଲେଜ ସ୍ଥାପିତ ଅଛି । ଏହି ବିଦ୍ୟାଶିକ୍ଷା ଦ୍ୱାରା ପ୍ରଜା-ମାନଙ୍କର ଯେପରି କୌଣସି ପୀଡ଼ା ନହୁଏ, ତାହାର ସୁବନ୍ଦୋବସ୍ତ କରିବାରେ ଅଣୁମାତ୍ର ତ୍ରୁଟି ଦେଖାଯାଏ ନାହିଁ । ଏହି ଅପରିହାର୍ଯ୍ୟ ଶିକ୍ଷା ବିଷୟରେ ଯାହା ଅବଶ୍ୟକ ହୁଏ ତାହା ଯୋଗାଇବାରେ ଲେଶ ମାତ୍ର ଅବହେଳା ଦେଖାଯାଏ ନାହିଁ ।

ବିନା ପରୀକ୍ଷାରେ ଏହି ଶିକ୍ଷା ପ୍ରଣାଳୀ ଗୃହୀତ ହୋଇନାହିଁ । ୧୫ ବର୍ଷ ପୂର୍ବେ ଉକ୍ତ ରାଜ୍ୟର " ଅମ୍ରେଲି " ତାଲୁକାରେ ଅପରିହାର୍ଯ୍ୟ ପ୍ରାଇମେରୀ ( ପ୍ରାଥମିକ ) ଶିକ୍ଷା ପ୍ରଣାଳୀ ପ୍ରତିଷ୍ଠିତ ହେଲା । ଅନେକ ବର୍ଷର ଅନୁଭବରୁ ଏହି ଶିକ୍ଷା ପ୍ରଣାଳୀର ଉପକାରିତା ଉପଲବ୍ଧି ହେବାରୁ ୧୯୦୫ । ୧୯୦୬ ସାଲରେ ସମଗ୍ର ରାଜ୍ୟରେ ଉକ୍ତ ନିୟମ ପ୍ରତିଷ୍ଠିତ ହେଲା । ବର୍ତ୍ତମାନ ଏହି ବ୍ୟବସ୍ଥା ହୋଇଅଛି ଯେ, ଯେଉଁ ପିତା ମାତା ଆପଣା ବାଳକ ବାଳିକା ମାନଙ୍କୁ ସ୍କୁଲକୁ ପଠାନ୍ତି ନାହିଁ, ସେମାନଙ୍କ ଉପରେ କିଛି ଜରିମାନା ଧାର୍ଯ୍ୟ ହୁଏ । କିନ୍ତୁ ଏହି ଜରିମାନା ଯେପରି ନିନ୍ଦାଜନକ ନହୁଏ ତହିଁ ପ୍ରତି ଦୃଷ୍ଟି ରଖିବାକୁ ହୁଏ । ନିମ୍ନ କର୍ମ୍ମଗୃହମାନଙ୍କ ଅଯଥା ଆକ୍ରମଣ ଓ ପ୍ରପୀଡ଼ନରୁ ପ୍ରଜାମାନଙ୍କୁ ରକ୍ଷା କରିବା ସକାଶେ ଯଥେଷ୍ଟ ନିୟମ କରାଯାଇ ଅଛି । ଏହି ଅପରିହାର୍ଯ୍ୟ ବିଦ୍ୟାଶିକ୍ଷା ପ୍ରଣାଳୀ ଏହି ରାଜ୍ୟରେ ଆଉ ଅସ୍ଥାୟୀ ଅବସ୍ଥାରେ ନାହିଁ, କାଳକ୍ରମେ ସୁପରୀକ୍ଷିତ ହୋଇ ଚିରସ୍ଥାୟୀ ବିଧିବଦ୍ଧ କରାଯାଇଅଛି । ଗତବର୍ଷ ଶେଷରେ ୭୦୦ ଅପରିହାର୍ଯ୍ୟ ସରକାରୀ ସ୍କୁଲ ଥିଲା ଏବଂ ବାଳକ ବାଳିକା ସଂଖ୍ୟା ୩୦ ହଜାର ଥିଲା । ଗତ ଦୁଇବର୍ଷ ମଧ୍ୟରେ ଏହି ସ୍କୁଲ ସକାଶେ ପ୍ରାୟ ୩ଲକ୍ଷ ଟଙ୍କା ଖରଚ ହୋଇଅଛି । ଏହି ରାଜ୍ୟରେ ୨୭ ଗୋଟି ଉଚ୍ଚ ଓ " ସେକଣ୍ଡରି " ବିଦ୍ୟାଳୟ ପୁଣି ଗୋଟିଏ ବିଶ୍ୱବିଦ୍ୟାଳୟ ଓ ତିନି ଗୋଟି "ହାଇସ୍କୁଲ" ସ୍ଥାପିତ ଅଛି । ଏହି ବିଦ୍ୟାଳୟ ଗୁଡ଼ିକର ରକ୍ଷଣାବେକ୍ଷଣ ପୁଣି ଛାତ୍ରମାନଙ୍କ ବିଦ୍ୟାଶିକ୍ଷାପାଇଁ ବିଲାତ ପ୍ରଭୃତି ବିଦେଶକୁ ପ୍ରେରଣ ସକାଶେ ଗତ ବର୍ଷ ପ୍ରାୟ ୧୦ ଲକ୍ଷ ଟଙ୍କା ବ୍ୟୟ ହୋଇଅଛି । କିନ୍ତୁ ବିଦ୍ୟାଳୟରୁ ଆଦାୟ- ଧନ ପ୍ରାୟ ୯୩ ହଜାର ଟଙ୍କା ମାତ୍ର । ଗତବର୍ଷ ଏହି ରାଜ୍ୟରୁ ୨ ଜଣ ବି. ଏ. ଇଂଲଣ୍ଡରେ, ୨ ଜଣ ଜାପାନରେ ପୁଣି ୭ ଜଣ ଭାରତୀୟ ଅନ୍ୟାନ୍ୟ ବିଦ୍ୟାଳୟରେ ଏହି ରାଜ୍ୟର ବ୍ୟୟରେ ବିଦ୍ୟାଶିକ୍ଷା କରୁଥିଲେ । ବିଶେଷ ଦ୍ରଷ୍ଟବ୍ୟ ଏହି ଯେ, ଏହି ରାଜ୍ୟରେ ଏକ ହଜାର ବା ତଦୁର୍ଦ୍ଧ ଅଧିବାସୀ ଥିବା ଗ୍ରାମ ବା ନଗରମାନଙ୍କରେ ରାଜକୀୟ ବିଦ୍ୟାଳୟ ପୁଣି ୧୦୦୦ରୁ କମ ଜନ ସଂଖ୍ୟା ଥିବା ଗ୍ରାମମାନଙ୍କରେ ବୋର୍ଡ ପରିଚାଳିତ ଗ୍ରାମ୍ୟ ସ୍କୁଲମାନ ସ୍ଥାପିତ ଅଛି ।

ଗତବର୍ଷ ଏହି ରାଜ୍ୟରେ ବିଦ୍ୟାଳୟ ସଂଖ୍ୟା ୪୧୨ ହୋଇଥିଲା । ସ୍ତ୍ରୀ ଶିକ୍ଷା ପ୍ରତି ଅତ୍ୟନ୍ତ ମନୋଯୋଗ ଥାଏ, ପୁଣି ବାଳିକାମାନଙ୍କୁ ପ୍ରକୃତ ରନ୍ଧନ ଶିକ୍ଷା ଦିଆ ଯାଇ ଥାଏ । ବିଶାଳ ଭାରତ ମଧ୍ୟରେ ଏକମାତ୍ର ବରୋଦା ରାଜ୍ୟରେ ସଙ୍ଗୀତ ଶିକ୍ଷା ଦିଆଯାଏ । ଗୁରଗୋଟି ପ୍ରଧାନ ନଗରରେ ଗୁରଗୋଟି ସଙ୍ଗୀତ ବିଦ୍ୟାଳୟ ସ୍ଥାପିତ ଅଛି, ତହିଁରେ ପ୍ରାୟ ୬୦୦ ବାଳକ ସଙ୍ଗୀତ ଶିକ୍ଷା କରନ୍ତି । ଅନେକ ବାଳିକା ସ୍କୁଲରେ ସଙ୍ଗୀତ ଶିକ୍ଷାର ଆୟୋଜନ କରା ଯାଇଅଛି । ଏହି ସଙ୍ଗୀତ ଶିକ୍ଷା ସକାଶେ ରାଜସ୍ୱରୁ ବାର୍ଷିକ ୬ ହଜାର ଟଙ୍କା ବ୍ୟୟ ହୁଏ ।

ଦୁଃଖର ବିଷୟ, ଏହି ଉତ୍କଳ ଦେଶର ରାଜା ମହାରାଜା ଓ ଜମିଦାରମାନେ ଆପଣା ଆପଣା ଗଡ଼ ଖଣ୍ଡିକରେ ମଧ୍ୟ ବିଦ୍ୟାଳୟ ସ୍ଥାପନ କରି ଗଡ ଅଧିବାସୀ ବାଳକ ବାଳିକାମାନଙ୍କ ସକାଶେ ଅପରିହାର୍ଯ୍ୟ ବିଦ୍ୟାଶିକ୍ଷା ପ୍ରଣାଳୀର ବ୍ୟବସ୍ଥା କରୁ ନାହାନ୍ତି । ଏମାନେ ସମଗ୍ର ରାଜ୍ୟରେ ଏହି ବ୍ୟବସ୍ଥା କରିବା ସକାଶେ ଅପାରଗ ହେଲେହେଁ ଉପଦେଶ, ଉତ୍ସାହ, ସାହାଯ୍ୟ ଏବଂ ଆଦର୍ଶ ପ୍ରଦାନ ପୂର୍ବକ ଆପଣା ଆପଣା ରାଜଧାନୀ ମାନଙ୍କରେ ଏହି ଶିକ୍ଷା ପ୍ରଣାଳୀ ସ୍ଥାପନ କରିବା ସକାଶେ ଯଥେଷ୍ଟ କ୍ଷମତା ପାଇ ଅଛନ୍ତି । ଏମାନେ କୌଣସି ସଙ୍କୀର୍ଣ୍ଣ ସ୍ୱାର୍ଥ ସାଧନ ସକାଶେ ଯଥେଷ୍ଟ ପରିମାଣରେ ଅତିରିକ୍ତ କ୍ଷମତା ପ୍ରୟୋଗ କରିଥାନ୍ତି, କିନ୍ତୁ ସତ୍କାର୍ଯ୍ୟ ବେଳକୁ କ୍ଷମତା ନାହିଁ ବୋଲି କ୍ଷମାବାଦ କରିଥାନ୍ତି ।



## ଗଞ୍ଜାମରେ ବିଦ୍ୟା ଶିକ୍ଷାର ଉନ୍ନତି ।

ଗଞ୍ଜାମ ଉତ୍ତରାଞ୍ଚଳର ଅଧିବାସୀମାନେ ପ୍ରାୟ ସମସ୍ତେ ଓଡ଼ିଆ ଅଟନ୍ତି । ପ୍ରଧାନତଃ ବ୍ରହ୍ମପୁର, ଛତ୍ରପୁର, ଆସିକା, ଓ ରସୁଲକୋଣ୍ଡାରେ ତେଲୁଗୁ ଲୋକମାନେ ବାସ କରନ୍ତି । ଏହି ଚାରିଗୋଟି ସହରର ତେଲୁଗୁ ଅଧିବାସୀମାନଙ୍କୁ ବାଦ ଦେଲେ ଗଞ୍ଜାମର ସମସ୍ତ ଉତ୍ତରାଞ୍ଚଳ ବାସୀ ଓଡ଼ିଆ ଅଟନ୍ତି ବୋଲି ମନେ କରିବାକୁ ହେବ । ଗଞ୍ଜାମରେ ଦୁଇ ଗୋଟି କଲେଜ ସ୍ଥାପିତ ହୋଇଅଛି ବ୍ରହ୍ମପୁର ଓ ପାରଳା ନାମରେ । ଉତ୍ତରାଞ୍ଚଳ ସକାଶେ ବ୍ରହ୍ମପୁର କଲେଜରେ ପ୍ରଥମ ଶ୍ରେଣୀଠାରୁ ଏମ୍. ଏ. ପର୍ଯ୍ୟନ୍ତ ପ୍ରାୟ ଏକସହସ୍ର ଛାତ୍ର ପଠନ କରନ୍ତି । ତନ୍ମଧ୍ୟରୁ ପ୍ରାୟ ଅଢ଼ାଇଶ ଛାତ୍ର ଓଡ଼ିଆ ଅବଶିଷ୍ଟ ସାତଶ ପଚାଶ ତେଲୁଗୁ ଛାତ୍ର ଅଟନ୍ତି । ଚାରି ଗୋଟି ନଗରର କେତେକ ଅଧିବାସୀ ମଧ୍ୟରୁ ସାତଶ ପଚାଶ ତେଲୁଗୁ ଛାତ୍ର ବାହାରନ୍ତି କିନ୍ତୁ ସମଗ୍ର ଉତ୍ତରାଞ୍ଚଳରୁ ୨୫୦ ଜଣ ମାତ୍ର ଓଡ଼ିଆ

ଛାତ୍ର ବିଦ୍ୟାଭ୍ୟାସ କରନ୍ତି । ଏହି ମୋଟା ମୋଟି ହିସାବରେ ଜଣାଯାଏ ଯେ ପ୍ରାୟ ସମସ୍ତ ତେଲଗୁ ପରିବାରରୁ ବାଳକମାନେ ବିଦ୍ୟା ଶିକ୍ଷା କରନ୍ତି କିନ୍ତୁ ଓଡ଼ିଆମାନଙ୍କ ମଧ୍ୟରେ ଅନେକ ଛାତ୍ର ବିଦ୍ୟା ଶିକ୍ଷା କରନ୍ତି ନାହିଁ । ଏହାର କାରଣ କଣ ? ଓଡ଼ିଆମାନେ ତେଲୁଗୁମାନଙ୍କ ଅପେକ୍ଷା ଅଧିକ ଧନହୀନ ନୁହନ୍ତି କିମ୍ବା ବୁଦ୍ଧିହୀନ ନୁହନ୍ତି, ତଥାପି ଏମାନଙ୍କ ମଧ୍ୟରେ ଛାତ୍ର ସଂଖ୍ୟା କମ । ଏମାନେ ବିଦ୍ୟାର ଲାଭ ବୁଝିନାହାନ୍ତି । ଏମାନଙ୍କ ସାମାଜିକ ନିୟମ ବିଦ୍ୟା-ଶିକ୍ଷାର ଅନୁକୂଳ ହୋଇ ନାହିଁ, ଏବଂ ଖାଦ୍ୟ ପାନ ପ୍ରଣାଳୀର ନିୟମ ଅତି କଠୋର, ପୁଣି ଏମାନେ ପରସ୍ପର ନାନାବିଧ ଜାତିରେ ବିଭକ୍ତ । ତେଲୁଗୁ ଛାତ୍ରମାନେ ବନ୍ଧୁ ବାନ୍ଧବ ସମ୍ପର୍କ ନ ଥିଲେହେଁ ଏକ ଜାତି ମାତ୍ରେ ଏକ ଘରରୁ ଏକତ୍ର ଭୋଜନ କରି ପାରନ୍ତି । ଗୋଟିଏ ଗରିବ ଛାତ୍ର ଦିନକେ ଏକ, ୨ ଘରେ ଭୋଜନ କରି ଜୀବନ ନିର୍ବାହ କରେ, କିନ୍ତୁ ଏକ ଶ୍ରେଣୀର ଓଡ଼ିଆ ବ୍ରାହ୍ମଣ, କରଣ ଛାତ୍ରମାନେ ଅନ୍ୟ ଶ୍ରେଣୀର ବ୍ରାହ୍ମଣ, କରଣ ଘରେ ଭୋଜନ କରିବେ ନାହିଁ ପୁଣି ଏହିପରି ଭୋଜନ ନ କରିବା ଏତେଦୂର ଅଭ୍ୟାସ ପରମ୍ପରା ପଡିଅଛି ଯେ ଆଜି କୌଣସି ଛାତ୍ର ଶାଖା ଶ୍ରେଣୀ ଭେଦ ନ କରି ଏକ ଜାତି ମାତ୍ରେ ଅନ୍ୟ ଘରେ ଭୋଜନ କରିବାକୁ ଇଚ୍ଛା କଲେ ମଧ୍ୟ ତାହା କରି ଦିଅନ୍ତି ନାହିଁ । ଓଡ଼ିଆମାନେ ଗଞ୍ଜାମର ଆଦିମ ଅଧିବାସୀ ଥିବା ହେତୁ ଏମାନେ ସାଧାରଣତଃ କୃଷିବ୍ୟବସାୟ ଦ୍ୱାରା ଜୀବନ ନିର୍ବାହ କରନ୍ତି । ବିଦ୍ୟା ଶିକ୍ଷା ଦ୍ୱାରା ଧନ ଉପାର୍ଜନ କରିବାର ଜାଣି ନାହାନ୍ତି । ଆଜି କାଲି କେବଳ ଧନ ଉପାର୍ଜ୍ଜନ ସକାଶେ ଲୋକେ ବିଦ୍ୟା ଶିକ୍ଷା କରୁଥାନ୍ତି । ଯଦିଚ କୃଷି ପ୍ରଭୃତି ବ୍ୟବସାୟ ଦ୍ୱାରା ଯେ କୌଣସି ପ୍ରକାରେ ଜୀବନ ନିର୍ବାହ ହୋଇ ଯାଏ, ତେବେ ବିଦ୍ୟା ଶିକ୍ଷାରେ ଆଉ ଆସ୍ଥା ରହେ ନାହିଁ ।



## ବ୍ରହ୍ମଚର୍ଯ୍ୟ ଓ ବିଦ୍ୟାଶିକ୍ଷା ।

ବ୍ରହ୍ମଚର୍ଯ୍ୟରୁ ବିଦ୍ୟାଶିକ୍ଷା, କିବା ବିଦ୍ୟାଶିକ୍ଷାରୁ ବ୍ରହ୍ମଚର୍ଯ୍ୟ ? କେବଳ ବ୍ରହ୍ମଚର୍ଯ୍ୟରୁ ବିଦ୍ୟାଲାଭ ହୁଏ, ବିନା ବ୍ରହ୍ମଚର୍ଯ୍ୟରେ ବିଦ୍ୟାପ୍ରାପ୍ତି ଅସମ୍ଭବ । ବିଦ୍ୟା-ଶିକ୍ଷା ସକାଶେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ହୁଏ । ବ୍ରହ୍ମଚର୍ଯ୍ୟରେ ବିଦ୍ୟା-ଲାଭ ସହଜ ଓ ସୁଗମ ହୁଏ । ବ୍ରହ୍ମଚର୍ଯ୍ୟ ବିହୀନ ବିଦ୍ୟାଶିକ୍ଷା ପଣ୍ଡଶ୍ରମରେ ଅବିଦ୍ୟାରେ ପରିଣତ ହୁଏ । ଆଜିକାଲି ଲୋକଙ୍କର ଧାରଣା ଯେ, ବ୍ରହ୍ମଚର୍ଯ୍ୟ ନିର ବାଳକର ପ୍ରଥମେ ବିଦ୍ୟାଶିକ୍ଷା କରିବାକୁ ହେବ ଏବଂ ବିଦ୍ୟାଶିକ୍ଷାରୁ

ବ୍ରହ୍ମଚର୍ଯ୍ୟାଦ ଆଶ୍ରମ ଧର୍ମ ପାଳନ କରାଯାଇପାରେ । ଏଥିପାଇଁ ନେତୃବର୍ଗ ପ୍ରଥମେ ବଦ୍ୟାଳୟ ସ୍ଥାପନକରି ବହୁ ସଂଖ୍ୟକ ଛାତ୍ରମାନଙ୍କୁ ଶିକ୍ଷା ଦାନର ଆୟୋଜନ କରନ୍ତି । କିନ୍ତୁ ଏହି ଧାରଣା ନିତାନ୍ତ ଭ୍ରାନ୍ତ । ବର୍ତ୍ତମାନ ପ୍ରଚଳିତ ସାମାଜିକ କୁରୀତି କୁନୀତି ରକ୍ଷା ପୂର୍ବକ ବଦ୍ୟାଶିକ୍ଷା କରିବାକୁ ହୁଏ । ଛାତ୍ରମାନେ ବାଲ୍ୟାବସ୍ଥାରେ ବବାହ କରନ୍ତି, ବେଶଭୂଷାଦ ବାହ୍ୟାଡମ୍ବର ପ୍ରିୟ ହୁଅନ୍ତି ଏବଂ ଭୋଗବଳାସରେ ମାତି ରହନ୍ତି । ସୁତରାଂ ଧନ ଉପାର୍ଜ୍ଜନ କରିବାହିଁ ଏମାନଙ୍କର ବଦ୍ୟାଶିକ୍ଷାର ପ୍ରଧାନ ଲକ୍ଷ । ଅନ୍ୟାୟରେ ହେଉ, ଅସତ୍ ମାର୍ଗରେ ହେଉ ଧନ ସଂଗ୍ରହ କରିପାରିଲେ ହେଲା । ଶିକ୍ଷିତ ସମାଜରେ ମଧ୍ୟ ନାନାବଧ ଅନ୍ୟାୟ ଅସଦାଚାର ଏବଂ ଅଧର୍ମ ବହୁପରିମାଣରେ ଦେଖାଯାଏ । ଏଭଳି ଶିକ୍ଷିତ ସଂଖ୍ୟା ବଢ଼ାଇବା ଦ୍ୱାରା ସମାଜର, ଦେଶର ତଥା ଜଗତର ଉପକାର ଅପେକ୍ଷା ଅଧିକ କ୍ଷତି ହୁଏ । ବ୍ରହ୍ମଚର୍ଯ୍ୟ ବହୀନ ବିଦ୍ୟାଶିକ୍ଷା ଦ୍ୱାରା ଲୋକର ବଳ ବୀର୍ଯ୍ୟ, ତେଜ ଓଜ, ଉଦ୍ୟମ ଉତ୍ସାହ ସବୁ ନଷ୍ଟ ହୁଏ । ଆତ୍ମା କୁଶଳେ ସର୍ବସିଦ୍ଧି । ସେମାନେ ଯେତେବେଳେ ନିଜ ବିଷୟରେ ଅପାରଗ ଅନ୍ୟର ବା କି ଉପକାର କରି ପାରିବେ ? ଅତଏବ ସହସ୍ର ସଂଖ୍ୟକ ସ୍କୁଲ ସ୍ଥାପନ କରି ଛାତ୍ର ସଂଖ୍ୟା ଓ ପାସ ଲିଷ୍ଟ ବଢ଼ାଇବା ଅପେକ୍ଷା ଦଶଟି ଛାତ୍ର ନେଇ ଗୋଟିଏ ମାତ୍ର ବ୍ରହ୍ମଚର୍ଯ୍ୟାଶ୍ରମ ସ୍ଥାପନ କରିବା ଶତଗୁଣ ଶ୍ରେୟସ୍କର ।



# ବିଦ୍ୟା ଶିକ୍ଷାର ଅନ୍ତରାୟ ।

ବଦ୍ୟାଶିକ୍ଷାର ପ୍ରଧାନ ଅନ୍ତରାୟ କୁସଙ୍ଗ ଅର୍ଥାତ୍ ଦୁଷ୍ଟ ବଧର୍ମୀ ଜନସଙ୍ଗ, ମଦ୍ୟ ସେବନ, ବେଶ୍ୟା ଗମନାଦି ଦୁଷ୍ଟ ବ୍ୟସନ, ବାଲ୍ୟାବସ୍ଥାରେ ଅର୍ଥାତ୍ ୨୫ବର୍ଷ ପୂର୍ବରୁ ପୁରୁଷର ଏବଂ ୧୬ବର୍ଷ ପୂର୍ବରୁ ସ୍ତ୍ରୀର ବବାହ, ବ୍ରହ୍ମଚର୍ଯ୍ୟର ଅଭାବ, କେବଳ ବ୍ରହ୍ମଚର୍ଯ୍ୟରୁ ବଳ, ବୁଦ୍ଧି, ବଦ୍ୟା, ଆରୋଗ୍ୟ, ପରାକ୍ରମ, ଧନ, ରାଜ୍ୟ, ସମ୍ପଦ, ଧର୍ମ, ଅର୍ଥ, କାମ, ମୋକ୍ଷ ଇତ୍ୟାଦି ଲାଭ ହୁଏ- ଏଥିରେ ଅନାସ୍ଥା, ଈଶ୍ୱରୋପାସନା ଛାଡ଼ି କାଷ୍ଠ ପାଷାଣାଦ ଜଡ ମୂର୍ତ୍ତିର ଦର୍ଶନ ଓ ପୂଜନ, ମାତା ପିତା, ଅତିଥି, ଆଚାର୍ଯ୍ୟ ଓ ବଦ୍ୱାନ ବ୍ୟକ୍ତିମାନଙ୍କୁ ସତ୍ୟ ଦେବତା ଜ୍ଞାନ ପୂର୍ବକ ସେମାନଙ୍କ ସେବା ସଂସର୍ଗ ନକରିବା, ବର୍ଣ୍ଣାଶ୍ରମ ଧର୍ମ ଛାଡ଼ି ଉର୍ଦ୍ଧ୍ୱ ପୁଣ୍ଡ୍ର, ତ୍ରିପୁଣ୍ଡ୍ର ଇତ୍ୟାଦ ତିଳକ, କଣ୍ଠି ଓ ମାଳା ଧାରଣ କରିବା, ଏକାଦଶୀ ଅମାବାସ୍ୟାଦ ବ୍ରତ ପାଳନ କରିବା, କାଶ୍ୟାଦ ତୀର୍ଥ ଗମନ କରିବା, ରାମ, କୃଷ୍ଣ, ନାରାୟଣ, ଶିବ, ଭଗବତୀ ଇତ୍ୟାଦ

ନାମ ସ୍ମରଣରେ ଦୁଷ୍କୃତ ଖଣ୍ଡନ ଓ ମୁକ୍ତି ଲଭିବାର ଆଶା କରିବା, ପାଷଣ୍ଡ ନାସ୍ତିକ ମାନଙ୍କ ବ୍ୟପଦେଶ ଗ୍ରହଣ କରିବା, ବେଦାଧ୍ୟୟନ ଛାଡି ପୁରାଣାଦି ଶ୍ରବଣରେ ମାତି ରହିବା, ଧନତୃଷ୍ଣାସକ୍ତ ହୋଇ ଏଣେ ତେଣେ ଭ୍ରମଣ କରିବା, ଅତି ଭୋଜନ, ଅତି ଜାଗରଣ ଏବଂ ଆଳସ୍ୟ ପୁଣି ମାତା ପିତା ଅବିଭାବକ ଓ ରାଜା ମାନଙ୍କର ବେଦାଦି ସତ୍ୟ ଶାସ୍ତ୍ର ପ୍ରଚରରେ ଅଶ୍ରଦ୍ଧା-ଏହି ସବୁ ହିଁ ବିଦ୍ୟା ଶିକ୍ଷାର ପ୍ରଧାନ ଅନ୍ତରାୟ । ଛାତ୍ର ଜୀବନରେ ଏହିସବୁ ଦୁର୍ବ୍ୟସନ, କୁଚେଷ୍ଟା, କୁସଂସ୍କାର, ଅନ୍ଧ ବିଶ୍ୱାସ ଓ ବ୍ୟପଦେଶ ପରିତ୍ୟାଗ ନକଲେ ବିଦ୍ୟାଲାଭ ତଥା ଜ୍ଞାନ ପ୍ରାପ୍ତି ଅସମ୍ଭବ । ତୁମ୍ଭେମାନେ ପରୀକ୍ଷୋତ୍ତୀର୍ଣ୍ଣ ହୁଅ, ସ୍କୁଲରେ ପୁରସ୍କାର ପାଅ, ବିଶ୍ୱ-ବିଦ୍ୟାଳୟର ଉଚ୍ଚତମ ଡିଗ୍ରୀ ପାଅ, ଏମ୍-ଆର୍-ଏ-ଏସ୍, ଏ ବି-ସି, ଏକସ୍, ଭିଆଇ, କେଡ୍ ଇତ୍ୟାଦି ଉପାଧି ବିଭୂଷିତ ହୁଅ, ତଥାପି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଅଭାବରେ କଦାପି ପଣ୍ଡିତ ବା ବିଦ୍ୱାନ ହୋଇ ପାରିବ ନାହିଁ ।



# ଏହାକି ବିଶ୍ୱବିଦ୍ୟାଳୟ ଶିକ୍ଷାର ଫଳ ।

ଆମ୍ଭେମାନେ ଏଫ୍. ଏ; ବି. ଏ; ଏମ୍. ଏ; ପାସ କରିବା ଯେ ଯାହା ଦୁଃଖୀ ସୁଖୀ ଠିକରେ ନର୍କି ରହିବା-ଏହାକି ବିଶ୍ୱବିଦ୍ୟାଳୟ ଶିକ୍ଷାର ଫଳ । ଆମ୍ଭେ-ମାନେ ଓକାଲତି କରିବା, ଠିକା ଆଣିବା କିମ୍ବା ଚାକିରି କରିବା ବେତନ ପାଇବା, କିମ୍ବା ବାଣିଜ୍ୟ କରିବା, ଲାଭ ପାଇବା—ଏହିପରି କୌଣସି ଉପାୟ ଦ୍ୱାରା ଧନ ଉପାର୍ଜନ କରି ଯେ ଯାହାର ପତ୍ନୀପାଇଁ ଗୋଟିଏ ମୋତିହାର, ଚନ୍ଦ୍ରହାର ବା ମୋହରମାଳ କରିଦେବା ନତୁବା ଗୋଟାଏ ପକା କୋଠା ତିଆରି କରାଇ ତହିଁରେ ଭୋଗ ବିଳାସ କରିବା ନତୁବା ଯେ ଯାହା ବାଳକ ବାଳିକା ଗୁଡିକୁ ବୃଥା ବିବାହ କରିବାରେ 'ମହତ୍ ମର୍ଯ୍ୟାଦା' ପାଇଁ ଅପରିମିତ ଧନ ବ୍ୟୟ କରିବା, କିଅବା କୌଣସି ପ୍ରକାର ଭୋଗ ନକରି କେବଳ ସଂଗ୍ରହ ପାଇଁ ଧନ ସଂଗ୍ରହ କରିବା ଇତ୍ୟାଦି—ଏହାକି ଏହି ବିଦ୍ୟାଶିକ୍ଷାର ବା ଉପାଧି ପ୍ରାପ୍ତିର ଫଳ ।

ପୁଣି ବିଦ୍ୟା ପଢିଲେ ଧନ ଉପାର୍ଜନ କରିବାକୁ ହେବ ବୋଲି କୌଣସି ଅସଦ୍ ମାର୍ଗ ଅବଲମ୍ବନ କରି ଅର୍ଥ ସଂଗ୍ରହ କରିବା, ଯଥା ରାଜ କର୍ମଚାରୀ ହୋଇ ପ୍ରଜାଙ୍କ ଠାରୁ ଉତ୍କୋଚ ସଂଗ୍ରହ କରିବା, ଫିସ ଅଶାରେ ମିଥ୍ୟା ବା ଅନ୍ୟାୟ ପକ୍ଷର ସମର୍ଥନ ପୂର୍ବକ ଓକାଲତି କରିବା, ଧନାଶାରେ ଧର୍ମ୍ମୀ ବ୍ୟକ୍ତିମାନଙ୍କର

ଖୋସାମଦ, ତୋଷାମଦାଦି ମିଥ୍ୟା ପ୍ରଶଂସା କରିବା, ଲୋକହିତକର ସଦନୁଷ୍ଠାନରୁ କିଛି ଆତ୍ମସାତ୍ କରିବା, ମିଥ୍ୟାର ବିଜ୍ଞାପନ ପ୍ରଚାର କରି ଅଜ୍ଞ, ଅସାବଧାନ ଲୋକ ସାଧାରଣଙ୍କଠାରୁ ଧନ ସଂଗ୍ରହ କରିବା ଇତ୍ୟାଦି—ଏହା କି ଶିକ୍ଷିତ ଲୋକର କର୍ତ୍ତବ୍ୟ ? ନାନାକାରଣ ବଶତଃ ଧନ ଉପାର୍ଜନ କରିବାହିଁ ବିଦ୍ୟା-ଶିକ୍ଷାର ବିଶେଷତ୍ୱ ରୂପେ ଗୃହୀତ ହୋଇଅଛି । ସାଧାରଣ ସ୍କୁଲ୍ ଶିକ୍ଷା ଏବଂ ବିଶ୍ୱ-ବିଦ୍ୟାଳୟ ଉଚ୍ଚଶିକ୍ଷା ମଧ୍ୟରେ ଫଳରେ ପ୍ରଭେଦ ଏହି ଯେ ବି. ଏ. ଉପାଧି-ଧାରୀମାନେ ବେଶି ପରିମାଣରେ ଧନ ସଂଗ୍ରହର ପ୍ରୟାସ କରନ୍ତି ।

ବି. ଏ. ପାସ କରିବା ପରେ ଅନେକେ ଆପଣାକୁ ପୂର୍ଣ୍ଣ ଶିକ୍ଷିତ ମନେ-କରନ୍ତି ଏବଂ ଅବଶିଷ୍ଟ ଜୀବନରେ ଅଧ୍ୟୟନର ଆବଶ୍ୟକତା ଅନୁଭବ କରନ୍ତି ନାହିଁ, ପୁଣି କୌଣସି ବିଷୟର ମୌଳିକ ତତ୍ତ୍ୱାନୁସନ୍ଧାନ ଚିନ୍ତା ମନକୁ ଆଦୌ ଆଣନ୍ତି ନାହିଁ । ଫଳରେ ପୁସ୍ତକ ଅନୁଶୀଳନ ଦ୍ୱାରା ଯେଉଁ ତତ୍ତ୍ୱ ଗୁଡ଼ିକ ଉପଗତ ହୋଇଥାଏ ତାହାସବୁ କ୍ରମଶଃ ମନୋରାଜ୍ୟରୁ ତିରୋହିତ ହୋଇ ପୁସ୍ତକଗତ ହୋଇପଡ଼େ ।

ବିନିମୟ ଦ୍ୱାରା ଲୋକରେ ବିଦ୍ୟାର ବିସ୍ତୃତି ହୁଏ । ଲୋକରେ ଶିକ୍ଷା ବିସ୍ତାର କରିବା ଶିକ୍ଷିତ ବ୍ୟକ୍ତିମାନଙ୍କର ପ୍ରଧାନ କର୍ତ୍ତବ୍ୟ କିନ୍ତୁ ଉପାଧିଧାରୀମାନେ ଅନ୍ୟଦିଗରୁ ଧନାଗମ ଉପାୟ ନଦେଖିଲେ ଶିକ୍ଷକତା କରିବାକୁ ଆସନ୍ତି ଏବଂ ଶିକ୍ଷକତା କରୁ କରୁ ବେଶି ବେତନର ଚାକିରି ଖଣ୍ଡିଏ ଅନୁସନ୍ଧାନ କରୁଥାନ୍ତି, ଅନ୍ୟତ୍ର ବେଶି ଧନ ଆଦାୟର, ପୁଣି କିଛି କ୍ଷମତା ପ୍ରଦର୍ଶନର ସ୍ଥାନ ପାଇବା-ମାତ୍ରେ ବିଦ୍ୟାଳୟ ପରିତ୍ୟାଗ କରନ୍ତି ।

ଏହି ଉଚ୍ଚଶିକ୍ଷା ବା ଉପାଧି ପ୍ରାପ୍ତିପରେ ତ୍ୟାଗ ଧର୍ମକୁ ତ୍ୟାଗ କରିବାକୁ ହୁଏ, ଅନ୍ତତଃ ଉପାର୍ଜନ ଅନୁପାତରେ ତ୍ୟାଗ ସ୍ୱୀକାର କରା ଯାଏନାହିଁ । ବିଶ୍ୱବିଦ୍ୟାଳୟର ବିଶାଳ ଶିକ୍ଷା, ଫଳତଃ ସଂକୀର୍ଣ୍ଣ ସ୍ୱାର୍ଥାବଲମ୍ବନରେ ପରିଣତି ଲାଭକରେ । ଏହାକି ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିଣତି ? ନା ଏହାହିଁ ଉପାଧିର ଉପସର୍ଗ ।

—*—

## ମୁକ୍ତିମଣ୍ଡପ ଓ ପଣ୍ଡିତ ସଭା ।

ପୁରୀର ମୁକ୍ତି ମଣ୍ଡପ, ଏହିନାମ ଶୁଣିବା ମାତ୍ରେ ହୃଦୟଟା ଭକ୍ତିରସରେ ପ୍ଳାବିତ ହୋଇ ପଡ଼େ । ହିନ୍ଦୁ ସାଧାରଣର ଏହିପରି ଏକ ଦୃଢ଼ ଧାରଣା ଅଛି

ଯେ, ମୁକ୍ତିମଣ୍ଡପ ମୂର୍ତ୍ତିମାନେ ଲୋକ ମୁକ୍ତି ଲଭେ । ଏହି ବିଶ୍ୱାସର ବଶୀଭୂତ ହୋଇ ଲୋକେ ମୁକ୍ତି ମଣ୍ଡପର ପଥରରେ ମୁଣ୍ଡିଆ ମାରି ଥାନ୍ତି । ମୁକ୍ତିମଣ୍ଡପର ମହିମା କେଉଁଥିରେ ଅଛି ପୁଣି ଚୂନ ପଥର ନିର୍ମିତ ପିଣ୍ଡାଟି କିପରି ଲୋକଙ୍କୁ ମୁକ୍ତ ଦେଇ ପାରେ, ଏହା ସର୍ବସାଧାରଣ ବୁଝନ୍ତି ନାହିଁ ବା ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ଏହି ମଣ୍ଡପଟି ପୁରୀ ସମୀପସ୍ଥ ୧୬ ଶାସନ ଓ ୩୨ କରବାଡ଼ର ବୈଠକ ସ୍ଥାନ ସ୍ୱରୂପ ବ୍ୟକ୍ତିଗତ ସମ୍ପତ୍ତି ହୋଇ ପଡ଼ି ଅଛି । କେତେ ଜଣ ଆଳସ୍ୟ ପରାୟଣ ଭିକ୍ଷୁକ ବ୍ରାହ୍ମଣ ତହିଁ ଉପରେ ବସି ସାଧାରଣ ଦର୍ଶକ ମାନଙ୍କୁ ଠକି ଭଣ୍ଡି, ମୁଣ୍ଡିଆ ମରାଇ ସେମାନଙ୍କଠାରୁ କିଛି କିଛି ପଇସା ସଂଗ୍ରହ କରୁଥାନ୍ତି । ଏହି ଶାସନୀ ବ୍ରାହ୍ମଣମାନେ କହି ଥାନ୍ତି କି, ଉପରୋକ୍ତ ୧୬ ଶାସନ ୩୨ କରବାଡ଼ ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ କେହି ଯେତେ ପଣ୍ଡିତ ହୁଅନ୍ତୁ ମୁକ୍ତିମଣ୍ଡପ ଉପରେ ବସି ପାରିବେ ନାହିଁ । ମୁକ୍ତ ମଣ୍ଡପର ଏହି ରୀତି ନୀତି ଦେଖିଲେ ଏହା କିପରି ଲୋକଙ୍କୁ ମୁକ୍ତ ଦେଇ ପାରିବ ଜଣା ଯାଉ ନାହିଁ ।

ଆଧୁନିକ ରୀତ୍ୟାନୁସାରେ ନଗରସ୍ଥ ସାଧାରଣଙ୍କ ଉପଯୋଗାର୍ଥେ ଯେରୂପ କ୍ଲବ୍ ଓ ରିଡ଼ିଂରୁମ୍ ପ୍ରଭୃତି ବୈଠକ ଖାନା, ପାଠାଗାର ଓ ଖେଳ ଘର ପ୍ରତିଷ୍ଠିତ ହୋଇ ଥାଏ ତଦ୍ରୂପ ମଫସଲ ଗ୍ରାମ ମାନଙ୍କରେ ମଧ୍ୟ ମଣ୍ଡପ, ଆଖଡ଼ା ଘର ପ୍ରଭୃତି ସାଧାରଣୋପଯୋଗୀ ସ୍ଥାନ ନିର୍ମିତ ହୋଇ ଥାଏ । ଏହି ସ୍ଥାନ ମାନଙ୍କରେ ଗ୍ରାମର ଗଣ୍ୟ ମାନ୍ୟ ବ୍ୟକ୍ତି ମାନେ ବସି ଗ୍ରାମର ମଙ୍ଗଳ ସକାଶେ ବିଚାର କରି ଥାନ୍ତି, ସଭା ସମିତି କରନ୍ତି, ଶାସ୍ତ୍ର ପର୍ଯ୍ୟାଲୋଚନା କରନ୍ତି, ଖେଳ କୌତୁକ କରୁଥାନ୍ତି ଏବଂ ନାନାପ୍ରକାର ଆମୋଦ ପ୍ରମୋଦ ମଧ୍ୟ ଉପଭୋଗ କରୁଥାନ୍ତି । ଏହି ସାଧୁଦେଶ୍ୟ ପୂର୍ବକ ନିର୍ମିତ ସାଧାରଣ ବୈଠକ ସ୍ଥାନର ଅଜ ଅପବ୍ୟବହାର କରା ଯାଉଅଛି । ଏହାସବୁ ଆଜି ଅନେକ ସ୍ଥାନରେ ଅଳସୁଆ ଘରରେ ପରିଣତ ହୋଇଅଛି । ଅଳସୁଆ ଲୋକଙ୍କର ଏହି ଶୁଆ ଘରେ ଦେଖାଯିବ ଯେ କେହି ଶୋଇଥିବ, କେହି ଢୁମାଉଥିବ, କେହି ଶକଟା ବାଘବନ୍ଦି ଖେଳୁଥିବେ, ପୁଣି କେହି କେହି ଚିନ୍ତାଶୂନ୍ୟ ନିଶ୍ଚେଷ୍ଟ ହୋଇ ବସିଥିବେ । ପୁରୀର ମୁକ୍ତମଣ୍ଡପ ମଧ୍ୟ ଏହି ନିୟମରୁ ବାହାର ହୋଇ ନଥାଏ କିନ୍ତୁ ଏତିକି ମାତ୍ର ପ୍ରଭେଦ ଏଠାରେ ଯାଗତା ମାନଙ୍କର ଗୁରୁ ପଇସା ରୋଜଗାର ହୁଏ ।

ସନ୍ତୋଷର ବିଷୟ ଏହିଯେ, ସେଦିନ ପୁରୀଠାରେ ଜଣେ ବନ୍ଧୁଙ୍କଠାରୁ ଶୁଣି ପାରିଲୁଁ କି ଦେଶହିତୈଷୀ କର୍ମବୀର ମାନେଙ୍କର ମହାଶୟଙ୍କ ଯତ୍ନରୁ ଏହି ମୁକ୍ତିମଣ୍ଡପରେ ଗତ ଏକାଦଶୀ ଦିନ ଏକ ସଭାହୁଏ । ଉକ୍ତ ସଭାରେ ସ୍ୱାମୀପୁ

ସଂସ୍କୃତ ପଣ୍ଡିତମାନେ ଯୋଗ ଦେଇଥାନ୍ତି । ତହିଁରେ ଧର୍ମଶାସ୍ତ୍ରାନୁଯାୟୀ ବ୍ୟବସ୍ଥା ଦିଆଯାଏ । କିନ୍ତୁ ଦୁଃଖର ବିଷୟ ଏହି ଯେ, ଏହି ବ୍ୟବସ୍ଥା ଗୁଡିକ ଅସାମାନ୍ୟ ନିରର୍ଥକ ବିଷୟରେ ସୀମାବଦ୍ଧ ହୋଇଥାଏ । ଅମୁକ ଦିନ ତିଥି ପଞ୍ଚମୀ ବା ଷଷ୍ଠୀ, ଅମୁକ ଦିନରେ ଅମାବାସ୍ୟା ଟିକିଏ ଦଣ୍ଡଅଛି, ଚୈତ୍ର କିମ୍ବା ବୈଶାଖ ଅଧିମାସ ହେବ, ଅମୁକ ଓଷାରେ ଚଡ଼ା ଚକଟା ଖାଇବ, ନଡ଼ିଆ ଛେନା ଗୁଡ଼ ଖାଇବ, କେତେଦିନ ଅଶୌଚ ବାଧା ରହିବ, କେଉଁଦିନ ପିଠା ଖାଇବ, କେଉଁ-ଦିନ ଶୁଦ୍ଧହେବ,—ଏହିପରି ନିରର୍ଥକ ବିଷୟରେ ତର୍କ ବିତର୍କ କରି ବ୍ୟବସ୍ଥା ଦିଆଯାଏ । ଏହି କଥା ଗୁଡିକର ମୀମାଂସାରେ ଦେଶର ବା ଜାତିର କି ଉନ୍ନତି ସାଧିତ ହୋଇଅଛି ଜଣା ଯାଉନାହିଁ । ଭାରତୀୟ ଜାତି ମାନଙ୍କର ଅବନତିର କାରଣ କଣ, ଦେଶର ଅଭାବ କଣ, ପୂର୍ବ ରୀତି ନୀତି କିପରି ଥିଲା, ବର୍ତ୍ତମାନ କିପରି ଅଛି, ଦେଶ କାଳ ପାତ୍ର ଭେଦରେ ପ୍ରଚଳିତ ରୀତି ନୀତିର କେତେଦୂର ପରି-ବର୍ତ୍ତନ କରି ଯାଇପାରେ—ଏହି ବିଷୟ ଗୁଡିକ ନେଇ ନାନା ଶାସ୍ତ୍ର ପର୍ଯ୍ୟାଲୋଚନା ପୂର୍ବକ ବ୍ୟବସ୍ଥା ପ୍ରଦାନ କରାଗଲେ ଦେଶର ସୁଫଳ ହୁଅନ୍ତା ଏବଂ ଜାତିର ଉନ୍ନତି ସାଧିତ ହୁଅନ୍ତା । ତେବେ ଯାଇ ମୁକ୍ତି ମଣ୍ଡପର ମହିମା ପ୍ରକାଶ ପାଆନ୍ତା ।

ଆଉ ଗୋଟିଏ କଥା-ସେଦିନ ଯାଇ ଦେଖିଲୁଁ ଯେ ମୁକ୍ତିମଣ୍ଡପ ସକାଶେ ଗୋଟିଏ ପାଠାଗାର ପ୍ରତିଷ୍ଠିତ ହୋଇଅଛି । ତହିଁରେ ଓଡ଼ିଆ, ନାଗରୀ ଓ ବଙ୍ଗଳା ଲିପିରେ ଲିଖିତ କେତେଖଣ୍ଡ ସ୍ମୃତି, ପୁରାଣ ପ୍ରଭୃତି ଧର୍ମଶାସ୍ତ୍ର ପୁସ୍ତକ ରଖା-ଅଛି । ସେଠାରେ ମୋହର ଜଣେ ବନ୍ଧୁ ମୋତେ ଖଣ୍ଡିଏ ଛପା ନୋଟିସ୍ ଦେଇ ଥିଲେ । ତହିଁରେ ବୋଧହୁଏ, ଲେଖକ ମାନଙ୍କୁ ସ୍ୱପ୍ରଣୀତ ପୁସ୍ତକ ମାନଙ୍କରୁ ଉକ୍ତ ପାଠାଗାର ସକାଶେ ଖଣ୍ଡିଏ ଲେଖାଏ ପୁସ୍ତକ ଦେବାକୁ ଅନୁରୋଧ କରା ଯାଇଅଛି । କିନ୍ତୁ ମୁକ୍ତିମଣ୍ଡପ ସଭାର ଆଲୋଚିତ ବିଷୟ ଓ ପ୍ରଦତ୍ତ ବ୍ୟବସ୍ଥା ଦେଖିଲେ ପୁରାତନ ସ୍ମୃତି ଗ୍ରନ୍ଥାବଳୀ ବ୍ୟତୀତ ଅନ୍ୟାନ୍ୟ ପୁସ୍ତକର ଆବଶ୍ୟକତା ଦେଖାଯାଏ ନାହିଁ । ବିଦ୍ୟାସାଗରଙ୍କ ବିଧବା ବିବାହ ବିଚାର, ରିପୁଙ୍କର କଳିକାଳ ନାଟକ, ବା କବିବରଙ୍କର ଯଯାତି କେଶରୀ ପ୍ରଭୃତି ପୁସ୍ତକ ମାନଙ୍କର କୌଣସି ପ୍ରୟୋଜନ ନାହିଁ । ଏହିପରି ସଭା ସମିତି ଦ୍ୱାରା ଯେ ଭାରତର ପୁନରୁତ୍ଥାନ ହେବ ଏହା ମୋହର କ୍ଷୁଦ୍ର ବିଚାରରେ ବିଡମ୍ବନା ମାତ୍ର । ଏହାଦ୍ୱାରା ହିନ୍ଦୁ ମାନଙ୍କର, ବିଶେଷତଃ ଶାସନୀ ବ୍ରାହ୍ମଣ ମାନଙ୍କର କୁସଂସ୍କାର କେବଳ ଦୃଢ଼ତର ହୋଇ ଉଠିବାର ଖୁବ୍ ସମ୍ଭାବନା ।



# ପଣ୍ଡିତ ।

ଶାସ୍ତ୍ରାଲୋଚନାରେ ବୁଦ୍ଧି ଯେଉଁମାନଙ୍କର ଥାଏ ସେମାନଙ୍କୁ ପଣ୍ଡିତ କହନ୍ତି । ସକଳ ଶାସ୍ତ୍ର ସଂସ୍କୃତ ଭାଷାରେ ଲିଖିତ ଓ ପଠିତ ହୁଏ । ଏହେତୁ ଶାସ୍ତ୍ର ଶିକ୍ଷା କରିବାକୁ ହେଲେ ସଂସ୍କୃତ ଭାଷା ଜାଣିବା ଆବଶ୍ୟକ ହୁଏ । ଶାସ୍ତ୍ରରେ ନୈପୁଣ୍ୟ ବା ପ୍ରତିଭା ନଥିଲେହେଁ ସଂସ୍କୃତ ଭାଷା ଜ୍ଞାନ ମାତ୍ରେ ଅନେକେ ପଣ୍ଡିତମ୍ମନ୍ୟ ହୋଇ ବାହାରନ୍ତି । ଆଜି କାଲି ପଣ୍ଡିତ ନାମରେ ଏକଜାତି ବାହାରି ଅଛନ୍ତି । ଏମାନେ ସାଧାରଣତଃ ଚିକିତ୍ସା ଦ୍ୱାରା ଜୀବିକା ନିର୍ବାହ କରନ୍ତି । ବୋଧହୁଏ, ବୈଦ୍ୟଶାସ୍ତ୍ରରେ ନୈପୁଣ୍ୟ ଲାଭ କରିଥିଲେ ବୋଲି ଏମାନେ ପଣ୍ଡିତ ନାମରେ ଖ୍ୟାତ ହୋଇଥିଲେ, କିନ୍ତୁ କାଳକ୍ରମେ ବୈଦ୍ୟଶାସ୍ତ୍ର ଜ୍ଞାନ କାହିଁ ଗଲା, ପଣ୍ଡିତ ନାମ ମାତ୍ର ରହିଗଲା । ଆଜି ସେହି ପଣ୍ଡିତ ପଦବୀ ଏକ ଜାତି ନାମରେ ଅଭିହିତ ହୋଇଅଛି । ତଦ୍ରୂପ ଶାସ୍ତ୍ରଜ୍ଞାନ ନଥିଲେହେଁ ବ୍ୟାକରଣର ପଦ ସାଧନରୁ କିଛି ଜାଣି, ଅଭିଧାନରୁ କେତେ ବର୍ଗ ଘୋଷି ପାଠିଆ କରିଦେଇ କାବ୍ୟରୁ କିଛି ପଢ଼ି ଶୁଣି ଦେଇଦେବା ମାତ୍ରେ ଲୋକେ ପଣ୍ଡିତ ବୋଲି ଯାଇଅଛନ୍ତି ।

ରୋମନ କେଥୋଲିକ ଖ୍ରୀଷ୍ଟିୟାନ ମାନଙ୍କ 'ପୋପ ଯେପରି କାହାକୁ ପାପ ବିମୁକ୍ତ କରି ସ୍ୱର୍ଗ ରାଜ୍ୟକୁ ପଠାଇ ଦିଅନ୍ତି, କାହାକୁ ବା ଅଭିଶାପ ଦେଇ ଅନନ୍ତ ନରକ ନିବାସ ଆଦେଶ ଦିଅନ୍ତି, ସେହିପରି ଆମ୍ଭ ଦେଶର ରାଜାମାନେ ଏହି ପଣ୍ଡିତମ୍ମନ୍ୟ ମାନଙ୍କ ମଧ୍ୟରୁ କାହାକୁ ବିଦ୍ୟାସାଗର, କାହାକୁ ସାହିତ୍ୟ ବିଶାରଦ, କାହାକୁ ଭାରତୀ ଭୂଷଣ କରି ଦେଇଥାନ୍ତି । ଏହି ପଣ୍ଡିତ ମାନଙ୍କର ପାଣ୍ଡିତ୍ୟ କୌଣସି ହେତୁ ରାଜା କର୍ତ୍ତୃକ ପ୍ରତିଷ୍ଠିତ ହୋଇଥାଏ, ପୁଣି କେହି କେହି ରାଜାମାନେ ମଧ୍ୟ ଏହିପରି ପଦବୀ ବଣ୍ଟନ ଦ୍ୱାରା ଅର୍ଥ ସଂଗ୍ରହ କରିଥାନ୍ତି । ଏହି ପଣ୍ଡିତମ୍ମନ୍ୟ ମାନଙ୍କ ମଧ୍ୟରେ ସ୍ଥାନେ ସ୍ଥାନେ ପ୍ରକୃତ ପଣ୍ଡିତ ଦେଖାଯାଆନ୍ତି । କିନ୍ତୁ ଏମାନେ ମଧ୍ୟ ରାଜ ଦ୍ୱାରରେ କୁଣ୍ଠିତ ସକାଶେ ଲାଞ୍ଛିତ । ନାମଧାରୀ ପଣ୍ଡିତଙ୍କ କଥା ଦୂରେ ଥାଉ ପ୍ରକୃତ ପଣ୍ଡିତମାନେ ମଧ୍ୟ ଆପଣାର ଜୀବିକା ନିର୍ବାହ ସକାଶେ କିଛି ବାର୍ଷିକ ପାଇଁ ରାଜ ଦ୍ୱାରେ ଅବଦ୍ଧ ଥାନ୍ତି, କିଛି ଟଙ୍କା ସକାଶେ ନିଜର ପାଣ୍ଡିତ୍ୟ ବିକ୍ରୟ କରି ଦେଇଥାନ୍ତି । ରାଜା କାଳେ ଅସାଧ୍ୟ, ଅସଙ୍ଗତ ବା ଅଯୌକ୍ତିକ କଥା କହିଲେହେଁ ପଣ୍ଡିତ ମହାଶୟ ତାହା ସମର୍ଥନ କରିବେ, ନଚେତ୍ ପଣ୍ଡିତଙ୍କୁ ତହିଁ ଅରନ୍ଦନ ଦ୍ୱାରମନା ହୋଇପାରେ । ଏହିପରି ଅନେକ ପଣ୍ଡିତ ଏକ ରାଜଧାନୀ ପରିତ୍ୟାଗ କରି ଅନ୍ୟ ରାଜଧାନୀରେ ଆଶ୍ରୟ ଗ୍ରହଣ କରିଥାନ୍ତି । ବୋଧହୁଏ ପଣ୍ଡିତ-

ମାନେ ବନ୍ଦୀ ରାଜାଶ୍ରୟରେ ରହି ପାରନ୍ତି ନାହିଁ । ଯେଉଁ ସ୍ୱାଧୀନତା ଭୋଗ-କରିବା ପାଇଁ ପାଣ୍ଡିତ୍ୟ ସମ୍ପାଦନ କରାଯାଇ ଥାଏ, ଏବେ ସେହି ପାଣ୍ଡିତ୍ୟ ହେତୁ ଅମୂଲ୍ୟ ସ୍ୱାଧୀନତା ହରାଇବାକୁ ପଡୁଅଛି । ରାଜାଙ୍କ ହାତୀଶାଳାରେ ଯେପରି କେତେଗୋଟା ଗଜ ବନ୍ଧା ଯାଇଥାଏ, ସେମାନଙ୍କର କୌଣସି ପ୍ରୟୋଜନ ନଥାଏ, ଯେହେତୁ ରାଜାମାନଙ୍କୁ କେବେ ଯୁଦ୍ଧ କରିବାକୁ ପଡେନାହିଁ କିମ୍ବା ସେମାନଙ୍କୁ ଦେଶ ରକ୍ଷା ସକାଶେ ଦେଶ ଦେଶାନ୍ତରେ ଭ୍ରମଣ କରିବାକୁ ପଡେନାହିଁ । ରାଜାମାନଙ୍କରତ ଅନ୍ତଃପୁର ନିବାସ ଓ "ରାଜଗାଡି" କାର୍ଯ୍ୟନାମର ଧନଯାଏ; ସେମାନଙ୍କୁ ବହିର୍ଜଗତରେ ବୁଲିବାକୁ ଆଉ ଅବସର କାହୁଁ ଥାଏ ? ପଣ୍ଡିତମାନେ ମଧ୍ୟ ଗଜ-ମୂର୍ଖ ପରି ରାଜ ଦ୍ୱାରେ ଆବଦ୍ଧ ଥାନ୍ତି । ଅହା, ଧନ ଲୋଭରେ କି ଅମୂଲ୍ୟ ସ୍ୱାଧୀନତା, କି ଉପାଦେୟ ପାଣ୍ଡିତ୍ୟ ହରାଇବାକୁ ପଡୁଅଛି ।

ପଣ୍ଡିତମାନେ କଣ ସ୍ୱାଧୀନ ବୃତ୍ତିଦ୍ୱାରା ନିଜର ଜୀବିକା ନିର୍ବାହ କରି-ପାରିବେ ନାହିଁ ? ପଣ୍ଡିତ ଜନ ସର୍ବତ୍ର ପୂଜିତ ହୁଅନ୍ତି, ରାଜା କେବଳ ନିଜରାଜ୍ୟରେ ପୂଜା ପାଆନ୍ତି- ଏହି ନୀତିବାକ୍ୟ କଣ ମିଥ୍ୟା ହେବ ? ପଣ୍ଡିତମାନେ ନିଜ ପାଣ୍ଡିତ୍ୟ ଉପରେ ନିର୍ଭର କରି ସ୍ୱାଧୀନ ବୃତ୍ତି ଅବଲମ୍ବନ କଲେ ଏମାନେ କେତେଗଣ୍ଡା ରାଜାଙ୍କୁ ଆପଣା ଦ୍ୱାରରେ ଜଗାଇ ରଖି ପାରନ୍ତି । ଅଳଙ୍କାର ବିଭୂଷିତା ବାରବନିତାକୁ ଦେଖି କୁଳାଙ୍ଗନାକି ଆପଣାକୁ ତୁଚ୍ଛ ଜ୍ଞାନ କରେ ? କେହି ପଣ୍ଡିତ ଜନ ଧନାଶାରେ ରାଜ ଦ୍ୱାରେ ଗଜମୂର୍ଖପରି ଆବଦ୍ଧ ରହିବାକୁ ଇଚ୍ଛା କରିବେ ?

——o——

## କାବ୍ୟତୀର୍ଥ ପରୀକ୍ଷା ।

ସଂସ୍କୃତ ଶିକ୍ଷା ଦିଆଯାଉ, ନାନା ସ୍ଥାନରେ ଟୋଲ୍ ସ୍ଥାପିତ ହେଉ ବୋଲି କେହି କେହି ଚିତ୍କାର କରୁଥାନ୍ତି । ଏହି ଶିକ୍ଷା ପ୍ରଣାଳୀରୁ, ଏହି ଉପାଧିରୁ କି ଉପ-କାର ହୁଏ ଜଣା ଯାଏ ନାହିଁ । ଏମାନଙ୍କର ସମସ୍ତ ଶିକ୍ଷା ଅସମ୍ପୂର୍ଣ୍ଣ ଏବଂ ଏକଦେଶ ଦର୍ଶୀ । ଏମାନେ ଗଣିତ, ଇତିହାସ, ଭୂଗୋଳ, ବିଜ୍ଞାନ କିଛି ଶିଖନ୍ତି ନାହିଁ; ଓଡିଆ ସାହିତ୍ୟ ଜାଣନ୍ତି ନାହିଁ ଏବଂ ତାହା ପ୍ରତି ବୈଶାଚିକ କରିଥାନ୍ତି । ଏହାକୁ କି କହି ସଂସ୍କୃତ ଶିକ୍ଷା ?

ଜଣେ ସାଟଟିକଥା ପଣ୍ଡିତ କହିଥିଲେ ବ୍ୟାକରଣ ଅଟେ ବ୍ୟାଧି କରଣ ଏବଂ କାବ୍ୟ ହୁଏ ପୋଇଲି ମାଇପର ପାଠ । ଏହି ବ୍ୟାକରଣ ଓ କାବ୍ୟ ପାଠୀମାନଙ୍କ

ମଧ୍ୟରେ ଅନେକେ କହିଥାନ୍ତି ଯେ, ବ୍ୟାକରଣ ଦେହରୁ ଭାଷାର ଉତ୍ପତ୍ତି । ଏହିପରି ବ୍ୟାକରଣ ବେତ୍ତାମାନଙ୍କର ଧାରଣା ଯେ, ସୂର୍ଯ୍ୟଦେବ ଏକ ଚକ୍ର ରଥ ଚଢି ଭୋର ସଜରୁ ବା ବଡ଼ି ସକାଳୁ ଉଠି ପୃଥିବୀକୁ ନିତ୍ୟ ଥରେ ପ୍ରଦକ୍ଷିଣ କରି ସନ୍ଧ୍ୟାବେଳକୁ ମା କୋଳକୁ ଫେରିଯାନ୍ତି । ଗ୍ରହଣ କାଳେ ଗାଧୋଇ ସାରି ସୂତ୍ରଗୁଚ୍ଛଧାରୀ ବ୍ରାହ୍ମଣ ମାନଙ୍କୁ କିଛି ଗୃହଜାତ ପଇସା ଦେଲେ ରାକ୍ଷସ କବଳରୁ ସୂର୍ଯ୍ୟଦେବ ରକ୍ଷା ପାନ୍ତି ଇତ୍ୟାଦି ।

ଆଧୁନିକ ପ୍ରଣାଳୀରେ ଶିକ୍ଷା ଦିଆ ଯାଉଥିବା ସ୍କୁଲ ମାନଙ୍କରେ ଓଡ଼ିଆ ବା ଇଂରାଜୀ ବିଦ୍ୟାଳୟ ମାନଙ୍କରେ ଏମାନଙ୍କୁ ପଣ୍ଡିତ ପଦରେ ନିଯୁକ୍ତ କରିବା ଦ୍ୱାରା କୌଣସି ଉପକାର ହୁଏ ନାହିଁ, ବରଂ କ୍ଷତି ହୁଏ । ଏହି ଶ୍ରେଣୀର ଜଣେ ପଣ୍ଡିତ ସ୍ୱୀମଣ୍ଟକୁ ଭ୍ରମ ମଣ୍ଟିବା ଅର୍ଥ କରି ସେ ଦିନ ଆପଣା ଛାତ୍ରମାନଙ୍କୁ କହିଥିଲେ ।

ଏମାନଙ୍କର ସ୍ଥାନ ପୃଥକ ନିର୍ଦ୍ଦିଷ୍ଟ ଅଛି, ଯହିଁରେ ଏମାନେ ସହଜରେ ସ୍ୱାର୍ଥ ସିଦ୍ଧି ଲାଭ କରି ପାରିବେ । ରାଜାମାନଙ୍କର ପଣ୍ଡିତ ସଭା ଏବଂ ବୈଠକ ଖାନା ଏ ମାନଙ୍କର ଉପଯୁକ୍ତ ସ୍ଥାନ । ସେଠାରେ ଏମାନେ ଆପଣାର ଅଭିଳାଷ ପୂର୍ଣ୍ଣ କରି ପାରିବେ, ଖ୍ୟାତି ଏବଂ ସମ୍ପତ୍ତି ଲାଭ କରି ପାରିବେ । ଶୃଙ୍ଗାର ରସ ପ୍ରସବିନୀ କବିତା ରାଜ ରସିକତା, ମିଥ୍ୟା ସ୍ତୁତିଗର୍ଭ ପ୍ରଗଲ୍‌ଭତା, ଏହି ସକଳ ରାଜସଭା ସୁଲଭ ସୌଭାଗ୍ୟ ଆଧୁନିକ ଶୁଷ୍କ ଶିକ୍ଷାଳୟରେ କାହିଁ ପ୍ରାପ୍ତ ହେବ ? ଜନୈକ କାବ୍ୟତୀର୍ଥ ସ୍କୁଲ ପଣ୍ଡିତ ଙ୍କର ନୈତିକ ସାହସ ଦେଖନ୍ତୁ-ସେ ଦିନ ଯୁବତୀ ବିବାହ ଆଇନ ସମ୍ବନ୍ଧରେ ମତ ସଂଗ୍ରହ କରିବା ପାଇଁ ଗୋଟିଏ ସଭା ହୋଇଥିଲା । ଜଣେ କାବ୍ୟତୀର୍ଥ ପଣ୍ଡିତ ସଭାରେ ବିଳମ୍ବରେ ଉପସ୍ଥିତ ହେଲେ । ସେତେବେଳକୁ ବହୁ ଲୋକଙ୍କ ସପକ୍ଷ ମତ ନିଆଯାଇ ସାରିଲାଣି । ପଣ୍ଡିତ ମହାଶୟ ଏ କଥା ବୁଝିପାରି ନଥିଲେ, ଯୁବତୀ ବିବାହ ବିପକ୍ଷରେ ମତ ଦେଲେ, ପଛେ ବୁଝି ପାରିଲେ ଯେ, ପ୍ରାୟ ସମସ୍ତ ଉପସ୍ଥିତ ସଭ୍ୟମାନେ ସପକ୍ଷ ମତ ଦେଇ ଅଛନ୍ତି । ସଭା ଭଙ୍ଗ ହେଲା ପରେ ବିରୁଦ୍ଧ ମତ ପ୍ରକାଶ କରିଥିବା ପାଇଁ ପଣ୍ଡିତ ମହାଶୟ ଦୁଃଖିତ ହେଲେ । ସେ କହିଥିଲେ ଯେ, ବହୁଲୋକେ ଏବଂ ବଡ ବଡ଼ ଲୋକେ ଅନୁକୂଳ ମତ ଦେଇଥିବା କଥା ସେ ଜାଣି ପାରିଥିଲେ କଦାପି ବିରୁଦ୍ଧ ମତ ଦେଇ ନଥାନ୍ତେ ।

ଅନେକ ଇଂରାଜୀ ଶିକ୍ଷିତ ପଣ୍ଡିତ ମାନଙ୍କର ଶିକ୍ଷକତା ନିର୍ଦ୍ଦୋଷ ବୋଲା ଯାଇ ପାରେ ନାହିଁ । ଏଫ. ଏ; ବି. ଏ. ଏବଂ ଏମ. ଏ. ଇତ୍ୟାଦି ଉପାଧିଧାରୀ ଇଂରାଜୀ ପଣ୍ଡିତମାନେ ଯେପରି ଶିକ୍ଷକତାକୁ ଦିନ କେତେ ସକାଶେ ଆପଣାର ସ୍ୱାର୍ଥାଭିସନ୍ଧି ମନ୍ଦିରର ପାବଚ୍ଛ ରୂପେ ବ୍ୟବହାର କରି ଥାନ୍ତି, ସେହିପରି ଏହି କାବ୍ୟତୀର୍ଥ ପଣ୍ଡିତ

ମାନେ ଶିକ୍ଷକତାକୁ ଆଜୀବନ ଏକ ପ୍ରକାର ଅର୍ଥକରୀ ବ୍ୟବସାୟ ରୂପେ ଗ୍ରହଣ କରି-ବାକୁ ଚାହାନ୍ତି । ଶିକ୍ଷା, ସଭ୍ୟତା, ସଚ୍ଚରିତ୍ରତା ଏବଂ ମନୁଷ୍ୟତା ପ୍ରତି ଏହି ଶିକ୍ଷକ ମାନଙ୍କର ଲକ୍ଷ ରହେ ନାହିଁ ।

ଏଥିରୁ ବୁଝିବାକୁ ହେବ ନାହିଁ ଯେ, କାବ୍ୟତୀର୍ଥ, କାବ୍ୟ ବିଶାରଦ ପ୍ରଭୃତି ଉପାଧିଧାରୀ ମାନେ ସମସ୍ତେ ଅନଭିଜ୍ଞ ବା ଶିକ୍ଷକତା କରିବାକୁ ଅନୁପଯୁକ୍ତ । ମୁଁ ଜଣେ ବି. ଏ. ଉପାଧି ବାଲା । କିନ୍ତୁ ମୁଁ ଜାଣେ ମୁଁ ପ୍ରକୃତ ବି. ଏ. ହୋଇ ପାରି ନାହିଁ । ତେବେ କଣ ବି. ଏ; ଏମ. ଏ. ଉପାଧିଧାରୀ ମାନଙ୍କ ମଧ୍ୟରେ ପ୍ରକୃତ, ଅଭିଜ୍ଞ, ଉପଯୁକ୍ତ ଲୋକ ନାହାନ୍ତି ? ସେହିପରି କାବ୍ୟତୀର୍ଥାଦି ମାନଙ୍କ ମଧ୍ୟରେ ସୁଦ୍ଧା ଅନେକ ଯୋଗ୍ୟ ପାତ୍ର ଅଛନ୍ତି ।

ଯଦିଚ ନିତାନ୍ତ ଦରକାର ହୁଏ, ତେବେ ଏହି କାବ୍ୟତୀର୍ଥମାନଙ୍କୁ ବିଦ୍ୟାଳୟ ମାନଙ୍କରେ ଶିକ୍ଷକ ନିଯୁକ୍ତ କରିବା ପୂର୍ବେ ଏମାନଙ୍କୁ କିଛି କାଳ ଗୁରୁ ଟ୍ରେନିଂ ଦେବା ଉଚିତ ।

---

## ଜାତୀୟ ଜୀବନରେ ଶିକ୍ଷକତା ।

ସକଳ ଦେଶରେ ଶିକ୍ଷାହିଁ ସକଳ ପ୍ରକାର ଉନ୍ନତିର ମୂଳ କାରଣ । ଶିକ୍ଷା ବିଭାଗହିଁ ଦେଶର ପରମ ବ୍ରହ୍ମଚର୍ଯ୍ୟାଶ୍ରମ । ମନୁଷ୍ୟତା ଲାଭ କରିବାକୁ ହେଲେ ପ୍ରାଣୀ-ମାନଙ୍କୁ ଏହି ଆଶ୍ରମରୁ ଉତ୍ତୀର୍ଣ୍ଣ ହେବାକୁ ହେବ । ପୁତ୍ର କନ୍ୟାମାନଙ୍କୁ ପିତା ମାତା ଜନ୍ମ ଦେଇଥାନ୍ତି ମାତ୍ର, କିନ୍ତୁ ଶିକ୍ଷା ଗୁରୁମାନେ ସନ୍ତାନମାନଙ୍କୁ ମନୁଷ୍ୟତା ପ୍ରଦାନ କରନ୍ତି । ଶିକ୍ଷାବିଭାଗ ଯେପରି ପରମ କଲ୍ୟାଣକର ଅନୁଷ୍ଠାନ, ଶିକ୍ଷକମାନେ ତଦ୍ରୂପ ନିସ୍ପୃହ, ନିରହଂକାରୀ, ସ୍ୱାର୍ଥତ୍ୟାଗୀ ଏବଂ ପରାର୍ଥ ପରାୟଣ । ଯେଉଁ ଦେଶରେ ଶିକ୍ଷା ବିଭାଗର ସୁବନ୍ଦୋବସ୍ତ ଏବଂ ସୁପରିଚାଳନ ନାହିଁ, ଯେଉଁ ଦେଶର କୃତୀ ସନ୍ତାନ ମାନେ ଶିକ୍ଷକତା ପ୍ରତି ଆଦର କରନ୍ତି ନାହିଁ ସେହି ଦେଶର ଉନ୍ନତି ସୁଦୂର ପରାହତ । ରାଜନୈତିକ ଓଡ଼ିଶାରୁ ଗଞ୍ଜାମ ବିଚ୍ଛିନ୍ନ ହୋଇ ବିଜାତୀୟ ସଂସର୍ଗରେ ଆସିବା ଦିନୁ ଗଞ୍ଜାମର ଶିକ୍ଷା ପ୍ରଦାନ ପ୍ରଣାଳୀ ଗଞ୍ଜାମବାସୀ ଉତ୍କଳୀୟ ମାନଙ୍କର ବିଦ୍ୟୋନ୍ନତିର ଅନୁକୂଳ ହୋଇ ପାରିଲା ନାହିଁ । ସୁତରାଂ ଦକ୍ଷିଣ ଓଡ଼ିଶା ( ଗଞ୍ଜାମର ) ଓଡ଼ିଆ ମାନେ ପ୍ରତିବେଶୀମାନଙ୍କ ସହିତ ପ୍ରତିଯୋଗିତା କରି ନପାରି ସର୍ବାଂଶରେ ପଶ୍ଚାତ୍ପଦ ହୋଇ ରହିଲେ ।

ଏହି ମାତୃ ଭୂମି ଓ ମାତୃ ଭାଷାର ନୈସର୍ଗିକ ସମ୍ବନ୍ଧରେ ବିଚ୍ଛେଦ ସାଧନ କରିବା କାହାର ଅଦୃତ୍ତ ନାହିଁ । ରାଜନୈତିକ ଓଡ଼ିଶା ଅଞ୍ଚଳରୁ ଅବଧାନମାନେ ଆସି ଗଞ୍ଜାମରେ ଗୃହଶାଳୀ ସ୍ଥାପନ କରି ଶିକ୍ଷକତା କଲେ । ଏମାନେ ନିଜେ ଅଶିକ୍ଷିତ ବା ଅର୍ଦ୍ଧ ଶିକ୍ଷିତ ହେବା ହେତୁ ଛାତ୍ରମାନଙ୍କୁ ପ୍ରକୃତ ଶିକ୍ଷା ଦେଇ ପାରନ୍ତି ନାହିଁ । ଗହଳ ଗୋରୁମାନଙ୍କୁ ଖୋଠରେ ଅଗୁଳି ରଖିବା ନ୍ୟାୟ ଅବଧାନମାନେ ଗୃହ-ଶାଳୀରେ ପିଲାମାନଙ୍କୁ ଅଟକ ରଖନ୍ତି, ପୁଣି ଭୟପ୍ରଦର୍ଶନ ଓ ବେତ ପ୍ରହାର ପୂର୍ବକ ଗଣିତ ଶାସ୍ତ୍ରର କେତେ ଗୋଟା ମୂଳସୂତ୍ର ପୁଣି କେତେ ଗୋଟା ଗୀତ ବା ଶ୍ଳୋକ ଏମାନଙ୍କର କଣ୍ଠାଧଃକରଣ କରାଇ ଦିଅନ୍ତି । ସେ ଯାହାହେଉ, ଏହି ଅବଧାନମାନଙ୍କ ଦ୍ୱାରା ଦେଶରେ ପ୍ରକୃତ ଶିକ୍ଷାର ବିସ୍ତାର ନହେଲେହେଁ ପିଲାମାନେ ଅଙ୍କ କଷିବା ଏବଂ କୋଇଲି ଗୋପୀଭାଷା ପଢ଼ି ପାରିବା ଇତ୍ୟାଦି କିଛି ପ୍ରାଥମିକ ଶିକ୍ଷା ଲାଭ କରନ୍ତି ।

ଦେଶର ଅବସ୍ଥା ସମାଜର ଗତି ମତିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଶିକ୍ଷା ପ୍ରଣାଳୀ ଓ ସଭ୍ୟତାର ପରିବର୍ତ୍ତନ ଘଟିଅଛି । ଦେଶର ବର୍ତ୍ତମାନ ଅବସ୍ଥାରେ ନାନା ସ୍ଥାନରେ ସ୍କୁଲ ସ୍ଥାପିତ ହେବା ଏକାନ୍ତ ଆବଶ୍ୟକ । ବିଦ୍ୟାଳୟ ସ୍ଥାପନ କରି ତାହାର ଉନ୍ନତି ସାଧନ କରିବାପାଇଁ ଆମ୍ଭମାନଙ୍କର ଚିନ୍ତା ନାହିଁ କିମ୍ବା ସମ୍ବଳ ନାହିଁ । ଆମ ଦେଶଟା ଦରିଦ୍ର, ପୁଣି ଧନ କୁବେରମାନେ ଯଥାଶକ୍ତି ବ୍ୟୟ କରନ୍ତିନାହିଁ । ଯେତେ ଅପବ୍ୟୟ କରନ୍ତି ତେତେ ସଦ୍‌ବ୍ୟୟ କରନ୍ତିନାହିଁ । ସୁତରାଂ ଆବଶ୍ୟକୀୟ ବିଦ୍ୟା-ଳୟମାନ ସ୍ଥାପିତ ହୋଇପାରୁନାହିଁ । ଚିନ୍ତାଶୀଳ ଦେଶହିତୈଷୀ ବ୍ୟକ୍ତିମାନେ ଧନା-ଭାବ ପୂରଣ କରିବାପାଇଁ ବ୍ୟତିବ୍ୟସ୍ତ ଥିଲେ, ବର୍ତ୍ତମାନ ସୁଦ୍ଧା ଅଛନ୍ତି । ସେତେବେଳେ ଅନ୍ୟ ଅଭାବର ପ୍ରାଦୁର୍ଭାବ ଘଟିଅଛି । ଆମ୍ଭମାନଙ୍କର ସୁସଭ୍ୟ ଗଭର୍ଣ୍ଣମେଣ୍ଟ ସ୍କୁଲ ସ୍ଥାପନ କରିବାକୁ ବସିଅଛନ୍ତି । କିନ୍ତୁ ଧନାଭାବ କିଛିହିଁ ପୂରଣ ହେଲେସୁଦ୍ଧା ବର୍ତ୍ତ-ମାନ ଜନାଭାବ ଉପସ୍ଥିତ । କେବଳ ଓଡ଼ିଆମାନଙ୍କ ପାଇଁ ଗଞ୍ଜାମର ଉତ୍ତରାଞ୍ଚଳ ରସୁଲକୁଣ୍ଡା ଠାରେ ଗଭର୍ଣ୍ଣମେଣ୍ଟ ହାଇସ୍କୁଲ ସ୍ଥାପନ କଲେ । କିନ୍ତୁ ଶିକ୍ଷକାଭାବରୁ ଉକ୍ତ ସ୍କୁଲ ପରିଚାଳିତ ହୋଇପାରୁ ନାହିଁ ।

ଶିକ୍ଷକ ହେବାକୁ କେହି ଚାହାନ୍ତି ନାହିଁ । ଯେହେତୁ ଶିକ୍ଷକତାରେ ବହୁ ଉପାର୍ଜ୍ଜନ ହୋଇ ପାରେନାହିଁ, ଉଚ୍ଚୋଦ୍ଦେଶ୍ୟ ଅତ୍ୟାଚାର ପାଇଁ ଅବକାଶ ନଥାଏ । ପୁଣି କ୍ଷମତା ପ୍ରଦର୍ଶନ ପୂର୍ବକ ନିଜଠାରେ ଲୋକସାଧାରଣଙ୍କର ଭୀତି ଉତ୍ପାଦନର ସୁବିଧା ନଥାଏ । ଶିକ୍ଷକମାନେ ଅବଶ୍ୟ ଦେଶରେ ସମାଜରେ ଅଗ୍ରଗଣ୍ୟ, ଅଗ୍ରପୂଜ୍ୟ, ଭକ୍ତିଭାଜନ ଏବଂ ଗୌରବର ଆସ୍ପଦ । କିନ୍ତୁ ଯେଉଁ ଦେଶରେ ଶିକ୍ଷାର ପ୍ରସାର ନାହିଁ ସେଦେଶରେ ଶିକ୍ଷକ ପ୍ରତି ଗୌରବ ନାହିଁ । କିନ୍ତୁ ମୂର୍ଖ ସାଧାରଣଙ୍କ ଗୌରବ

ସ୍ଥାନରେ ଅପଣାକୁ ଗୁରୁ ମନେ କରି ସ୍ଫୀତ ହେବା ବା ସେମାନଙ୍କ ଅବଜ୍ଞାରେ ଅପଣାକୁ ସତ୍କାର ମନେକରିବା ଜ୍ଞାନୀ ଏବଂ ପରାର୍ଥପରାୟଣ ବ୍ୟକ୍ତିମାନଙ୍କର କର୍ତ୍ତବ୍ୟ ନୁହେ । ତଥାପି କେହି ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ଶିକ୍ଷକତା କରିବାକୁ ସମ୍ମତ ହେଉ ନାହାନ୍ତି ।

ଅବସ୍ଥା ବିପର୍ଯ୍ୟୟ ହେତୁ ଅଜି ଗଞ୍ଜାମ ବିଶେଷତଃ ଅପଣା ଶିକ୍ଷାବିଭାଗର ଅଭାବ ମୋଚନ ପାଇଁ ରାଜନୈତିକ ଓଡ଼ିଶା ଉପରେ ନିର୍ଭର କରେ । କିନ୍ତୁ ଅସ୍ମମାନଙ୍କର ଉଚ୍ଚଶିକ୍ଷିତ ପୁଣି ସୁଶିକ୍ଷିତ ଓଡ଼ିଶାର ଭାଇମାନେ ଗଞ୍ଜାମରେ ଅସି ଶିକ୍ଷକତା କରୁ ନାହାନ୍ତି, ଯେହେତୁ ଏଥିରେ ସେମାନଙ୍କ ଅଶାନୁରୂପ ବେଶି ଟଙ୍କା ଉପାର୍ଜନ ହୁଏ ନାହିଁ । ମନେ ରଖିବାକୁ ହେବ ଯେ, ସ୍ୱାର୍ଥତ୍ୟାଗ ନକଲେ ଦେଶର ବା ଜାତିର ଉନ୍ନତିକର କାର୍ଯ୍ୟ କରାଯାଇ ପାରେନାହିଁ । ଭାରତ ବିଖ୍ୟାତ ଗୋଖେଲ୍ ଏବଂ ପରାଂଜପେ ଦେଶ ନିମନ୍ତେ ମାସିକ ଟ ୪୦ ଟ ୫୦ ଙ୍କା ପାଇ ଶିକ୍ଷକତା କରନ୍ତି । ଉତ୍କଳ ସେବକ ଏପରି କେହି ଅଜି ବାହାରୁବେ ନାହିଁ ? ନୀଳକଣ୍ଠ, ଗୋଦାବରୀଶ ଓ ଗୋପବନ୍ଧୁ ଆପଣା ଜୀବନରେ ଦେଶପାଇଁ, ଜାତିପାଇଁ ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ଉଦାହରଣ ଦେଖାଇଲେହେଁ ଅନ୍ୟ କେହି ତାହାଙ୍କ ପ୍ରଧାବିତ ମାର୍ଗରେ ଅଗ୍ରସର ହୁଅନ୍ତି ନାହିଁ । ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ଅନ୍ୟାନ୍ୟ ବହୁ ଅର୍ଥକରୀ ବା କ୍ଷମତାପ୍ରଦ କର୍ମ ବିଭାଗରେ ନିଯୁକ୍ତ ହୋଇ ସାରୁ ଅଛନ୍ତି ସେମାନଙ୍କ ପକ୍ଷେ ନିଜ କାର୍ଯ୍ୟ ବିଭାଗ ପରିତ୍ୟାଗକରି ଶିକ୍ଷା ବିଭାଗରେ ନିଯୁକ୍ତ ହେବା ଦୁରୂହ ବ୍ୟାପାର ହୋଇପାରେ । କିନ୍ତୁ ଶିକ୍ଷା ବିଭାଗରୁ ସଦ୍ୟ ଉତ୍ତୀର୍ଣ୍ଣ ଯୁବକମାନଙ୍କର ଅଗ୍ରହ ସହକାରେ ଶିକ୍ଷକତା କରିବା କର୍ତ୍ତବ୍ୟ । ଧନ ପ୍ରତ୍ୟାଶା ଏବଂ ଦେଶ ସେବକତା ଏକାଧାରେ ତିଷ୍ଠି ପାରେନାହିଁ ।

ସମସ୍ତ ଓଡ଼ିଆ ଭାଷୀ ପ୍ରଦେଶକୁ ଏକ ଶାସନାଧୀନ କରିବା ପାଇଁ ସର୍ବତ୍ର ତୁମୁଳ ଆନ୍ଦୋଳନ ଲାଗିଅଛି, ସର୍ବତ୍ର ହୃଦୟର ବ୍ୟାକୁଳତା ପ୍ରକାଶ ପାଉଅଛି, ତଥାପି ବିଭିନ୍ନ ଅଞ୍ଚଳବାସୀ ମଧ୍ୟରେ ପରସ୍ପର ସହାନୁଭୂତି ଓ ସାହଚର୍ଯ୍ୟର ଅଭାବ ପରି ଲକ୍ଷିତ ହେଉଅଛି । ଯଦିବା ଶିକ୍ଷିତ ଲୋକମାନଙ୍କର ଦେଶହିତ ଚିକୀର୍ଷା ନାହିଁ, ତାହାର ଉନ୍ନତି ସାଧନ ଅଭିଳାଷ ଦ୍ୱାରା ଏମାନେ ପ୍ରଣୋଦିତ ନୁହନ୍ତି, ସଂକୀର୍ଣ୍ଣ ସ୍ୱାର୍ଥାନ୍ୱେଷଣହିଁ ଏମାନଙ୍କର ବ୍ରତ, ତେବେ ସହସ୍ର ଦେଶମିଶଣରୁ ବା କି ଫଳହେବ ? ଦେଶମିଶଣ ଦ୍ୱାରା ଯେ ଗଞ୍ଜାମକୁ ଉଠାଇ ନେଇ ଓଡ଼ିଶା ମଧ୍ୟରେ ରଖି ଦେବାକୁ ହେବ, ଗଞ୍ଜାମ ଓଡ଼ିଶା ସହିତ ମିଶିଯାଇ ସାଯୁଜ୍ୟ ମୁକ୍ତି ଲାଭ କରିବ, ଏହା ସବୁ ନିରର୍ଥକ ହୃଦୟହୀନ ପ୍ରଳାପ ମାତ୍ର । ଯେପରି କି ତେଲଙ୍ଗା ଲୋକ-

ମାନେ ଗଞ୍ଜାମ ବାସୀ ଓଡ଼ିଆ ସାଧାରଣଙ୍କୁ କହୁଥାନ୍ତି ଯେ ଗଞ୍ଜାମକୁ ଓଡ଼ିଶା ସହିତ ସାମିଲ କରିବା ଦ୍ୱାରା ଗଞ୍ଜାମକୁ ବଙ୍ଗଳା ଖାତରେ ପକାଇ ଦେବା କଥା। ଗଞ୍ଜାମଜିଲ୍ଲା ପୁଣି ବଣାଖାପାଠଶାଳାନ୍ତର୍ଗତ ନୋହିବାର ଓଡ଼ିଶାର ଦକ୍ଷିଣାଞ୍ଚଳ ଅଟେ ଏହି ପ୍ରକୃତିର ଘଟଣାର ଅନ୍ୟଥା କରିବା କାହାର କ୍ଷମତା ନାହିଁ। ପ୍ରବଳ-ପ୍ରତାପାନ୍ୱିତ ଭାରତ ସମ୍ରାଟ ସୁଦ୍ଧା ଏହାର ଅନ୍ୟଥା କରି ନ ପାରନ୍ତି। ସମସ୍ତ ଉତ୍କଳ ଭାଷୀ ପ୍ରଦେଶମାନ ଏକ ପ୍ରାଦେଶିକ, ଶାସନାଧୀନ ହୋଇପାରୁ ନଥିଲେ ସୁଦ୍ଧା ବିଭିନ୍ନ ଅଞ୍ଚଳ ଅଧିବାସୀ ମଧ୍ୟରେ ସ୍ୱଜାତୀୟ ଉନ୍ନତି ସାଧନ ସଂକଳ୍ପ ସହିତ ବୈଷୟିକ, ସାମାଜିକ ଏବଂ ସାହିତ୍ୟିକ ବିଭାଗରେ ପରସ୍ପର ସାହଚର୍ଯ୍ୟ ଓ ସହାନୁଭୂତି ରହିବା ଏକାନ୍ତ ବାଞ୍ଛନୀୟ। ଶାସନଗତ ପ୍ରଭେଦ ହେତୁ ଏହି ସକଳ ସମ୍ମିଳନରେ କିଛି ଅସୁବିଧା ବା ପ୍ରତିବନ୍ଧକ ଥାଇପାରେ। କିନ୍ତୁ ଏହି ପ୍ରତିବନ୍ଧମାନ ଅତିକ୍ରମକରି ଜାତୀୟ କାର୍ଯ୍ୟରେ ପ୍ରାଣପଣେ ଯୋଗଦେବା ପ୍ରକୃତ ଦେଶ ହିତୈଷୀ ବ୍ୟକ୍ତିର କର୍ତ୍ତବ୍ୟ ଏବଂ ମନୁଷ୍ୟତା।

— ❊ —

## ଗଞ୍ଜାମରେ ବିଦ୍ୟାଶିକ୍ଷା ।।

ଈଶ୍ୱରଙ୍କ ଧର୍ମ୍ମ ରାଜ୍ୟରେ ପାପ ସୟତାନ ଯେରୂପେ ଅନିଷ୍ଟ ସମ୍ପାଦନ କରୁଅଛି, ତଦ୍ରୂପ ସୁଶିକ୍ଷିତ ସଭ୍ୟ ବ୍ରିଟିଶ୍ ରାଜତ୍ୱରେ ମଧ୍ୟ ଅବିଦ୍ୟା ବା ମୂର୍ଖତା ଦେଶର ଅବନତି ସାଧନ କରୁଅଛି। ଲୋକ ସାଧାରଣ ଯଥାଶକ୍ତ୍ୟନୁସାରେ ସବିଦ୍ୟ ନ ହେଲେ ଦେଶର ଉନ୍ନତି କାମନା ବିଡ଼ମ୍ବନା ମାତ୍ର। ବିନା ମୂଲ୍ୟରେ ବଳାତ୍କାର ବିଦ୍ୟାଶିକ୍ଷା ଦିଆ ନ ଗଲେହେଁ ଆଜି ଗଭର୍ଣ୍ଣମେଣ୍ଟ ଅଜସ୍ର ଧନ ବ୍ୟୟ କରି ନାନା ସ୍ଥାନରେ ବିଦ୍ୟାଳୟ ସ୍ଥାପନ କରୁଅଛନ୍ତି। ଏହି ସମୟରେ ଦେଶୀୟ ରାଜା ଜମିଦାର ଓ ଧନୀ ବ୍ୟକ୍ତିମାନେ ଗଭର୍ଣ୍ଣମେଣ୍ଟଙ୍କ ସହାୟ ହେବା ଉଚିତ। ବେରଡ଼ାର ମହୋଦୟ ଯେରୂପେ ଆପଣା ରାଜ୍ୟରେ ( Free and compulsory education )ର ବ୍ୟବସ୍ଥା କରୁଅଛନ୍ତି ତଦ୍ରୂପ ଭାରତ ବର୍ଷରେ ଭିନ୍ନ ଭିନ୍ନ ରାଜ୍ୟରେ ହେବା ଉଚିତ। ଯେଉଁ ରାଜାମାନେ ନିଜ ରାଜ୍ୟରେ ( Compulsory education ) ବ୍ୟବସ୍ଥା କରି ପାରନ୍ତି ନାହିଁ ସେମାନେ ଆପଣା ରାଜ୍ୟମାନଙ୍କରେ ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ସ୍ଥାପନ କଲେ ଦେଶର ମୂର୍ଖତା ବିଦୂରିତ ହୋଇପାରେ। ଭାରତର ଜନ ସାଧାରଣ ଘୋରମୂର୍ଖ ଥିବା ପର୍ଯ୍ୟନ୍ତ ଭାରତୀୟ ଉନ୍ନତି ସାଧନ ଅସମ୍ଭବ।

ଭାରତବର୍ଷୀୟ ଅନୁନ୍ନତ ପଶ୍ଚାତପଦ ଜାତିମାନଙ୍କ ମଧ୍ୟରେ ଉତ୍କଳ ଏବଂ ପୁଣି ଉତ୍କଳରେ ବିଦ୍ୟାଶିକ୍ଷା ବିଷୟରେ ଗଞ୍ଜାମ ନିତାନ୍ତ ମନ୍ଦ ବୋଲି ଯାଇ ପାରେ । ସୌଭାଗ୍ୟବଶତଃ ଗଞ୍ଜାମରେ ଅନେକ ରାଜା, ଜମିଦାର ଅଧିପତ୍ୟ କରନ୍ତି । ଏମାନେ ମନେକଲେ ଗଞ୍ଜାମର ମୁଖୋଜ୍ୱଳ କରି ପାରନ୍ତି ଏବଂ ଏମାନଙ୍କ ଉଦାସୀନତା, ଭୀରୁତା, ଅଭିମାନ ଓ ଭୋଗବିଳାସ ବାସନାହେତୁ ଗଞ୍ଜାମ ଉନ୍ନତି ପଥରେ ଅଗ୍ରସର ହେବା ସୁଦୂରପରାହତ ହୋଇପାରେ । ରାଜା ଓ ଜମିଦାରମାନଙ୍କ ଭଣ୍ଡାରରେ ଯେଉଁ ଧନ ସଂଗୃହୀତ ହୋଇଥାଏ ତାହା ସେମାନଙ୍କ ଭୋଗବିଳାସ ଓ କ୍ରୀଡ଼ା କୌତୁକ ସକାଶେ ରକ୍ଷିତ ନ ଥାଏ, ତାହା କେବଳ ପ୍ରଜା ଓ ରଯ୍ୟତମାନଙ୍କ ମଙ୍ଗଳ ସାଧନାର୍ଥ ସଂଗୃହୀତ ହୋଇଥାଏ । ଯେଉଁ ରାଜା ବା ଜମିଦାରମାନେ ମନରେ ଏହି ଭାବ ପୋଷଣ କରି ନ ଥାନ୍ତି ସେମାନେ ରାଜା ଜମିଦାର ପଦବାଚ୍ୟ ନୁହନ୍ତି । ରାଜା ପ୍ରଜାମାନଙ୍କର ପିତା, ମାତା ଓ ପ୍ରଭୁ ସ୍ୱରୂପ । ଯେରୂପ ପିତାମାତା ଆପଣା ସନ୍ତାନମାନଙ୍କୁ ବିଦ୍ୟାଶିକ୍ଷା ନ ଦେଲେ ସେମାନଙ୍କର ଶତ୍ରୁ ହୁଅନ୍ତି, ସେହିପରି ଯଦି ରାଜାମାନେ ଆପଣା ପ୍ରଜାମାନଙ୍କର ବିଦ୍ୟାଶିକ୍ଷାରେ ଯତ୍ନବାନ୍ ହୁଅନ୍ତି ନାହିଁ ତେବେ ସେମାନେ ପ୍ରଜାବର୍ଗର ତଥା ଦେଶର ପରମ ଶତ୍ରୁ ହୁଅନ୍ତି । କେହି କେହି ରାଜା ଆପଣାର ରାଜସ୍ୱ ବୃଦ୍ଧି ସକାଶେ ପ୍ରଜାମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟର ବନ୍ଦୋବସ୍ତ କରି ଦେଇଥାନ୍ତି, ପୁଣି ଏତିକିରେ ନିଜର କର୍ତ୍ତବ୍ୟ ଶେଷ କରି ଆପଣାକୁ ଧନ୍ୟ ମନେ କରନ୍ତି, କିନ୍ତୁ ଏମାନେ ରାଜସ୍ୱର ସଦ୍‌ବ୍ୟୟ କରି ଜାଣି ନ ଥାନ୍ତି । ନିଜର ସୁଖ, ପରର ଉପକାର ବା ଆପଣାର ଖ୍ୟାତି, ବା ମୁକ୍ତି ସାଧନ ସକାଶେ ଧନ ସମ୍ପାଦନ କରାଯାଇଥାଏ । ଯଦି ଏହା ଦ୍ୱାରା କୌଣସି ହେତୁ ଉଦ୍ଦେଶ୍ୟ ସାଧିତ ନହୁଏ, ତେବେ ଧନର ପ୍ରୟୋଜନ କଣ ? ଅନେକେ ଭ୍ରମବଶତଃ ଧନକୁ କେବଳ ଚରମ ସୀମା ମନେ କରିଥାନ୍ତି । ଏହିପରି ଅନେକ ରାଜା ଓ ଜମିଦାରମାନେ କେବଳ ଭଣ୍ଡାର ବୃଦ୍ଧି ସକାଶେ ଧନ ସଂଗ୍ରହ କରିଥାନ୍ତି ପୁଣି କେହି କେହି ପ୍ରଜା ଶୋଷଣ କରି ଧନ ଆଣି ତାହା ଅପବ୍ୟୟ କରି-ଥାନ୍ତି । ଏହି ଦୁଇ ଶ୍ରେଣୀର ଲୋକ ଦେଶର ସମାନ ଶତ୍ରୁ ଅଟନ୍ତି ।

ପ୍ରଜା ଓ ରଯ୍ୟତମାନଙ୍କର ମଙ୍ଗଳ ସାଧନା କରିବାକୁ ହେଲେ ସର୍ବାଗ୍ରେ ସେମାନଙ୍କ ବିଦ୍ୟାଶିକ୍ଷାର ଆୟୋଜନ କରି ଦେବାକୁ ହେବ । ଘୋଡ଼ାଗାଡ଼ି, ଯୋଟଣ, ଶୁର୍ଲେ ବିଳେଇ ପ୍ରଭୃତି ରାଜଗୀତ ଲାଗି ଅଥବା ମାଂସାଶାରେ ମହିଷ ପ୍ରଭୃତି ବଳିଦାନ ଲାଗି, ନତୁବା ବିଦେଶୀୟ ଗାନ ଓ ବାଇନାଚ ପ୍ରଭୃତି ତମାସା ଲାଗି, କିଅବା ମହାରାଜା, ରାୟବାହାଦୁର, ଏ, ବି, ସି, ଡି, ଇତ୍ୟାଦି ଶୁଷ୍କ

ପଦାବ ପ୍ରାପ୍ତି ସକାଶେ ଅଜସ୍ର ଧନବ୍ୟୟ କରିବାରେ ଦେଶର ବା ପ୍ରଜାବର୍ଗର ଅଣୁମାତ୍ର ଉପକାର ହୁଏ ନାହିଁ । ଲୋକମାନଙ୍କର ଦୁରବସ୍ଥା ଦୂର କରିବା ସକାଶେ ବିଦ୍ୟାଶିକ୍ଷାହିଁ ପରମ ଔଷଧ ଅଟେ । 'ବିଦ୍ୟାବିହୀନଃପଶୁଃ', ଯେଉଁ ରାଜ୍ୟରେ ପ୍ରଜାବର୍ଗ ମୂର୍ଖ ଅଟନ୍ତି ସେହି ରାଜ୍ୟର ରାଜା ପଶୁରାଜ ଅଟନ୍ତି କହିଲେ ଚଳିବ । କେହି୨ ରାଜା ପୁଣି ବିଚାର କରି ଥାନ୍ତି ଯେ, ପ୍ରଜାମାନେ ଶିକ୍ଷିତ ହେଲେ ଆଇନ ସବୁ ଜାଣି ପାରିବେ, ରାଜାଙ୍କୁ ମାନିବେ ନାହିଁ, ପୁଣି ସେମାନଙ୍କ ଠାରୁ ବାକିକର ଅସୁଲ ତହସିଲ କରିବାରେ କଷ୍ଟ ହେବ । କିନ୍ତୁ ପଶୁରାଜ ମଧ୍ୟ ଆପଣା ବନରେ ଦୁର୍ବଳ ମୃଗ ଚାହେଁ ନାହିଁ, କାରଣ ମୃଗମାନେ ହୃଷ୍ଟ-ପୁଷ୍ଟ ହେଲେ ସିଂହ ସକାଶେ ସୁଖାଦ୍ୟ ଯୋଗାଇ ପାରିବେ । ଏହିପରି ପଣ୍ଡିତ ବିଦ୍ୱାନ ସମାଜରେ ସମାଦର ପାଏ, ପୁଣି ମୂର୍ଖମଣ୍ଡଳୀରେ ଅବମାନିତ ହୁଏ । ତେବେ ଦେଖନ୍ତୁ, ଏହି ରାଜାମାନେ ପଶୁରାଜ ଅପେକ୍ଷା ହୀନ ଅଟନ୍ତି । ଅତଏବ ପ୍ରତ୍ୟେକ ରାଜା ଓ ଜମିଦାରମାନଙ୍କର ଆପଣା ରାଜ୍ୟରେ ବିଦ୍ୟାଳୟ ସ୍ଥାପନ କରିବା ସର୍ବାଦୌ ପ୍ରଧାନ କର୍ତ୍ତବ୍ୟ ଅଟେ ।

ଖଲିକୋଟ ଓ ଆଠଗଡ଼ ରାଜା ବାହାଦୁର ଏକ ଲକ୍ଷ ଟଙ୍କା ଦାନ କରି ବ୍ରହ୍ମପୁର କଲେଜ ସ୍ଥାୟୀ କରି ଅଛନ୍ତି । ଏଥି ସକାଶେ ରାଜା ମହୋଦୟଙ୍କ ପ୍ରଶଂସା ବଚନାତୀତ । ପାରଳା ରାଜା ମହୋଦୟ ମଧ୍ୟ ଆପଣା ରାଜ୍ୟରେ ଗୋଟିଏ କଲେଜ ସ୍ଥାପନ କରି ଅକ୍ଷୟ କୀର୍ତ୍ତି ସମ୍ପାଦନ କରି ଯାଇ ଅଛନ୍ତି । ଧରାକୋଟ ଓ ମଞ୍ଜୁଷା ରାଜା ମହୋଦୟମାନେ ନିଜ ନିଜ ତାଲୁକା ମାନଙ୍କରେ ସେକଣ୍ଡରି ସ୍କୁଲ ସ୍ଥାପନ କରି ଦେଶର ମହଦୁପକାର ସାଧନ କରୁ ଅଛନ୍ତି । ବଡ଼ଖେମଣ୍ଡି ସାନଖେମଣ୍ଡି, ସୁରଙ୍ଗୀ, ବଡ଼ଗଡ଼, ଶେରଗଡ଼, ଚିକିଟି, ଜରଡ଼ା, ତରଳା ଓ ଟେକଲି ପ୍ରଭୃତି ରାଜା ମହୋଦୟ ମାନଙ୍କର ମଧ୍ୟ ଆପଣା ୨ ଶକ୍ତ୍ୟନୁସାରେ ଆପଣା ୨ ରାଜ୍ୟମାନଙ୍କରେ ବିଦ୍ୟାଳୟ ସ୍ଥାପନ କରିବା ଉଚିତ । ଗଞ୍ଜାମରେ ଉପଯୁକ୍ତ ସଂସ୍କୃତ ଟୋଲ୍‌ପାଠୀର ଅଭାବ ଅତୀବ ଶୋଚନୀୟ ହୋଇଅଛି । ସଂସ୍କୃତ ଶିକ୍ଷା ଅଭାବରୁ ହିନ୍ଦୁ ସାଧାରଣ ବ୍ରାହ୍ମଣୋଚିତ ପାଇବା ଦୂରେ ଥାଉ ପୂର୍ବ ପ୍ରତିଷ୍ଠିତ ବ୍ରାହ୍ମଣମାନଙ୍କ ବଂଶଧରମାନେ ଆଜି ଅବ୍ରାହ୍ମଣ ହୋଇ ପଡ଼ୁଅଛନ୍ତି । ଅତଏବ ପ୍ରତ୍ୟେକ ରାଜଧାନୀରେ ଗୋଟିଏ ଲେଖାଏ ସଂସ୍କୃତ ବିଦ୍ୟାଳୟ ସ୍ଥାପିତ ହେବା ଏକାନ୍ତ ବାଞ୍ଛନୀୟ ।

ଗଞ୍ଜାମ କାହିଁକି ଭାରତରେ ମଧ୍ୟ ସ୍ତ୍ରୀ ଶିକ୍ଷାର ଉପଯୁକ୍ତ ବ୍ୟବସ୍ଥା ହୋଇ ପାରି ନାହିଁ । ସ୍ତ୍ରୀ ଜାତି ଅଶିକ୍ଷିତା ଓ ମୂର୍ଖା ଥିବା ହେତୁ ଭାରତରେ ସ୍ତ୍ରୀଜାତି ଅକର୍ମଣ୍ୟା ହୋଇ ପଡ଼ିଅଛି । ଦେଶୋନ୍ନତି କାମନାରେ

ପ୍ରକୃଷର ସହାୟ ହେବା ଦୂରେ ଥାଉ ଏପାନେ ପ୍ରଧାନ ପ୍ରତିବନ୍ଧକ ଘଟାଇ ଥାନ୍ତି । ସୁଶିକ୍ଷିତା ମାତା ଅଭାବରେ ସନ୍ତାନମାନେ ଶିକ୍ଷିତ ହୋଇ ପାରନ୍ତି ନାହିଁ, ଏହା କହିବା ବାହୁଲ୍ୟ ମାତ୍ର । ଅତଏବ ପ୍ରତ୍ୟେକ ରାଜା ଓ ଜମିଦାରମାନେ ନାନା ସ୍ଥାନରେ ବାଳିକା ବିଦ୍ୟାଳୟ ସ୍ଥାପନ କରିଦେବା ଏକାନ୍ତ ଆବଶ୍ୟକ ।

ନିଜ ପ୍ରଜା ମଣ୍ଡଳୀ ମଧ୍ୟରେ ବିଦ୍ୟାଶିକ୍ଷା ପ୍ରଦାନ କରି ରାଜା ବା ଧନ କୁବେରମାନେ ସର୍ବସ୍ୱାନ୍ତ ହେଲେହେଁ ସେମାନେ ଚିରକାଳ ସକାଶେ ଦେଶର ପ୍ରକୃତ ରାଜା ବୋଲି ବିବେଚିତ ହେଉଥିବେ । କିନ୍ତୁ ଯେଉଁ ନରପତିମାନେ ଆପଣା ପ୍ରଜା ମାନଙ୍କର ବିଦ୍ୟୋନ୍ନତି ସାଧନ କରନ୍ତି ନାହିଁ, ସେମାନଙ୍କୁ ନରପତି ବୋଲିବା ବିଡ଼ମ୍ବନା ମାତ୍ର, କାରଣ ସେମାନେ ପ୍ରଥମେ ନର ପଦବାଚ୍ୟ ନୁହନ୍ତି, ନରପତି ବେଶଧାରୀ ପଶୁରାଜ ଅଟନ୍ତି ମାତ୍ର ।

ଶ୍ରୀଯୁକ୍ତ ଖଲିକୋଟ ରାଜା ମହୋଦୟ ଆପଣା ରାଜଧାନୀରେ ‘ରାଜକୁମାର ସ୍କୁଲ୍’ ନାମକ ଏକ ବିଦ୍ୟାଳୟ ପୁଣି ଏକ ବାଳିକା ବିଦ୍ୟାଳୟ ସ୍ଥାପନ କରିଥିଲେ । ଦୁଃଖର ବିଷୟ, ଶୁଣିପାରିଲୁଁ ଯେ ରାଜା ମହୋଦୟ ଉକ୍ତ ଦୁଇଗୋଟି ବିଦ୍ୟାଳୟ ଉଠାଇ ଦେଇଅଛନ୍ତି । ଉଠିଯିବାର କାରଣ କିଛି ଜଣା ଯାଉନାହିଁ । ଯେ କୌଣସି କାରଣରୁ ହେଉ, ବିଦ୍ୟାଳୟ ବନ୍ଦ କରିଦେବା କଦାପି ବାଞ୍ଛନୀୟ ନୁହେ, ବରଂ କ୍ଷତିଜନକ ଅଟେ । କେହି କେହି କହନ୍ତିକି ବର୍ତ୍ତମାନ ଧନାଭାବରୁ ବିଦ୍ୟାଳୟ ଉଠାଇ ଦିଆ ଯାଇଅଛି, କିନ୍ତୁ ଯେଉଁ ରାଜଧାନୀରେ ଛବି ବାହାର କରିବା ସକାଶେ ଫଟୋଗ୍ରାଫରକୁ ମାସିକ ଟ ୫୦ ବା ୬୦ ଦିଆଯାଏ, ପୁଣି ବିଦ୍ୟୁଦ୍ବର୍ତ୍ତି ଜଳାଇବା ସକାଶେ ଇଞ୍ଜିନିଅରକୁ ମାସିକ ଟ ୨୦୦ ବା ୩୦୦ ଦିଆଯାଏ, ସେଠାରେ ଗୋଟିଏ ମାତ୍ର ବାଳିକା ବିଦ୍ୟାଳୟ ସ୍ଥାପନ ଦ୍ୱାରା କେତେ ଧନ ବ୍ୟୟ ହୋଇ ଯାଉଥିଲା ? ତାହା ବନ୍ଦ କରିଦେବା ମାତ୍ରେ ରାଜ କୋଷର କେଉଁ ଅଂଶବା ପୂର୍ଣ୍ଣ ହୋଇଯିବ ? ବିଦ୍ୟାଶିକ୍ଷା ପ୍ରଦାନ ସଙ୍ଗେ ତୁଳନା କଲେ ବିଦ୍ୟୁଦ୍ବର୍ତ୍ତି ଓ ଫଟୋଗ୍ରାଫ କେବଳ ଅପବ୍ୟୟ ବୋଲିଯାଇପାରେ । ଯେଉଁ ଦାନଶୀଳ ରାଜାବାହାଦୁର ଏକଲକ୍ଷ ଟଙ୍କା ପ୍ରଦାନ କରି ବ୍ରହ୍ମପୁର କଲେଜ ସ୍ଥାପନ କରି ଅଛନ୍ତି, ସେ ମହାତ୍ମା ଘର ବାଳିକାସ୍କୁଲ ଗୋଟିକର ବ୍ୟୟଭାର ବହନ କରିବାକୁ କୁଣ୍ଠିତ ହେବେ, ଏହା ବିଶ୍ୱାସ କରାଯାଉ ନାହିଁ । ବ୍ରହ୍ମପୁରଠାରେ ଯେଉଁ କଲେଜ-ମନ୍ଦିର ସ୍ଥାପନ କରା ଯାଇଅଛି ଉକ୍ତ ମନ୍ଦିରରେ ପ୍ରବେଶ କରିବା ସକାଶେ ରାଜାମହୋଦୟ ନିଜ ଦୁର୍ଗରେ “ରାଜକୁମାରସ୍କୁଲ୍” ସ୍ଥାପନପୂର୍ବକ ପାବଚ୍ଛ ନିର୍ମାଣ କରିଥିଲେ । ବର୍ତ୍ତମାନ ଉକ୍ତ ପାବଚ୍ଛ ନଷ୍ଟ କରି-

ହୋଇ ରାଜାମହୋଦୟ ଉକ୍ତ ମନ୍ଦିରରେ ପ୍ରବେଶ କରିବା ସକାଶେ ପ୍ରଶସ୍ତ ମାର୍ଗ ନିରୁଦ୍ଧ କରି ଦେଇଅଛନ୍ତି । ଏହା ସବୁ ଦେଖିଲେ, ବୋଧହୁଏ ଏହି ସ୍କୁଲଟି ଉଠାଇ ଦେବାରେ କୌଣସି ରହସ୍ୟ କାରଣ ଥାଇପାରେ । ଉକ୍ତ କାରଣ ଲୋକର ବିଦିତ ହେବା ପର୍ଯ୍ୟନ୍ତ ରାଜାମହୋଦୟଙ୍କର ପ୍ରଶଂସାର ହ୍ରାସ ହେଉଅଛି ।

— — ୦ — —

## ଛାତ୍ରୀ ନିର୍ଯ୍ୟାତନ ।

ସରକାର ବାହାଦୁର ବହୁଧନ ବ୍ୟୟ କରି କଟକ ନଗରରେ ବିଧବା ଟ୍ରେନିଂ ସ୍କୁଲ ସ୍ଥାପନ କରିଅଛନ୍ତି, ପୁଣି ତହିଁରେ ସମ୍ଭ୍ରାନ୍ତ କୁଳ ସଂଭୂତା, ସନ୍ତାନ ସମ୍ପର୍କ ବିହୀନା ବିଧବାମାନଙ୍କୁ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରା ଯାଇଅଛି ବୋଲି ଶୁଣାଯାଏ । ପୁଣି ଶୁଣି ପାରୁଛୁ ଯେ ଏହି ବିଦ୍ୟାଳୟ ସକାଶେ ପାଞ୍ଚଟିମାନ ଛାତ୍ରୀ ଘଟିଅଛନ୍ତି । ଏମାନଙ୍କ ମଧ୍ୟରୁ କେହି ସମ୍ଭ୍ରାନ୍ତ କୁଳ ସଂଭୂତା ବା ଉଚ୍ଚଜାତୀୟା ନୁହେ । କେହି ବା ବିଧବା ନୁହେଁ ପୁଣି କେହି ବା ଅବିବାହିତ ଅଛି । ସମ୍ଭ୍ରାନ୍ତ କୁଳରୁ ନିଃସନ୍ତାନ ବିଧବା ଯୁବତୀ ପାଇବା ବଡ ଦୁସ୍ତର । ବୋଧହୁଏ ଏହି କାରଣରୁ ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଉକ୍ତ ନିୟମଟାକୁ ଟିକିଏ ଶିଥିଳ କରିଦେଇ ବ୍ରାହ୍ମଣ, କରଣ, ଖଣ୍ଡାୟତ ପ୍ରଭୃତି ଉଚ୍ଚ ଜାତି ସମ୍ଭୂତା ନହେଲେ ମଧ୍ୟ ପୁଣି ବିଧବା ହୋଇ ନଥିଲେ ସୁଦ୍ଧା ଶିକ୍ଷାଭିଳାଷିଣୀ ନିରାଶ୍ରିତା ହିନ୍ଦୁ ଯୁବତୀମାନଙ୍କୁ ଗ୍ରହଣ କରୁଅଛନ୍ତି । ଅବସ୍ଥାନୁସାରେ ଏ ବ୍ୟବସ୍ଥା କରିବାକୁ ହେବ, ଏଥିରେ କୌଣସି ଦୋଷ ନାହିଁ ।

ଉକ୍ତ ପାଞ୍ଚଜଣ ଛାତ୍ରୀ ମଧ୍ୟରେ ଗଞ୍ଜାମ ବେଲମୁଠା ଗ୍ରାମର ଏକ ଅନାଥା କନ୍ୟା ଥିଲା । ଏହି ଛାତ୍ରୀଟି ଶୁଣୁଅଛୁ ଯେ ଉକ୍ତ ସ୍କୁଲରୁ ବିତାଡିତା ହେଉଅଛି । ଚନ୍ଦ୍ରା ବା କୁନ୍ତଳା ନାମ୍ନୀ ଏହି କନ୍ୟାଟି ଉକ୍ତ ବେଲମୁଠା ଗ୍ରାମର ଏକ ଶିଷ୍ଟ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ରକ୍ଷିତା ସ୍ତ୍ରୀ ଗର୍ଭରୁ ଜନ୍ମ ଗ୍ରହଣ କରିଅଛି । ଏହି କନ୍ୟାଟି ମାତାର ବିୟୋଗ ପରେ ପିତା କର୍ତ୍ତୃକ ଉପେକ୍ଷିତ ହେଲା, ଏବଂ ଜ୍ଞାତି ବିବାଦରେ ସର୍ବସ୍ୱ ହରାଇ ନିରାଶ୍ରିତା ଅନାଥା ହୋଇ ପଡିଲା । ଏହି ସମୟରେ ଉକ୍ତ ବେଲମୁଠା ଗ୍ରାମନିବାସୀ ଶ୍ରୀମାନ୍ ଆନନ୍ଦ ସାହୁଙ୍କ ଯତ୍ନରେ ଉକ୍ତ ବାଳିକାଟି କଟକ ରେଭେନ୍ସା ବାଳିକା ବିଦ୍ୟାଳୟରେ ପଢୁଥିଲା, ଅର୍ଥାଭାବରୁ ସେହି ସ୍କୁଲରେ ପଢି ନପାରି ନବ ପ୍ରତିଷ୍ଠିତ ବିଧବା ଟ୍ରେନିଂ ସ୍କୁଲରେ ପ୍ରବେଶ କଲା । ତାହାର ଗୁଣ, କର୍ମ, ସ୍ୱଭାବ, ବୁଦ୍ଧି ଓ ଚରିତ୍ର ବିଷୟରେ ରେଭେନ୍ସା ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ ସାହେବାଣୀ ମହୋଦୟା ଉତ୍ତମ

ସାର୍ଟିଫିକେଟ ଦେଇ ଅଛନ୍ତି, ପୁଣି ଛାତ୍ରୀର ଭାବୀ ମଙ୍ଗଳ କାମନାରେ ତାହାଙ୍କୁ ସ୍କୁଲରୁ ଛାଡିଥିଲେ ସୁଦ୍ଧା ତାହାର ସ୍କୁଲ ତ୍ୟାଗରେ ଅତ୍ୟନ୍ତ ଦୁଃଖିତା ହୋଇଥିଲେ । ମୁଁ ନିଜେ ସେ ଦିନ ସେହି ଛାତ୍ରୀଟିକି ପୁରୀଠାରେ ଦେଖି ପରୀକ୍ଷା କରି ବୁଝିପାରିଲି ଯେ ସେହି ପିଲାଟି ଅଳ୍ପ ସମୟରେ ଭଲ ସୁନ୍ଦର ପଢ଼ାଶୁଣା କରି ପାରିଅଛି । ପୁଣି ବୁଦ୍ଧିମତୀ, ଗୁଣବତୀ ଓ ବିନୀତା ଦେଖା ଯାଉଅଛି । ଉକ୍ତ ଛାତ୍ରୀଟି ବିଧବା ଟ୍ରେନିଂ ସ୍କୁଲରୁ ବର୍ତ୍ତମାନ ବିତାଡିତା ହୋଇଥିବା କଥା ଶୁଣି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ, ଏହି ବିତାଡନର କୌଣସି କାରଣ ଦେଖି ନପାରି ବିସ୍ମୟାନ୍ୱିତ ଅଛୁଁ । ବୋଧହୁଏ କୌଣସି ନୀଚମନା ଦୁର୍ବୁଦ୍ଧି ବ୍ୟକ୍ତି ଉକ୍ତ ଛାତ୍ରୀ ପ୍ରତି ଅଯଥା ଦୋଷାରୋପ କରି ସମ୍ପର୍କୀୟ ଲୋକମାନଙ୍କୁ ଉସ୍କାଇ ଦେଇ ସେମାନଙ୍କୁ ତାହା ବିରୋଧରେ ଉଠାଇ ଅଛନ୍ତି, ଏବଂ ସେହି ନୀଚମନା ଭଦ୍ରଲୋକର କୌଶଳ ଓ ଅଭିସନ୍ଧି ଭେଦ କରି ନପାରି ତାହାଙ୍କର ଅନଧିକାର ଚର୍ଚ୍ଚା, ଅଯଥା ଦୋଷାରୋପ ଏବଂ ଈର୍ଷାଯୁକ୍ତ ପ୍ରେରଣାକୁ ଭାଙ୍ଗି ନପାରି ଶିକ୍ଷୟିତ୍ରୀ ମହୋଦୟା ମଧ୍ୟ ଛାତ୍ରୀଟିକି ସ୍କୁଲରୁ ବାହାର କରିଦେବାକୁ ଅଗତ୍ୟା ବାଧ୍ୟ ହୋଇ ଅଛନ୍ତି । ବିଧବା ସ୍କୁଲରୁ ବହିଷ୍କୃତା ହୋଇ ଏହି ଛାତ୍ରୀ ଅନ୍ୟତ୍ର ଶିକ୍ଷା କରିବାକୁ ବହୁତ ଚେଷ୍ଟା କଲା, ଚିକିତ୍ସାଳୟରେ ପ୍ରବେଶ କରି ବୈଦ୍ୟ ବା ଧାତ୍ରୀ ଶିକ୍ଷା କରିବାକୁ ଇଚ୍ଛା କରି ବହୁଯତ୍ନ କଲା, କିନ୍ତୁ ଡାକ୍ତର ସାହେବ ତାହାକୁ ଅଳ୍ପ ବୟସ୍କା, ପ୍ରାୟ ବ ୧୬ ର୍ଷର ଜ୍ଞାନ କରି ଧାତ୍ରୀ ବା ବୈଦ୍ୟ ବିଦ୍ୟା ଶିକ୍ଷା କରିବାକୁ ଅନୁମତି ଦେଇ ପାରି ନାହାନ୍ତି । ସମ୍ପ୍ରତି ବାଳିକାଟି ବିଦ୍ୟାଶିକ୍ଷା ପ୍ରତି ଆପଣାର ବଳବତୀ ଇଚ୍ଛା ପୂରଣ କରି ନପାରି ଅତ୍ୟନ୍ତ ମନୋବେଦନା ଭୋଗ କରୁଅଛି । ଏହିପରି ଛାତ୍ରୀ ନିର୍ଯ୍ୟାତନ ଓ ଶିକ୍ଷା ପ୍ରବୃତ୍ତି ଦମନ ଦ୍ୱାରା ସମାଜର କି ଭୟଙ୍କର କ୍ଷତି ସାଧିତ ହେଉଅଛି ତାହା ନେତୃ ସ୍ଥାନୀୟ କର୍ତ୍ତୃପକ୍ଷଙ୍କର ଭାବି ଦେଖିବା ଉଚିତ ।

ପରିଶେଷରେ ବକ୍ତବ୍ୟ ଏହି ଯେ ଇତର କୁଳ ସମ୍ଭୂତା, ଅଜ୍ଞାତକୁଳଶୀଳା, ସ୍ୱାମୀ ବର୍ଜିତା, ସମ୍ଭବତଃ ଚରିତ୍ର ବିହୀନା କନ୍ୟାମାନେ ଯେତେବେଳେ ବିଦ୍ୟାଳୟ ମାନଙ୍କରେ ଛାତ୍ରୀ ଶ୍ରେଣୀଭୁକ୍ତ ହୋଇ ପାରୁଅଛନ୍ତି, ତେବେ କୌଣସି ନୀଚାଶୟ ବ୍ୟକ୍ତିର ଅନ୍ୟାଯ୍ୟାନୁରୋଧ ବା ଧମକ ଚମକରେ ପଡି ଶିକ୍ଷୟିତ୍ରୀ ମହୋଦୟାଙ୍କର ଆପଣାର ସୁବିନୀତା ସୁଶୀଳା ବୁଦ୍ଧିମତୀ ଛାତ୍ରୀଟିକି ଶିକ୍ଷାଲାଭରୁ ବଞ୍ଚିତା କରିବା ସମୁଚିତ କାର୍ଯ୍ୟ ନୁହେଁ ।

ଏହି ଲେଖାପ୍ରତି ବିଧବା ବିଦ୍ୟାଳୟର କର୍ତ୍ତୃପକ୍ଷ ଓ ବିଶେଷରେ ଶିକ୍ଷୟିତ୍ରୀ ମହୋଦୟାଙ୍କର ମନୋଯୋଗ ଆକର୍ଷଣ କରା ଯାଉଅଛି ।

——:o:——

# ବୈଦ୍ୟ ବିଦ୍ୟା ।

ଆୟୁର୍ବେଦ ବା ବୈଦ୍ୟ ବିଦ୍ୟା ଦିନକୁଦିନ ଲୋପ ପାଉଅଛି । ଏହି ବିଦ୍ୟାଶିକ୍ଷା ଯେଉଁ ପରିମାଣରେ ରହିତ ହୁଏ, ପ୍ରକୃତ ବୈଦ୍ୟ ସଂଖ୍ୟା ସେହି ପରିମାଣରେ କମି ଯାଉଅଛି । ପ୍ରତ୍ୟେକ ଗ୍ରାମରେ ବୈଦ୍ୟ ରହିବା ଉଚିତ । ବୈଦ୍ୟ ନଥିବା ଗ୍ରାମ କୁଗ୍ରାମ । ଏହା ବାସୋପଯୋଗୀ ନୁହେ । ସଂସ୍କୃତ ଶିକ୍ଷାର ଲୋପ ସଙ୍ଗେ ସଙ୍ଗେ ଆୟୁର୍ବେଦର ପ୍ରକୃତ ଶିକ୍ଷା ହୋଇ ପାରେ ନାହିଁ । ମାଧବ-କର, ଚିନ୍ତାମଣି, ଚରକ, ସୁଶ୍ରୁତ ପ୍ରଭୃତି କେତେଖଣ୍ଡ ଗ୍ରନ୍ଥର କୌଣସି ଅନୁବାଦ ଦେଖି ଅନେକେ ବୈଦ୍ୟ ବୋଲି ଆପଣାର ପରିଚୟ ଦିଅନ୍ତି । ପ୍ରକୃତ ଆୟୁର୍ବେଦ ଶିକ୍ଷା ଯେଉଁ ପରିମାଣରେ ବିଲୁପ୍ତ ହେଉଅଛି ଦେଶରେ ମୂର୍ଖ ବୈଦ୍ୟ ସଂଖ୍ୟା ସେହି ପରିମାଣରେ ବଢୁଅଛି । ଏମାନେ ବାତ, ପିତ୍ତ ଓ କଫ ଏହି ତିନିଗୋଟି ନାମ ସହିତ ପରିଚୟ କରି ଚାଟୁଆ ବା ଔଷଧ ମୁଣି ଧରି ବାହାରନ୍ତି । କୌଣସି ଚେର ମୂଳ ବା ପାରା ଗନ୍ଧକର ବ୍ୟବସ୍ଥା କରିଦେଇ କିଛି ଧନ ସଂଗ୍ରହ କରି ଚାଲି ଆସନ୍ତି । ଏମାନେ ସମୟେ ସମୟେ ଚେର ମୂଳ ପ୍ରୟୋଗ ଦ୍ୱାରା ଯେତେ ଉପକାର କରଥାନ୍ତି, ପାରା ଗନ୍ଧକାଦି ପାଷାଣ ଓ ବିଷାଦି ଦେଇ ତତୋଧିକ କ୍ଷତି ସାଧନ କରନ୍ତି । ପଦାର୍ଥତତ୍ତ୍ୱ ବୁଝି ନପାରି ଏମାନେ ରୋଗୀଙ୍କୁ ଉପଯୁକ୍ତ ଆହାର ଦିଅନ୍ତି ନାହିଁ । ସକଳ ଜୀବର ପ୍ରଧାନ ଏବଂ ସର୍ବୋତ୍କୃଷ୍ଟ ଆହାର ଅଟେ କ୍ଷୀର । ଏହି କ୍ଷୀର ସେବନ ଏକାବେଳକେ ବର୍ଜିତ ହୋଇଥାଏ ଏବଂ ତତ୍ ପରିବର୍ତ୍ତେ ଗୋଡି ପଥର, ଚେର ପତ୍ର ସିଝା ପାଣି ଟିକିଏ ମାତ୍ର ପିଇବାକୁ ଦିଆଯାଏ । ଅନାହାର ହେତୁ ବା କୌଣସି ପୁଷ୍ଟିକର ଆହାର ନପାଇ ରୋଗୀ ସମୟେ ସମୟେ ଏପରି ଦୁର୍ବଳ ହୋଇ ପଡ଼େ ଯେ ତିନି ଚାରିମାସ ପର୍ଯ୍ୟନ୍ତ ନିତାନ୍ତ ଅକର୍ମଣ୍ୟ ହୋଇଯାଏ ।

ଆରୋଗ୍ୟ ଠାରୁ ଅଧିକ ସମ୍ପତ୍ତି ନାହିଁ । "ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନଂ ।" ଶରୀର ରକ୍ଷା କରିବା ପ୍ରାଣୀମାନଙ୍କର ସର୍ବ ପ୍ରଥମ କର୍ତ୍ତବ୍ୟ । ସୁତରାଂ ଆୟୁର୍ବେଦ ଶିକ୍ଷାର ବିସ୍ତାର ଏବଂ ଔଷଧାଳୟ ସ୍ଥାପନ ସର୍ବ ପ୍ରଧାନ ଧର୍ମ ଅଟେ । ରାଜ୍ୟରେ ରାଜାମାନେ ଧର୍ମ ରକ୍ଷକ । ରାଜାନୁଗତୋଧର୍ମ, ଯେହେତୁ ଏମାନଙ୍କର ଶକ୍ତି କ୍ଷମତା ଓ ଧନ ଅଛି । ଏମାନେ ଯାହା ଇଚ୍ଛା ତାହା କରି ପାରନ୍ତି । ସର୍ବ ସାଧାରଣ ଏମାନଙ୍କ ଉପରେ ଏକାନ୍ତ ନିର୍ଭର କରିଥାନ୍ତି । ରାଜାମାନେ ନିଜ ରାଜଧାନୀରେ ଔଷଧାଳୟ ସ୍ଥାପନ କଲେ ପ୍ରଜା ସାଧାରଣର

ଅଶେଷ ଉପକାର ସାଧିତ ହୁଅନ୍ତା । ଯେଉଁମାନେ ଧନୀ ସେମାନେ ନିଜ ବ୍ୟୟରେ ଔଷଧ ପ୍ରସ୍ତୁତ କରାଇ ପାରିବେ, କିନ୍ତୁ ଗରିବ ଲୋକପକ୍ଷେ ଏହା ଦୁସ୍ତର । ଧନୀ ଲୋକମାନେ ମଧ୍ୟ ପ୍ରକୃତ ଆୟୁର୍ବେଦୀୟ ଔଷଧାଭାବରୁ ଧନବ୍ୟୟ କରି ସୁଦ୍ଧା ଉପଯୁକ୍ତ ଚିକିତ୍ସା ପାଇପାରନ୍ତି ନାହିଁ । ତେବେ ରୋଗାର୍ତ୍ତ ନିର୍ଦ୍ଧନ ଲୋକର କଥା କେତେଦୂର ଶୋଚନୀୟ ତାହା ସହଜେ ଅନୁମେୟ । ରାଜାମାନଙ୍କ ନିକଟରେ ବୈଦ୍ୟରାଜ, ବୈଦ୍ୟରତ୍ନ, ବୈଦ୍ୟଭୂଷଣ ପ୍ରଭୃତି ପଦବୀ ପ୍ରାପ୍ତ ହୋଇ ଜମିବାଡ଼ ବାହାରେ ମାସିକ ବେତନ ଭୋଗକରୁ ଅନେକ ବୈଦ୍ୟ ରହନ୍ତି । ରାଜାଙ୍କ ଶ୍ରୀଅଙ୍ଗ ଅସୁସ୍ଥ ଥିବାବେଳେ ଏମାନେ ଦର୍କାର ହୁଅନ୍ତି, ଅନ୍ୟ ସମୟରେ ଏମାନେ ଅକର୍ମଣ୍ୟ ହୋଇ ବସନ୍ତି । ଏମାନେ ରାଜଧାନୀମାନଙ୍କରେ ବୈଦ୍ୟ ବିଦ୍ୟାଳୟ ଖୋଲି କେତେ ଗୋଟି ଶିଷ୍ୟ ମାନଙ୍କୁ ଆୟୁର୍ବେଦ ଶିକ୍ଷା ଦେଲେ ଦେଶର ଗୋଟିଏ ଗୁରୁତର ଅଭାବ ଦୂରହୁଅନ୍ତା—ଶିକ୍ଷିତ ବୈଦ୍ୟ ସଂଖ୍ୟା ବୃଦ୍ଧି ପ୍ରାପ୍ତ ହୋଇ ସର୍ବସାଧାରଣଙ୍କର ମହଦୁପକାର ସାଧିତ ହୁଅନ୍ତା । ରାଜାମହୋଦୟମାନେ ଏହି ବିଷୟରେ ଥରେ ଚିନ୍ତାକରି ଆପଣାର କର୍ତ୍ତବ୍ୟ ପାଳନ କଲେ ପ୍ରଜାପୁଞ୍ଜର ଅଶେଷ ଉପକାର ହେବ, ଏଥିରେ ସନ୍ଦେହ ନାହିଁ ।

ବିଦ୍ୟାଦାନ ମହାପୁଣ୍ୟ ବୋଲି କଥାଅଛି । ବିଦ୍ୟାକୁ ଯେତେ ବିତରଣ କଲେ ସେତେ ବୃଦ୍ଧିପାଏ । ଦୁଃଖର ବିଷୟ, ଅନେକ ବୈଦ୍ୟ ଆପଣାର ବିଦ୍ୟା କାହାକୁ କହି ଦିଅନ୍ତି ନାହିଁ । ଆପଣା ଘରର ପୋଥି ଗୁଡ଼ିକ ଲୁଚାଇ ରଖନ୍ତି । ଏମାନଙ୍କର କୌଣସି ଉତ୍କୃଷ୍ଟ ଚିକିତ୍ସା ପ୍ରଣାଳୀ ବା ଅଶୁଫଳପ୍ରଦ ଔଷଧ ଯୋଗ ଯଦି ଅନ୍ୟ କେହି ଜାଣିପାରନ୍ତି ତାହାହେଲେ ଏମାନଙ୍କ ବିଷୟରେ କ୍ଷତି ଘଟିବ ପୁଣି ଲୋକେ ଆଉ ଏମାନଙ୍କୁ ସାଦରେ ଆହ୍ୱାନ କରିବେନାହିଁ ବୋଲି ଏମାନଙ୍କର ଭୀତି ଜାତହୁଏ । ଏହି ସଙ୍କୀର୍ଣ୍ଣ ସ୍ୱାର୍ଥ ଲାଗି ଏମାନେ ଆପଣାର ବିଦ୍ୟାକୁ ଲୁକ୍କାୟିତ ରଖନ୍ତି । କିନ୍ତୁ ଏପରି କରିବା ଲାଗି ଏମାନେ ଯେଉଁ ସ୍ୱାର୍ଥଲାଭ କରନ୍ତି ଲୋକଙ୍କର ତଦପେକ୍ଷା ଶତଗୁଣ କ୍ଷତିସାଧନ କରନ୍ତି । ଲୋକୋପକାର ସକାଶ ଶାସ୍ତ୍ରବିଦ୍ୟାର ସୃଷ୍ଟି । ଲୋକମାନଙ୍କ ଅବଗତ୍ୟର୍ଥେ ଶାସ୍ତ୍ର ପ୍ରଚାର କରିବା ପ୍ରତ୍ୟେକ ହୃଦୟବାନ ବ୍ୟକ୍ତିର କର୍ତ୍ତବ୍ୟ । ଯଦି ଶାସ୍ତ୍ରବିଦ୍ୟା ଲୋକରେ ପ୍ରଚାରିତ ନହୁଏ ଏବଂ ଦୁସ୍ତ୍ରବେଶ୍ୟ ରହେ ତେବେ ତାହା ଅଜାଗଳସ୍ତନ ନ୍ୟାୟ ନିରର୍ଥକ ।

—❀—

# କବିତା ଚାତୁରୀ ।

ରସଯୁକ୍ତ ରଚନାକୁ କବିତ୍ୱ କହନ୍ତି । କବିତାର ଏକ ମନୋମୁଗ୍ଧକାରିଣୀ ଶକ୍ତି ଅଛି, ତାହା ରଚକ ଏବଂ ପାଠକ ଉଭୟଙ୍କ ମନରେ ଅପୂର୍ବ ଆନନ୍ଦ ଜନ୍ମାଏ । ପଣ୍ଡିତଠାରୁ ଅଶିକ୍ଷିତ ଲୋକ ସାଧାରଣ ପର୍ଯ୍ୟନ୍ତ ସମସ୍ତେ ସୁମଧୁର କବିତାରେ ବିମୋହିତ ହୋଇ ପଡ଼ନ୍ତି । ଯେ କୌଣସି ବିଷୟର ସୂକ୍ଷ୍ମଭାବ ନିଚୟ କବିତା ଦ୍ୱାରା ସରଳ ଭାଷାରେ ବ୍ୟକ୍ତ କରାଯାଏ । ପ୍ରତ୍ୟେକ ସାମାନ୍ୟ ବସ୍ତୁରେ ମଧ୍ୟ ଯେଉଁ ସ୍ୱର୍ଗୀୟ ସୂକ୍ଷ୍ମଭାବ ନିଚୟ ତାହାର ଗଭୀର ପ୍ରଦେଶରେ ଲୁକ୍କାୟିତ ଥାଏ, ତାହା ସର୍ବସାଧାରଣଙ୍କ ସ୍ଥୂଳ ଦୃଷ୍ଟିରେ ଗୋଚର ହୁଏନାହିଁ । କବିର ହୃଦୟହିଁ ତାହା ଗ୍ରହଣ କରିପାରେ, କବିର ରଚନାହିଁ ତାହା ବ୍ୟକ୍ତ କରିପାରେ । ତିଳକୁ ତାଳଦଣ୍ଡ ବର୍ଣ୍ଣନା କରିବା ମଧ୍ୟ ଗୋଟିଏ କବିତ୍ୱ ନୈପୁଣ୍ୟ । ଏଥିଦ୍ୱାରା କବିଙ୍କର କଳ୍ପନା ଶକ୍ତିର ପରିଚୟ ମିଳେ । ବିନା ଭାବ ନହେଲେ ଅତ୍ୟୁକ୍ତି ହେଲେହେଁ ସୁସଙ୍ଗତ କାବ୍ୟରଚନା କରି କେହି ଶ୍ରୋତାର ମନୋରଞ୍ଜନ କରି ପାରନ୍ତିନାହିଁ । ପୁଣି କବିତାର ପଦବିନ୍ୟାସ ପ୍ରଣାଳୀ ଶ୍ରୋତା ଏବଂ ପାଠକମାନଙ୍କର ମନକୁ ଆକର୍ଷଣ କରି ଆଣେ । ଅନ୍ୟାନ୍ୟ ସକଳ ଶିକ୍ଷଣୀୟ ବିଷୟ ପରି କବିତ୍ୱ ଶକ୍ତି ମଧ୍ୟ କୃଷିଦ୍ୱାରା ଉତ୍ତରୋତ୍ତର ଉନ୍ନତି ଲାଭ କରୁଥିଲେହେଁ, ଏହା ବ୍ୟକ୍ତି ବିଶେଷର ଏକ ସ୍ୱଭାବ ସୁଲଭ ଶକ୍ତି ଅଟେ । ଏଥି ନିମନ୍ତେ ଏହାକୁ ଈଶ୍ୱର ଦତ୍ତ ଶକ୍ତି ବୋଲି କୁହାଯାଏ । କବି ମାନଙ୍କର କାର୍ଯ୍ୟକ୍ଷେତ୍ର ଅତ୍ୟନ୍ତ ବିଶାଳ, ରାସ୍ତା ଯଥେଷ୍ଟ ପ୍ରଶସ୍ତ । ଏମାନେ ଅବଲୀଳା କ୍ରମେ ଅବାଧରେ ବିଚରଣ କରନ୍ତି । ନୀତି, ନ୍ୟାୟଯୁକ୍ତି ଓ ବିଜ୍ଞାନ ପ୍ରଯୁକ୍ତ ନିୟମ ନିବନ୍ଧନରୁ ଏମାନେ ଅନେକ ପରିମାଣରେ ଅବ୍ୟାହତି ପାଇ କଳ୍ପନା ରାଜ୍ୟରେ ବିଚରଣ କରନ୍ତି, ଯାହାଇଚ୍ଛା ତାହା କହି ପାରନ୍ତି, ତଥାପି କବିଙ୍କୁ ମଧ୍ୟ ସୁରୁଚି ସମ୍ମତ, ଦେଶ କାଳ ପାତ୍ର ସଙ୍ଗତ ଏବଂ ଲୋକାନନ୍ଦ ବର୍ଦ୍ଧକ ହେବା ସଙ୍ଗେ ସଙ୍ଗେ ଲୋକ ହିତକର ହେବା ଉଚିତ । ପୁଣି ତଦ୍ଦ୍ୱାରା ସଦୁଦ୍ଦେଶ୍ୟ କେତେଦୂର ସାଧିତ ହୁଏ ତହିଁ ପ୍ରତି ଲକ୍ଷ ରଖିବାକୁ ହୁଏ ।

ଦୁଃଖର ବିଷୟ ଏହିଯେ ଏହି ଅଲୌକିକ ଐଶ୍ୱରିକ ଶକ୍ତି ଆଜି ଅନେକାଂଶରେ କେବଳ ଭାଟ ସ୍ତୁତିରେ ପରିଣତ ହୋଇଅଛି । ଯେଉଁମାନେ ଗୁଣର ଅତିଶୟ ବର୍ଣ୍ଣନା କରନ୍ତି ସେମାନଙ୍କୁ ମଧ୍ୟ ଦୋଷର ଆଧିକ୍ୟ ବର୍ଣ୍ଣନା କରିବାକୁ ହେବ । ଗୁଣାଧିକ୍ୟ ବର୍ଣ୍ଣନାରୁ ଯେଉଁ ପାପ ହୁଏ, ଦୋଷବ୍ୟକ୍ତ କରିବା

ଦ୍ୱାରା ଉକ୍ତପାପର ଏକପ୍ରକାର ପ୍ରାୟଶ୍ଚିତ୍ତ ହୁଏ । ଅନେକ କବିମାନେ ନିଜର ପେଟ ପାଇଁ ଏହି ପାପ କରନ୍ତି, କିନ୍ତୁ ପ୍ରାୟଶ୍ଚିତ୍ତ ବେଳକୁ ପଶ୍ଚାତ୍‌ପଦ ହୁଅନ୍ତି, କେବଳ ପେଟଟା ପୋଷିବା ସକାଶେ ତାହାଙ୍କୁ ଏହି ପାପ କରିବାକୁ ପଡେନାହିଁ, କିନ୍ତୁ ଅଯଥା ଲୋଭର ବଶବର୍ତ୍ତୀ ହେଲେ ଲୋକର ପାପ କରିବାକୁ ପ୍ରବୃତ୍ତି ଜନ୍ମେ । କେବଳ ପ୍ରୟୋଜନରେ ପରିତୃପ୍ତି ଲାଭ କଲେ ଲୋଭର ପ୍ରାବଲ୍ୟ ରହେ ନାହିଁ, କିନ୍ତୁ ବିଳାସିତାର ପ୍ରଶ୍ରୟ ହେଲେ ଲୋଭର ମାତ୍ରା ଦିନକୁଦିନ ବଢେ । ପ୍ରୟୋଜନ ଏବଂ ବିଳାସ ମଧ୍ୟରେ ପ୍ରଭେଦ ବୁଝି ରଖିବାକୁ ହେବ । କବିମାନେ କୌଣସି ଲୋକର ସାମାନ୍ୟ ଗୁଣକୁ ନେଇ ଗରିଷ୍ଠ ଗୁଣ ଭାଣିରେ ପରିଣତ କରନ୍ତି । ଏହା କବି ହୃଦୟରେ ଉଦାରତାର ପରିଚୟ ଦିଏନାହିଁ, କେବଳ ତାହାଙ୍କର ସଙ୍କୀର୍ଣ୍ଣ ସ୍ୱାର୍ଥପରତାର ଜ୍ୱଳନ୍ତ ଉଦାହରଣ । ଯେଉଁମାନଙ୍କର ଗୁଣ ବର୍ଣ୍ଣନା କରାଯାଏ ସେମାନେ କବିଙ୍କର କଳ୍ପନା ଶକ୍ତିର ପ୍ରଶଂସା କରି ପାରନ୍ତି ନାହିଁ. କେବଳ ନିଜର ଅସୀମ ଗୁଣ-କୀର୍ତ୍ତନ ଶ୍ରବଣରେ ସ୍ଫୀତ ହୋଇ ଆପଣା ମନରେ ବୃଥା ମାନ ପୋଷଣ କରନ୍ତି । ଯେଉଁମାନେ ନିଜ ଗୁଣ ଗରିମାର ପ୍ରଶଂସା ଶ୍ରବଣରେ ଅହଂକାରାନ୍ୱିତ ହୁଅନ୍ତିନାହିଁ, କେବଳ ପ୍ରଶଂସା ଗୀତିକାର ଧନ୍ୟବାଦ କରନ୍ତି, ସେମାନଙ୍କ ସଂଖ୍ୟା ଜଗତରେ ଅତ୍ୟନ୍ତ ବିରଳ । ଏପରି ଗୁଣବାନ୍ ଲୋକଙ୍କ ଆଗରେ ଏହି ଧରଣର କବିମାନେ ନୀରବ ରହିବା ଶ୍ରେୟସ୍କର ମନେ କରନ୍ତି, ଯେହେତୁ ଏହି ଶୁଷ୍କ ପ୍ରଶଂସା ଏହାଙ୍କ ଠାରେ ପଣ୍ଡ ହୁଏ, ତଦ୍ୱାରା କବିଙ୍କର ଅଯଥା ଅର୍ଥଲାଭ ହୋଇ ପାରେନାହିଁ । ଏହିପରି ମିଥ୍ୟା ପ୍ରଶଂସା ପୂର୍ଣ୍ଣକ କବିତା ଦ୍ୱାରା କବିଙ୍କର ତତ୍‌କାଳୀନ ଗୃହଚଳିବା ଲାଭ ହେଉନାହିଁ ଯାହା ବିଷୟରେ କବିତା ବୋଲାଯାଏ ତାହାଙ୍କର ତଦ୍ୱାରା ଅଶେଷ କ୍ଷତି ସାଧିତ ହୁଏ । କବିମାନଙ୍କର ରଚନା ଅନେକାଂଶରେ କପୋଳକଳ୍ପିତ, ଏହା ସାଧାରଣତଃ କଳ୍ପନା ଭିତ୍ତି ଉପରେ ପ୍ରତିଷ୍ଠିତ ହୁଏ । କବିମାନେ ଏହି କଳ୍ପିତ ମିଥ୍ୟା ରାଜ୍ୟରେ ବିଚରଣ କରନ୍ତି, ଏହି କବିତା-କୁଜ୍‌ଝଟିକାରେ ପଡି ଅନେକେ ଅଭିଭୂତ ହୁଅନ୍ତି; ଅନେକେ ଏହି କବି ଉକ୍ତିକି ବସ୍ତୁତଃ ସତ୍ୟ ମଣି ବିଷମ ଭ୍ରମରେ ପଡନ୍ତି । କବିତାର ସ୍ୱର୍ଗୀୟ ମାଧୁରୀ, ଦୁଃଖର ବିଷୟ, ଆଜି ପ୍ରତାରଣା ଗୀତିକାରେ ପରିଣତ ହୋଇଅଛି । ଯାହାର ସୁ କବିତା ଥାଏ ତାହାର ଅନ୍ୟ ପାର୍ଥିବ ବିଭବରେ କି ପ୍ରୟୋଜନ ? କିନ୍ତୁ କବିମାନେ ଟ ୫ (ଭିକ୍ଷା ପାଇବା ନିମନ୍ତେ ପ୍ରଶଂସାଜୀବ ଧନୀମାନଙ୍କ ଦ୍ୱାରେ ୫ ଶଗଡ ମିଥ୍ୟା ଢାଳି ଦେଇ ଯାଅନ୍ତି । ଅନେକ ଧନୀ ଲୋକେ ଅଜସ୍ର ଧନ ଦେଇ ଏହି କବିତା ପ୍ରଣୟନର ପ୍ରଶ୍ରୟ ଦିଅନ୍ତି ବାଗ୍‌ଦେବୀ ସରସ୍ୱତୀ ଧନଦା ଲକ୍ଷ୍ମୀଙ୍କ ନିକଟରେ ଏକାନ୍ତ ନାଳିରଙ୍କା ସ୍ୱୀକାର

କରନ୍ତି, ଏହା ବଡ଼ମୂର୍ଖତା ମାତ୍ର । ରତ୍ନାନ୍ୱିତା ବାରବଧୂକୁ ଦେଖି କୁଳାଙ୍ଗନା କି କୁଳଟା ହେବାକୁ ଗୃହେ ? ବିନା ଆଶ୍ରୟରେ କବିତା ବର୍ତ୍ତିପାରେ ନାହିଁ ବୋଲି କୁହାଯାଉଛି । ତେବେ ମିଥ୍ୟାର ପ୍ରଶ୍ରୟ ଦେବାକି କବିତାର ଆଶ୍ରୟ ? ଏହି ଆଶ୍ରୟ ନପାଇଲେ କି ସୁକବିତା ଗୁଡ଼ିକ ସାହିତ୍ୟ ଭଣ୍ଡାରରେ ତିଷ୍ଠି ପାରିବ ନାହିଁ ? କବିତା ଯେତେବେଳେ ଭଙ୍ଗସ୍ତୁତିରେ ପରିଣତ ହୋଇଅଛି ତାହାର ଏପରି ହୀନାଶ୍ରୟ ଗ୍ରହଣ କରିବା ଅସଙ୍ଗତ ନୁହେ ।

ପୂର୍ବେ କୁହାଯାଇଅଛି କବିଙ୍କର କଳ୍ପନା ରାଜ୍ୟ ଅସୀମ । ସେ ତହିଁରେ ମୁକ୍ତ ଭାବରେ ବିଚରଣ କରନ୍ତି । ତାହାଙ୍କର ସ୍ୱାଧୀନ ଚେତନା ପ୍ରସୂତ ଭାବ ନିଚୟ କବିତା ରତ୍ନ ରୂପେ ଗୃହୀତ ହୁଏ । କବିମାନେ ନୃତ୍ୟ କଳା, କି ରାଜ-ନୀତି, କି ସମାଜନୀତି, କି ବିଷୟନୀତି ସକଳ କାର୍ଯ୍ୟ କ୍ଷେତ୍ରରେ ଏମାନେ ସଂସ୍କାରକ ରୂପେ ଗୃହୀତ ହେବାର କଥା, ଯେହେତୁ ଏମାନେ ଦୋଷ ଗୁଣ ସବୁ ଉଦ୍-ଘାଟନ କରି ପ୍ରକୃତ ବିଷୟ ମନୋମୁଗ୍ଧକର ଭାଷାରେ କହିଦେଇ ପାରନ୍ତି । ସେମାନେ ପ୍ରକୃତ କଥା ପ୍ରକାଶ କରି ଦିଅନ୍ତି ବୋଲି ଲୋକଙ୍କର ଏମାନଙ୍କ ଠାରେ ଯଥେଷ୍ଟ ଭକ୍ତି ଥାଏ, କିନ୍ତୁ ଅନେକ କବି ଆଜ ଧନୀ ଲୋକଙ୍କର କ୍ରୀତଦାସ, ଧନାଶା ଜନିତ ପରମୁଖାପେକ୍ଷୀ ଭିକ୍ଷୁକ । ସେମାନଙ୍କର ବନ୍ଧନ ସ୍ୱରୂପ ଶୃଙ୍ଖଳଟି ସ୍ୱର୍ଣ୍ଣ ନିର୍ମିତ ହେଲେହେଁ ବନ୍ଧନ କାର୍ଯ୍ୟରେ ଲୌହ ଶୃଙ୍ଖଳର ସମାନ । ଏହି ବନ୍ଧନ ଏମାନଙ୍କୁ ଆଉ ମୁକ୍ତ ରଖି ଦଏନାହିଁ । ଏହିପରି ଆବଦ୍ଧ ଅବସ୍ଥାରେ ଏମାନଙ୍କର ଆଉ ସୁକବିତା କାହୁଁ ଜନ୍ମିବ ? ଏହି ବନ୍ଧନରେ ପଡ଼ି ଅନ୍ଧ ଥିବାବେଳେ ନରକ, ସ୍ୱର୍ଗପରି ପ୍ରତୀୟମାନ ହୁଏ, ବିଶୁଦ୍ଧ ବର୍ବରତା ବିଲକ୍ଷଣ ସଭ୍ୟତା ବୋଲି ଗୃହୀତ ହୁଏ, ଗଣ୍ଡମୂର୍ଖତା ବିଚକ୍ଷଣ ପାଣ୍ଡିତ୍ୟରେ ପରିଣତ ହୁଏ, କୃପଣତା, ଦାନଶୀଳତା ରୂପେ ବର୍ଣ୍ଣିତ ହୁଏ, କର୍ଦ୍ଦମ ଦୁର୍ଗମ ଜର୍ଜ୍ଜ କୁଟୀର ମଧ୍ୟ ଅମର ସୌଧ ରୂପେ ପ୍ରଦର୍ଶିତ ହୋଇଥାଏ । ଏହିପରି କବି ଉକ୍ତି ସକଳ କାକୁକ୍ତିରେ ପରିଣତହୁଏ । ଏହିପରି କବିତା ରଚନା ଦ୍ୱାରା କବିର, ସମାଜର ତଥା ଦେଶର ପରିଣାମରେ ମଙ୍ଗଳ ସାଧିତ ହୁଏନାହିଁ ବରଂ କ୍ଷତହୁଏ — କବିତାର ଗୌରବ ନଷ୍ଟ ହୁଏ । ତାହା କେବଳ କବିକଳ୍ପନା ବୋଲି ଉପେକ୍ଷିତ ହୁଏ । କବିତାଟି ଯାହାର ବର୍ଣ୍ଣନାତ୍ମକ ହୋଇଥାଏ ସେ ଅଯଥା ଅହଂକାରରେ ସ୍ଫୀତହୋଇ ଆପଣାର ତ୍ରୁଟି ପୂରଣ କରିବାକୁ ଚେଷ୍ଟା କରେନାହିଁ, ପୁଣି ସମାଜ ଚକ୍ଷୁରେ ଏହି ଜଘନ୍ୟ ଆଦର୍ଶ କୁଫଳ ଜନ୍ମାଏ ।

କବିତା କ୍ଷେତ୍ର ମଧ୍ୟ ଅନ୍ୟ ଏକ ପ୍ରକାର ଗତି ଦେଖାଯାଏ । 'ବିଦ୍ୟାବିବାଦାୟ ଧନଂମଦାୟ' । ରୀତି ଅନୁସାରେ ବିବାଦରେ ମଧ୍ୟ କବିତାର ଚର୍ଚ୍ଚାହୁଏ ପୁଣି ଈର୍ଷା-

ବଳରୁ ଅନ୍ୟର ସାମାନ୍ୟ ତ୍ରୁଟିର ଉଲ୍ଲେଖ ବିଦ୍ରୂପ କରାଯାଏ । କବିତା-ଚାତୁରୀର ଏହା ଅନ୍ୟତମ ପ୍ରଣାଳୀ । କିନ୍ତୁ ଏଥିରେ ମକଦ୍ଦମା ଓ ରାଜଦଣ୍ଡର ଭୀତିଥାଏ, ସୁତରାଂ ଏହିପଥ ସଂକୀର୍ଣ୍ଣ ଏବଂ ଅପଦଜନକ । ବହୁଲୋକ ଏହିମାର୍ଗର ଅନୁସରଣ କରି ପାରନ୍ତି ନାହିଁ, ଏହା ଏକ ମଙ୍ଗଳର ବିଷୟ ।

—O—

# ଇତିହାସ ।

ଜାତିର ଇତିହାସହିଁ ଜାତୀୟ ପାର୍ଥକ୍ୟ ରକ୍ଷାକରେ, ଜାତୀୟତାକୁ ଅକ୍ଷୁଣ୍ଣ ରଖେ ଏବଂ ଜାତୀୟ ଉନ୍ନତି ସାଧନକରେ । ଯେଉଁ ଜାତିର ଇତିହାସ ନାହିଁ, ସେହି ଜାତି ଜାତିରେ ଗଣ୍ୟ ହୁଏନାହିଁ । ପୁଣି ଇତିହାସ ଅଭାବରେ ବିଖ୍ୟାତ ଜାତି ମଧ୍ୟ କାଳ କ୍ରମେ ଲୁପ୍ତ ହୋଇଯାଏ । ନିଜର ଭୂତ ଏବଂ ବର୍ତ୍ତମାନ ଅବସ୍ଥା ନ ଜାଣି ନ ବୁଝିଲେ କୌଣସି ବ୍ୟକ୍ତିର ତଥା ଜାତିର ଆତ୍ମ ସମ୍ମାନ ଆସେନାହିଁ । ଆତ୍ମ ସମ୍ମାନ ନଥିଲେ କେହି କେବେ ଉନ୍ନତି ପଥରେ ଅଗ୍ରସର ହୋଇ ପାରେନାହିଁ । ଭାରତ ଜାତି ଭାରତୀୟ ଇତିହାସ ଧାରାବାହିକ ରୂପେ ରଖି ନାହାନ୍ତି, ଯଦିବା ଅଛି ତେବେ ତାହା ବୁଝି ନାହାନ୍ତି, ଯଦିବା ବୁଝିଛନ୍ତି ତେବେ ସେହି ଆଦର୍ଶାନୁସାରେ ଆଚରି ନାହାନ୍ତି । ଯେଉଁ ଛାତ୍ରମାନେ ଦେଶୀୟ ଭାଷାରେ ଜାତୀୟ ସାହିତ୍ୟ ପଢି ନାହାନ୍ତି ସେମାନେ ଭବିଷ୍ୟତରେ ଦେଶର ଗଣ୍ୟମାନ୍ୟ ନେତୃସ୍ଥାନୀୟ ବା ଉନ୍ନତି-ପ୍ରୟାସୀ ହୋଇ ପାରନ୍ତି ନାହିଁ । ଭାରତୀୟ ଛାତ୍ରମାନେ ବିଲାତି ଇତିହାସ ବା ଗ୍ରୀସ ଇତିହାସ ଯେତେ ଜାଣନ୍ତି ଭାରତ ଇତିହାସ ସେତେ ଜାଣନ୍ତି ନାହିଁ । ଆପଣା ପୁରାଣ ଇତିହାସ ଜ୍ଞାନାଭାବରୁ ଏମାନେ ନିଜର ଉଜ୍ଜ୍ୱଳ ଆଦର୍ଶ ହରାଇ ଏତେଦୂର ଲକ୍ଷଭ୍ରଷ୍ଟ ଏବଂ ପରମୁଖାପେକ୍ଷୀ ହୋଇ ପଡ଼ିଛନ୍ତି ଯେ ପରିଣାମରେ ଗୋଲାମ ଗିରିକି ମଧ୍ୟ ପରମ ଦୁର୍ଲଭ ମଣୁଅଛନ୍ତି । ବଙ୍ଗଳ ଭାରତୀୟ ଭାଷାରେ ଛାତ୍ର ମାନଙ୍କ ପାଠୋପଯୋଗୀ ବିବିଧ ଭାରତ ଇତିହାସ ଲେଖାଯିବା ଉଚିତ । ଏବଂ ପ୍ରତ୍ୟେକ ଜାତିର ଜାତୀୟ ଇତିହାସ ମାତୃ ଭାଷାରେ ଲିଖିତ ରହିବା ଆବଶ୍ୟକ । ପୁଣି ଛାତ୍ର ମାନଙ୍କର ଏହି ଇତିହାସ ପାଠ ଅପରିହାର୍ଯ୍ୟ ସ୍ଥିରହେବା ଉଚିତ । ପ୍ରାଚୀନ ପ୍ରସିଦ୍ଧ ଉତ୍କଳ ଜାତି ଆଜି ମୁଣ୍ଡଟେକି ପାରୁନାହିଁ, ଭାରତୀୟ ଅନେକ ଉନ୍ନତ ଜାତି ମାନଙ୍କ ପଛରେ ପଡ଼ିଛି ।

ଜାତୀୟ ଇତିହାସ ସମ୍ପଦର ଅଭାବ ଏହି ଅବନତିର ଅନ୍ୟତମ କାରଣ । ଦୁଃଖର ବିଷୟ, ଏ ପର୍ଯ୍ୟନ୍ତ ଉତ୍କଳ ଇତିହାସ ଲେଖାଯାଇ ନାହିଁ, କିବା ଯେ ଦିଗରେ

ସ୍ୱଧର୍ମତ ଚେଷ୍ଟା ଦେଖାଯାଉ ନାହିଁ । ଓଡ଼ିଶା ଦେଶର ଇତିହାସ ଲେଖାନାହିଁ, ଓଡ଼ିଆ ଜାତିର ଇତିହାସ ଲେଖା ନାହିଁ, କିମ୍ବା ଉତ୍କଳ ଭାଷାର ଇତିହାସ ଲେଖା-ନାହିଁ । ମହାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟ ଯେଉଁ ଓଡ଼ିଶାର ଇତିହାସ ଖଣ୍ଡିକ ଲେଖି ଯାଇଛନ୍ତି, ତାହା ଛଡ଼ା ଓଡ଼ିଶାର ଅଉ ଇତିହାସ ଲେଖାଯାଇଁ ନାହିଁ । ଅନ୍ୟ ଇତିହାସ ଲେଖାହେବା ଦୂରେଥାଉ ଆଚାର୍ଯ୍ୟଙ୍କର ଇତିହାସ ଖଣ୍ଡିକ ମଧ୍ୟ ପଢ଼ାଯାଉ ନାହିଁ । ଏ ପର୍ଯ୍ୟନ୍ତ ଏହି ଇତିହାସର ଦ୍ୱିତୀୟ ସଂସ୍କରଣ ବାହାରିପାରି ନାହିଁ । ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁ ଉତ୍କଳ ଭାଷାର ଖଣ୍ଡେ ଇତିହାସ ଲେଖିବାକୁ ଭାବୁଥିଲେ, କିନ୍ତୁ ତାଙ୍କ ଜୀବନରେ ଏହି ସୁଯୋଗ ସେ ପାଇପାରି ନଥିଲେ । ଆସିକାର ମୁନସିଫ ଶ୍ରୀମାନ ତାରିଣୀଚରଣ ରଥ ସେଦିନ ଉତ୍କଳ ସାହିତ୍ୟର ଖଣ୍ଡେ ଇତିହାସ ଲେଖିଛନ୍ତି । କିନ୍ତୁ ତାହା ଯଥେଷ୍ଟ ନୁହେ । ଏହି ପୁସ୍ତକ ଖଣ୍ଡିକ ଇତିହାସର ଆଦର୍ଶ ବା ଖଣ୍ଡେ ଟିପ୍ପଣି ମାତ୍ର, ଯେପରି କିଛିକାଳ ପୂର୍ବେ ଓଡ଼ିଶାର ସଂକ୍ଷିପ୍ତ ଇତିହାସ ନାମରେ ବାଲେଶ୍ୱରରୁ ଖଣ୍ଡେ ପୁସ୍ତକ ବାହାରିଥିଲା । କୌଣସି ଭବୀ ଇତିହାସ ଲେଖକ ଏଥିରୁ ଅନେକ ସାହାଯ୍ୟ ପାଇ ପାରିବେ । ରଥ ମହାଶୟ ଖଣ୍ଡେ ଘୁମୁସର ଇତିହାସ ଲେଖିଛନ୍ତି, ପୁଣି ଏବେ ଗଞ୍ଜାମ ଇତିହାସ ଲେଖିବାକୁ ବସିଛନ୍ତି । ଈଶ୍ୱର କରନ୍ତୁ ସେ କୃତକାର୍ଯ୍ୟ ହୁଅନ୍ତୁ । ପଣ୍ଡିତ ମଧୁସୂଦନ ଦାସ କଣ୍ଟିକ ଭାରତ ଇତିହାସ ସ୍କୁଲ ମାନଙ୍କରେ ପଢ଼ାଯାଉ ଅଛି । ଏ ମହାଶୟ ଚେଷ୍ଟାକଲେ ବହୁଳ ଭାବରେ ଓଡ଼ିଶାର ଇତିହାସ ଲେଖି ପାରନ୍ତେ । ସରକାର କର୍ମଗୃହୀ ମାନେ କହନ୍ତି ଯେ ସମୟାଭାବରୁ ସେମାନେ ପୁସ୍ତକ ଲେଖି ପାରନ୍ତି ନାହିଁ । କିନ୍ତୁ ସେମାନେ ରଥ ମହାଶୟଙ୍କର ଆଦର୍ଶ ଦେଖନ୍ତୁ । ସମୟର ଅଭାବ ନାହିଁ, କେବଳ ମନର ଅଭାବ । ଆଳସ୍ୟ ଏବଂ ଉଦାସୀନତା ହେତୁ ଅନେକ ଶକ୍ତିଶାଳୀ ଲୋକେ କିଛି ଲେଖି ପାରନ୍ତି ନାହିଁ । ମନ ଥିଲେ ମାର୍ଗ ଅଛି, ଅସାଧ୍ୟ ସାଧ୍ୟ ହେଉଅଛି ।

ପ୍ରତ୍ୟେକ ଜିଲ୍ଲାର ଇତିହାସ ପୃଥକ ଭାବରେ ପ୍ରଥମେ ଲେଖାଯାଉ । ତାପରେ ସମସ୍ତ ଓଡ଼ିଶା ଇତିହାସର ପନ୍ଥା ସୁଗମ ହେବ । ଉତ୍କଳ ଦେଶରେ ଅନେକ ଗଡଜାତ ଓ ଜମିଦାରୀ ଅଛି । ରାଜା ଜମିଦାରମାନେ ବିଚାର କଲେ ନିଜ ରାଜ୍ୟର ଏବଂ ଜମିଦାରୀର ଇତିହାସ ଲେଖାଇ ପାରିବେ । ରାଜଧାନୀ ମାନଙ୍କରେ ଭାତ ବରତନ ଖାଇ-ଜମିବାଡ଼ି ଭୋଗକରି ଲମ୍ବା ଚଉଡ଼ା ଉପାଧି ବିଭୂଷିତ ହୋଇ ଅନେକ ପଣ୍ଡିତ ନିବାସ କରନ୍ତି । ଏମାନେ ଶ୍ଳୋକ ରଚନା କରନ୍ତି କାବ୍ୟ-ନାଟକାଦି ଲେଖନ୍ତି, ନତୁବା ବିଦ୍ୟାକାର୍ଯ୍ୟରେ ରାଜା ମାନଙ୍କର

ସ୍ତୁତି ବାଦନ କରନ୍ତି । କିନ୍ତୁ କେହିହେଲେ ଗଦ୍ୟାକାରରେ ରାଜ୍ୟର ଇତିହାସ ଲେଖିବାକୁ ଚେଷ୍ଟା କରନ୍ତି ନାହିଁ । ଏମାନେ ଯତ୍ନକଲେ ଯେ କିଛି କରି ପାରନ୍ତେ ନାହିଁ ଏହା ନୁହେଁ, ଅବଶ୍ୟ କିଛି ଲେଖି ପାରନ୍ତେ । ଏହି ସମସ୍ତ ଉପାଦାନ ଯୋଗେ ଭାବି ଲେଖକମାନେ ଓଡିଶାର ପୂର୍ଣ୍ଣ ଇତିହାସ ଲେଖିବାକୁ ସମର୍ଥ ହେବେ ।

ପୁସ୍ତକ ଲେଖିଲେ ଛପାହୋଇ ପାରିବ ନାହିଁ ବୋଲି ଅନେକ ବୁଦ୍ଧିମାନ ଶିକ୍ଷିତ ଲୋକେ ଲିଖନରୁ ନିବୃତ୍ତ ହୁଅନ୍ତି ପୁଣି ପୁସ୍ତକ ବିକ୍ରୟରୁ ଧନ ଆସିବ ନାହିଁ ପରା ବୋଲି ଅଧିକ ହତାଶ ଏବଂ ନିରୁଦ୍ୟମ ହୋଇ ଯାଆନ୍ତି । ପୁସ୍ତକଟା ସ୍କୁଲରେ ପାଠ୍ୟହେବ, ଅନେକ ଲୋକ କିଣିବେ, ତହିଁରୁ ବେଶି ଧନ ଉପାର୍ଜ୍ଜନ ହେବ, ଅନ୍ତତଃ କୌଣସି ରାଜା ସାହେବ ପୁସ୍ତକ ଖଣ୍ଡିକ ନିଜ ବ୍ୟୟରେ ଛପାଇ ଦେବେ ଏହି ଆଶ୍ୱାସନା ପାଇଲେ ବୋଧହୁଏ କେତେଜଣ ଲେଖକ ବାହାରି ପାରିବେ । ବିଦ୍ୟା ଦାନରେ ମଧ୍ୟ ଧନ ସମ୍ପାଦନ ହେଲା ପ୍ରଥାଟା ଅଭିସନ୍ଧ । ଅଳଙ୍କାର ଧାରଣ କରିବା ପାଇଁକି କୁଳ କନ୍ୟାମାନେ ବେଶ୍ୟା ହୁଅନ୍ତି ।



# ହିନ୍ଦୁମାନଙ୍କର ଧର୍ମ ଶାସ୍ତ୍ର ।

ହିନ୍ଦୁମାନଙ୍କୁ ଶାସ୍ତ୍ରପ୍ରାଣ ବୋଲି କୁହା ଯାଇ ଥାଏ । ଏହାର ଅର୍ଥ ଏପରି ନୁହେ ଯେ ହିନ୍ଦୁମାନେ କେବଳ ଶାସ୍ତ୍ରୋକ୍ତ ବ୍ୟବସ୍ଥା ପାଳନ କରି ଥାନ୍ତି ଏବଂ ଧର୍ମଶାସ୍ତ୍ର ବହିର୍ଭୂତ କରନ୍ତି ନାହିଁ । ହିନ୍ଦୁମାନଙ୍କର ସକଳ ପ୍ରକାର ଆଚାର ବ୍ୟବହାର, ରୀତି ନୀତି ଓ ଶୁଭାଶୁଭ କାର୍ଯ୍ୟମାନ ଧର୍ମଶାସ୍ତ୍ର ଅନ୍ତର୍ଭୁକ୍ତ ଅଟେ । ଏପରି କି ଖାଇବା ପିଇବା, ବସିବା ଉଠିବା, ଶୋଇବା ଚାଲିବା ଏବଂ ମଳ ମୂତ୍ର ତ୍ୟାଗ କରିବା ଇତ୍ୟାଦି ବିଷୟରେ ଧର୍ମଶାସ୍ତ୍ରରେ ବ୍ୟବସ୍ଥା ଦିଆ ଯାଇଅଛି । ଏହି ବ୍ୟବସ୍ଥା ଗୁଡିକରୁ ଅନେକ ଅଲକ୍ଷିତ ଭାବରେ ଦେଶକାଳ ପାତ୍ରାନୁସାରେ ପରିତ୍ୟକ୍ତ, ପରିମାର୍ଜ୍ଜିତ ଓ ପରିବର୍ଦ୍ଧିତ ହେଉ ଥିଲେହେଁ ହିନ୍ଦୁ ସାଧାରଣ ପ୍ରେକ୍ତ କୌଣସି ଏକ ଏକ ବ୍ୟବସ୍ଥା ସୂତ୍ରରେ ଅତି ପ୍ରାୟ ଆବଦ୍ଧ ରହିଥାନ୍ତି ବୋଲି ଏମାନେ ଶାସ୍ତ୍ରପ୍ରାଣ ବୋଲି ବିଦିତ ହୋଇଥାନ୍ତି ।

ବିଷୟ ଓ ଭାବରୁ ଶାସ୍ତ୍ରର ଉତ୍ପତ୍ତି ହୋଇଥାଏ । ପୁଣି ଶାସ୍ତ୍ରକାରମାନେ ମଧ୍ୟ ଅବସ୍ଥାକୁ ଚାହିଁ ବ୍ୟବସ୍ଥା ଦେଇ ଥାନ୍ତି । ଏହି ଜଗତରେ ମାନବ ସମା-

କରେ ଅନୁକ୍ଷଣ ଶାସ୍ତ୍ର ପ୍ରଣୟନ ଲାଗିଅଛି । ବିଷୟ ବାହୁଲ୍ୟ ଓ ଭାବ ବାହୁଲ୍ୟ ହେତୁ ଶାସ୍ତ୍ର ବାହୁଲ୍ୟର ପ୍ରଚୁର ହୋଇ ଥାଏ । କୌଣସି ବ୍ୟକ୍ତିର କପୋଳ-କଳ୍ପିତ କଥା ହେଉ ମଧ୍ୟ ଯଦି ତାହା ଶାସ୍ତ୍ରୀୟ ପ୍ରଣାଳୀ ଅବଲମ୍ବନ କରଥାଏ, ଯୁକ୍ତି ସଙ୍ଗତ ଓ ପ୍ରକୃତ ଭାବାପନ୍ନ ହୋଇଥାଏ, ତେବେ ତାହାକୁ ଶାସ୍ତ୍ରବାକ୍ୟ ରୂପେ ଗ୍ରହଣ କରିବାକୁ ହେବ, ପୁଣି ଶାସ୍ତ୍ରୋକ୍ତ ବୋଲି କୁହାଯାଉ ଥିଲେହେଁ, ଯଦି କୌଣସି ବାକ୍ୟ ଯୁକ୍ତିସଙ୍ଗତ ନ ଥାଏ ଓ ଶାସ୍ତ୍ରୀୟ ପ୍ରଣାଳୀ ଅବଲମ୍ବନ କର ନ ଥାଏ, ତେବେ ତାହାକୁ କପୋଳ କଳ୍ପିତ ଅସାର ପ୍ରଳାପ ବୋଲି ପରିତ୍ୟାଗ କରିବା ଉଚିତ । "ବିଦ୍ୟାଦାନଂ ମହାପୁଣ୍ୟଂ" "ଆରନାଳଂ ସୁରାସମଂ" ଏବମ୍ବିଧ ବାକ୍ୟମାନ କୌଣସି ପ୍ରସିଦ୍ଧ ଶାସ୍ତ୍ରରେ ଲେଖା ନ ଥିଲେହେଁ ଏହାକୁ ଶାସ୍ତ୍ରୋକ୍ତ ବୋଲିବାକୁ ହେବ, ଯେହେତୁ ବିଦ୍ୟାଶିକ୍ଷା ମଙ୍ଗଳ ଜନକ । ଯାହା ମଙ୍ଗଳମୟ ତାହା ପୁଣ୍ୟ କାର୍ଯ୍ୟ, ସୁତରାଂ ବିଦ୍ୟା ଦାନଦ୍ୱାରା ପୁଣ୍ୟ ସାଧିତ ହେବା ଯୁକ୍ତି ସଙ୍ଗତ ପ୍ରକୃତ ବିଷୟ । ବାସି ତୋରାଣିରେ ସ୍ୱଳ୍ପ ପରିମାଣରେ ହେଲେହେଁ ମାଦକତାର ସତ୍ତା ଅନୁଭୂତ ହୋଇ ଥାଏ । ପୁଣି ଏହି ପ୍ରକାର ପର୍ଯ୍ୟୁଷିତ ଅନ୍ନରୁ ମଦ ତିଆର ହୋଇଥାଏ । ଅତଏବ ଉପରୋକ୍ତ ବାକ୍ୟ ଦ୍ୱୟକୁ ଶାସ୍ତ୍ର-ବାକ୍ୟ ବୋଲିବାକୁ ହେବ । 'କାର୍ପାସଂ କଟି ନିର୍ମୁକ୍ତଂ' "କୌପେୟଂ ଭୋଜନାନ୍ତରଂ" " ସାକ୍ଷାତ ଲବଣଂ ଖାଦ୍ୟଂ ସଦ୍ୟ ଗୋମାଂସ ଭକ୍ଷଣଂ" "ନାସାଗ୍ରଂ କେଶପର୍ଯ୍ୟନ୍ତଂ ତିଳକଂ ହରିମନ୍ଦିରଂ" ; "ବ୍ୟାଘ୍ରୋପି ଖାଦ୍ୟମାପ୍ନୋତି ନ ଗଚ୍ଛେତ୍ ଶଙ୍କରାଳୟଂ"— ଏହି ସମସ୍ତ ବାକ୍ୟ ଗୁଡିକ ଧର୍ମଶାସ୍ତ୍ରରେ ଲିଖିତ ଥିଲେହେଁ, ଏହା କପୋଳ-କଳ୍ପିତ ବୋଲଯାଇ ପାରେ । କାର୍ଯ୍ୟ କାରଣ ନିୟମାନୁସାରେ ଏହାର ଯୁକ୍ତି ସଙ୍ଗତ ସାର୍ଥକତା ପ୍ରତିପାଦିତ ହେବା ପର୍ଯ୍ୟନ୍ତ ଏହି ବାକ୍ୟ ଗୁଡିକ ଶାସ୍ତ୍ରୋକ୍ତ ବୋଲି ଯାଇ ନ ପାରେ । "ନସ୍ୟଦାନଂ ମହାପୁଣ୍ୟଂ" ଏଥିରେ ଯେଉଁ ପରିମାଣରେ ଶାସ୍ତ୍ରୀୟତା ବିଦ୍ୟମାନ, ଉପରୋକ୍ତ ବାକ୍ୟନିଚୟ ତଦ୍ରୂପ ଶାସ୍ତ୍ର-ସଙ୍ଗତ ହୋଇ ପାରେ ।

ଶାସ୍ତ୍ର ସଙ୍କଳନ ତିନି ଭାଗରେ ବିଭକ୍ତ—ପ୍ରଭୁ ସମ୍ମିତ, ସୁହୃଦ ସମ୍ମିତ ଓ କାନ୍ତା ସମ୍ମିତ । ଯେଉଁମାନେ ଶାସ୍ତ୍ର ବାକ୍ୟାନାଦରେ କୁଣ୍ଠିତ ନ ଥାନ୍ତି ସେମାନେ କାନ୍ତା ସମ୍ମିତରେ ପ୍ରୀତିଲାଭ କର ଥାନ୍ତି । ଅଶିକ୍ଷିତ ଏବଂ ଅଜ୍ଞ ଲୋକ ସାଧାରଣଙ୍କୁ ବୁଝାଇବା ନିମନ୍ତେ ଶାସ୍ତ୍ରଜ୍ଞ ପଣ୍ଡିତମାନେ ମଧ୍ୟ କାନ୍ତା ସମ୍ମିତ ଅବଲମ୍ବନ କରିଥାନ୍ତି । ପୁଣି ମନଧରା ଠେକାଠେକି, ଫୁସୁଲା ଫୁସୁଲି କଥା ହେଉ ମଧ୍ୟ ଯଦି ସଂସ୍କୃତ ଭାଷାରେ ବର୍ଣ୍ଣିତ ହୋଇଥାଏ, ତାହାକୁ ଲୋକସାଧାରଣ ପ୍ରଭୁ

ସମ୍ମତ ବୋଲି ନିର୍ଦ୍ଧାରଣ କରି ଥାନ୍ତି ନତୁବା ଅନ୍ଧବିଶ୍ୱାସର ବଶୀଭୂତ ହୋଇ ଅସାର କପୋଳ-କଳ୍ପିତକୁ ମଧ୍ୟ ଶାସ୍ତ୍ରୋକ୍ତ ବୋଲି ମାନ୍ୟ କରି ଥାନ୍ତି ।

ଶ୍ରୁତି, ସ୍ମୃତି, ପୁରାଣ—ଏହା ସବୁ ହିନ୍ଦୁମାନଙ୍କ ଧର୍ମ୍ମ ଶାସ୍ତ୍ର ଅଟେ । ହିନ୍ଦୁମାନେ ଧର୍ମ୍ମଶାସ୍ତ୍ରପ୍ରାଣ ବୋଲି କଥିତ । ବୋଧହୁଏ ଜଗତରେ ସର୍ବପ୍ରଥମେ ଆଦିମ ଜାତିମାନଙ୍କ ମଧ୍ୟରେ ହିନ୍ଦୁମାନେ ଭାରତରେ ବେଦର ରଚନା କରି ଥିଲେ । ଯଦିଓ ଏହା ସତ୍ୟ ହୁଏ, ତେବେ ମାନବଜାତିର ଶୈଶବାବସ୍ଥାରେ ଏହି ବେଦ ରଚିତ ହେଲା । ଶିଶୁ ସକାଶେ କଳ୍ପିତ କଥା ଯେ କିଶୋର ଓ ଯୁବକ ଲୋକଙ୍କ ପ୍ରତି ପ୍ରଯୁଜ୍ୟ ହେବ, ଏହା ବୋଲି ଯାଇ ନ ପାରେ । ଯଦି ବେଦକୁ ଚତୁର୍ମ୍ମୁଖ ବ୍ରହ୍ମାଙ୍କ ମୁଖ-ନିଃସୃତ ବାଣୀ ବୋଲି କୁହା ଯାଏ, ତେବେ ବ୍ରହ୍ମା ମଧ୍ୟ ଦେଶକାଳ ପାତ୍ରୋପଯୋଗୀ ଉପଦେଶ ଦେଇଥିବେ । ପୁଣି ଦେଶକାଳ ପାତ୍ର ପରିବର୍ତ୍ତନରେ ବେଦର ପରିବର୍ତ୍ତନ, ପରିବର୍ଦ୍ଧନ ଏବଂ ପରିମାର୍ଜ୍ଜନ ହେବ ନାହିଁ—ଏହି ଅଭିପ୍ରାୟ କରି ନ ଥିବେ । ଦେଶର ସ୍ଥିତି, କାଳର ଗତି ଓ ମନୁଷ୍ୟର ଅବସ୍ଥାନୁସାରେ ବେଦ ମଧ୍ୟ ଅଲକ୍ଷିତ ଭାବରେ ପଦବିନ୍ୟାସରେ ହେଉ ବା ଭାବାର୍ଥରେ ହେଉ ପରିବର୍ତ୍ତିତ ବା ପରିବର୍ଦ୍ଧିତ ହେଉଥାଏ । ଏହି ପରି-ବର୍ତ୍ତନଶୀଳ ଅନିତ୍ୟ ଜଗତରେ ବେଦ ଚିରସ୍ଥାୟୀକୁ ନିତ୍ୟ ଏବଂ ଅଟଳ ବୋଲି ଜ୍ଞାନ କରିବା ଯୁକ୍ତିସଙ୍ଗତ ବୋଧ ହେଉ ନାହିଁ । ବେଦକୁ ଶ୍ରୁତି କହନ୍ତି, ଅର୍ଥାତ୍ ବେଦ ଲେଖା ହୁଏ ନାହିଁ । ପୁରୁଷାନୁକ୍ରମେ ଶୁଣିଶୁଣି ବେଦକୁ ମନେ ରଖନ୍ତି । କିନ୍ତୁ ମାନବ ମନ ସାଧାରଣତଃ ଭ୍ରମାତ୍ମକ, ପୁଣି ସ୍ମରଣ ଶକ୍ତି ବିଶ୍ୱାସ ପାତ୍ର ନୁହେଁ, ଆଜି ଶୁଣିଥିବା କଥା ଯେତେବେଳେ କାଲି ବିସ୍ମୃତ ହୋଇଯାଏ ତେବେ ବେଦ ଗ୍ରନ୍ଥକୁ ଯୁଗଯୁଗାନ୍ତର ପୁରୁଷାନୁକ୍ରମେ ଅକ୍ଷୁର୍ଣ୍ଣ ରହି ପାରିବ, ଏହା ବୋଲିଯାଇ ପାରିବ ନାହିଁ, ବେଦ ଗ୍ରନ୍ଥକ ଲିପିବଦ୍ଧ ହେଲା ପରେ ମଧ୍ୟ ଘରେ୨ ତାହାର ବିଭିନ୍ନ ସଂସ୍କରଣ ରହିବା ସମ୍ଭବପର । ବେଦକୁ ଜ୍ଞାନ ବୋଲି ଅର୍ଥ କରିବାକୁ ହେବ, ଜ୍ଞାନର ଆଦି ବା ଅନ୍ତ ନାହିଁ । ସଂସାରର ପରିବର୍ତ୍ତନ ନିୟମ କ୍ରମେ ଏହାର କ୍ଷୟ ବା ବୃଦ୍ଧି ସମ୍ପାଦିତ ହୋଇଥାଏ । କିନ୍ତୁ ଅନୁଭବର ବୃଦ୍ଧି ସଙ୍ଗେ୨ ଜ୍ଞାନର ବୃଦ୍ଧି ହୋଇଥାଏ । ତେବେ ଜ୍ଞାନୀ ଲୋକଙ୍କର ଧାରଣାହିଁ ବେଦବାଣୀ ।

—o—

## ପୁରାଣ ।

ପୁରାଣରେ ଅଳୀକ ଓ ଯଥାର୍ଥ ଦୁଇକଥା ଥାଏ । ଅଳୀକ ଦୁଇ ଭାଗରେ ବିଭକ୍ତ ବୋଲିଯାଇ ପାରେ । ଭୟାନକ ଓ ରୋଚକ । ପୁରାଣରେ ଯେଉଁ ନୀତି

ଗୁଡ଼ିକ ବର୍ଣ୍ଣିତ ହୋଇଥାଏ, ଉକ୍ତ ନୀତି ଅନୁଯାୟୀ ବ୍ୟବସ୍ଥା ପ୍ରଦତ୍ତ ହୋଇ-ଥାଏ ପୁଣି ଐତିହାସିକ ବୃତ୍ତାନ୍ତ ସାହାଯ୍ୟରେ ଉକ୍ତ ବ୍ୟବସ୍ଥା ଗୁଡ଼ିକ ବ୍ୟକ୍ତିଗତ ଜୀବନରେ ପ୍ରତିପାଦିତ ହୋଇଥାଏ, ତାହାହିଁ ପୁରାଣର ଯଥାର୍ଥ ଅଂଶ । ଆଉ ମାରପେଚ, ଏହି ସାଧାରଣ ଲୌକିକ ବ୍ୟବହାର ସଙ୍ଗେ ସଙ୍ଗେ ଅତ୍ୟୁକ୍ତି ଓ ଅସମ୍ଭବ ଘଟଣାର ବର୍ଣ୍ଣନ ଯଥା ରକ୍ତ ନଦୀ ପ୍ରବାହ, ପର୍ବତାକାର ଶରୀର ଇତ୍ୟାଦି—ଏହିସବୁ ପୁରାଣର ଭୟାନକ ବିଷୟ ଅଟେ । କୌତୁହଳ ବର୍ଦ୍ଧକ ଶୃଙ୍ଗାରାଦି ରସାତ୍ମକ ଗଳ୍ପକୁ ରୋଚକ କୁହାଯାଇପାରେ । ଯଥା ପ୍ରାଚୀନାସ୍ତି, ସବିତା ଦେବତା, ଲପନମାଧୁରୀ-ପଙ୍କଜ ମଧ୍ୟରେ ଭୃଙ୍ଗ ଆସୀନ, ମଦନ ଶରାସନ ଭ୍ରୂ ଲତା ଇତ୍ୟାଦି ।

ପୁରାଣରେ ଅଳୀକ ଅଂଶ ବୃହତ୍ତର ଥିବା ହେତୁ ଯଥାର୍ଥ ଅଂଶ ଲୁପ୍ତ-ପ୍ରାୟ ରହେ, ପୁଣି ଶ୍ରୋତା ମଣ୍ଡଳୀରେ ଫଳପ୍ରଦ ହୁଏନାହିଁ । ଅଶିକ୍ଷିତ ଲୋକ ସାଧାରଣ ଏହି ଭୟାନକ ଓ ରୋଚକ ବିଷୟରେ ଭୁଲିଯାଇ ଯଥାର୍ଥ ପ୍ରତି କୌଣସି ଆସ୍ଥା ରଖନ୍ତି ନାହିଁ । ମାୟାରେ ଭୟ ଦେଖାଇବା ପୁଣି ଅଜାତ୍ୟରେ ଆସକ୍ତ ଜନ୍ମାଇବା ଅଳୀକ ଅଂଶର ପ୍ରଧାନ କଥା ହେଉଅଛି । ଲୋକସାଧାରଣ ପୁରାଣ ରଚୟିତାଙ୍କ ଉଦ୍ଦେଶ୍ୟ ବୁଝି ନପାରି ଅଳୀକ ଗଳ୍ପରେ ବିରତ ଥାଆନ୍ତି । ଏହି ପୌରାଣିକ ଗଳ୍ପହେତୁ ଲୋକରେ କୁସଂସ୍କାରର ମାନା ଦିନକୁଦିନ ବୃଦ୍ଧି ଲାଭ କରୁଅଛି । ଅଦ୍ୱିତୀୟ ପରଂବ୍ରହ୍ମଙ୍କ ପରିବର୍ତ୍ତେ ଆଜ ଭାରତରେ ଅସଂଖ୍ୟ ଦେଈ ଦେବତାଙ୍କର ସୃଷ୍ଟି ହୋଇଅଛି । ପରସ୍ପର ବିରୁଦ୍ଧ ଭାବାପନ୍ନ ଏହି ଦେବତା ଗୁଡ଼ିକୁ ଘେନି ହିନ୍ଦୁ ସମାଜରେ ଅନୈକ୍ୟ ଜାତ ହୋଇଅଛି । ଗଣ କର୍ମଗତ ଚତୁର୍ବର୍ଣ୍ଣରୁ ଆଜି ଅସଂଖ୍ୟ ଜାତିର ସୃଷ୍ଟି ହୋଇଅଛି । ବ୍ରତ ଉପାସନା ନାମରେ ନାନାବିଧ କୁରୀତି କୁନୀତି ଓ ଅଶ୍ଳୀଳ ବ୍ୟାପାର ଚଳୁଅଛି । ପୁଣି ପରିଶେଷରେ ଲୋକେ ଆତ୍ମ ଜ୍ଞାନର ଶୂନ୍ୟ ହୋଇ ଆପଣାକୁ ନଗଣ୍ୟ ନୀଚ ମନେକରି ମିଥ୍ୟା ବିଶ୍ୱାସର ଏକାନ୍ତ ବଶୀଭୂତ ହୋଇ ପଦେ ପଦେ ଅପଦ ଭୋଗ କରନ୍ତି ।

ପୁରାଣ ଶ୍ରବଣକୁ ମଧ୍ୟ କାଳକ୍ଷେପଣ କୁହାଯାଏ । ବିସୂଚିକା ପ୍ରଭୃତି କୌଣସି ସଂକ୍ରାମକ ରୋଗୋପଦ୍ରବ ସମୟରେ ଚହଳ କରିବା ସକାଶେ ପୁରାଣ କଥିତ ହୋଇଥାଏ । "ଭଗବତ" ନାମରେ ଉଖୁଡ଼ା ସାମଗ୍ରୀ ଭୋଜନ ସକାଶେ ପୁରାଣ ହୋଇଥାଏ । ସୂତିକାଗାରରେ ଅବା କୌଣସି ପୀଡ଼ିତ ବ୍ୟକ୍ତିର ଶେଷ କାଳରେ ପୁରାଣ ମଧ୍ୟ ହୋଇଥାଏ, ନତୁବା କୌଣସି କାମ୍ୟଫଳ ପ୍ରାପ୍ତି ଅର୍ଥରେ

ପୁରାଣ କରା ଯାଇଥାଏ । ସାଧାରଣତଃ ଏହିପରି କୌଣସି ବିଶେଷ କାରଣରୁ ପୁରାଣ ପଠିତ ହୋଇଥାଏ । ଏହି ପୁରାଣ କଥା ବାୟୁ ବେଗରେ ଏକ କର୍ଣ୍ଣ କୁହରରେ ପ୍ରବେଶ କରି ଅନ୍ୟ କର୍ଣ୍ଣ ଦ୍ୱାରରେ ବହିର୍ଗତ ହୋଇଥାଏ । ପୁରାଣ ମାନଙ୍କରେ ଐତିହାସିକ ବୃତ୍ତାନ୍ତ ଏହିପରି ଜଟିଳ ଭାବରେ କୁହା ଯାଇଥାଏ ଯେ ଅନେକେ ସାତକାଣ୍ଡ ରାମାୟଣ ପଢି ସୀତା ମାଈ କି ଅଣ୍ଡିରା ବୁଝି ନଥାନ୍ତି । "ସାଧବ ଘର ସାତ ବହୁ" କଥାର ନ୍ୟାୟ ପୁରାଣର କତିପୟ ଅଦ୍ଭୁତ କାହାଣୀ ଶ୍ରୋତାଙ୍କ ସ୍ମୃତି ପଥରେ କିଛିକାଳ ଅବସ୍ଥିତ କରେ, କିନ୍ତୁ ତାହାର ଶୁଷ୍କ ନୈତିକାଂଶ ଅନେକ ଶ୍ରୋତାଙ୍କ ମନରେ ଆଦୌ ପ୍ରବେଶ କରି ପାରେନାହିଁ ।

ପୁରାଣରେ ଯେତେ ଭଲ ଥାଏ ତହିଁରେ ତତୋଧିକ ମନ୍ଦ ଥାଏ । ଏଣୁ ପୁରାଣ କଥନ ବା ଶ୍ରବଣରେ କୌଣସି ପ୍ରୟୋଜନ ଦେଖା ଯାଏନାହିଁ, ବରଂ ଅନିଷ୍ଟ ସମ୍ପାଦିତ ହୁଏ । ପୁରାଣ ଅପେକ୍ଷା ଇତିହାସ ପଠନ ଶ୍ରେୟସ୍କର । ଅଜ୍ଞାନୀ ଶୂଦ୍ର ମାନଙ୍କ ନିମନ୍ତେ ପୁରାଣ ରଚିତ ହୋଇଅଛି । ପ୍ରଥମାବସ୍ଥାରେ ସ୍ମୃତି, ଶ୍ରୁତି, ଉପନିଷଦ୍ ବୋଧଗମ୍ୟ ହୋଇ ନପାରେ, ଅତଏବ ପୁରାଣ ଦେଇ ପରିଶେଷରେ ଉତ୍କୃଷ୍ଟ ଜ୍ଞାନ ସମ୍ପାଦନ କରାଯାଏ—ଏହି ବିଗ୍ରହ ପ୍ରକୃତ ଫଳପ୍ରଦ ନୁହେ, ଏକ ଦେଶ ଦର୍ଶୀ ଅଟେ । କେବଳ ପୁରାଣର ପରିଣାମ ଦୃଷ୍ଟିରେ ତହିଁରେ କିଛି ହେଲେ ପ୍ରକୃତ ଜ୍ଞାନ ହୁଏନାହିଁ । ଶୂଦ୍ର ମାନଙ୍କ ସକାଶେ ପୁରାଣ—ଏକଥା ଯଥାର୍ଥ, କିନ୍ତୁ ପୁରାଣ ପଠନ ବା ଶ୍ରବଣ ଶୂଦ୍ରର ଶୂଦ୍ରତ୍ୱ ବିଦୂରିତ କରି ନପାରେ । ପ୍ରଥମାବସ୍ଥାରେ ସକଳ ପ୍ରାଣୀ ଶୂଦ୍ର ପଦବାଚ୍ୟ । ଶୂଦ୍ରକୁ ବ୍ରାହ୍ମଣ କରିବାହିଁ ବିଦ୍ୟା ଓ ଜ୍ଞାନର ଉଦ୍ଦେଶ୍ୟ ଅଟେ । ପୁରାଣ ମାନେ ଜ୍ଞାନ ଉଦୟ ହେବା ଦୂରେଥାଉ ଅଜ୍ଞାନର ମାତ୍ରା ବୃଦ୍ଧି ହୁଏ । ପୁରାଣ ପଠନ ହେତୁ ଶୂଦ୍ରମାନେ ଆଜୀବନ ଶୂଦ୍ର ରହନ୍ତି ପୁଣି ବ୍ରାହ୍ମଣମାନେ ମଧ୍ୟ ପୁରାଣ ପଢି ଶୁଣି ଶୂଦ୍ର ହୋଇ ପଡନ୍ତି ।

ଅତଏବ ପୁରାଣ ବଦଳରେ ଶୂଦ୍ରମାନେ ମଧ୍ୟ ଇତିହାସ ପଢିବା ଉଚିତ । ପ୍ରକୃତ ହିନ୍ଦୁଧର୍ମ ଜ୍ଞାନ କରିବାକୁ ହେଲେ ଦେଶ କାଳ ପାତ୍ର ବିବେଚନା ପୂର୍ବକ ସ୍ମୃତିପାଠ, ବେଦ ଓ ଉପନିଷଦର ପ୍ରଗାଢ଼ ଅଧ୍ୟୟନ ଆବଶ୍ୟକ । ଅତଏବ କି ଶୂଦ୍ର, କି ବ୍ରାହ୍ମଣ ସମସ୍ତଙ୍କୁ ସଂସ୍କୃତ ଭାଷା ଶିକ୍ଷା କରିବାକୁ ହେବ ନତୁବା ଦେଶୀୟ ଭାଷାନୁବାଦିତ ମୂଳଧର୍ମ ଗ୍ରନ୍ଥ ପାଠ କରିବାକୁ ହେବ । ପୁରାଣବୈରାଗ୍ୟ କେବଳ କ୍ଷଣସ୍ଥାୟୀ ଅଟେ ।

# ବିଦ୍ୟାପ୍ରତି ଆଦର ।

ଲୋକ ସାଧାରଣ କେହି୨ ଦୂର ଦେଶକୁ ଯାଇ ମାଟି ଖୋଳି, ମାଟି ବୋହି, ନାନାବିଧ କଠୋର ପରିଶ୍ରମ କରି ଧନ ଉପାର୍ଜ୍ଜନ କରି ଆଣନ୍ତି । ଉକ୍ତ ଧନରେ ଭୂମି ବାଡି କିଣନ୍ତି, ବିଭା ବ୍ରତ କରନ୍ତି, ପୁଣି ଏଥିରୁ ଉଦ୍‌ବୃତ୍ତ ହେଲେ ଗୋଟିଏ ମନ୍ଦିର ନିର୍ମ୍ମାଣ କରାଇ ତହିଁରେ ରାମ, କୃଷ୍ଣ, ଗୋବିନ୍ଦ, ଗୋପାଳ ନାମରେ କୌଣସି ଗୋଟିଏ ଠାକୁର ସ୍ଥାପନ କରି ଦିଅନ୍ତି; କିନ୍ତୁ କେହି ହେଲେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିବାକୁ ସାହସ କରନ୍ତି ନାହିଁ କିମ୍ବା ସ୍ଥାନୀୟ ଗ୍ରାମ୍ୟ ପାଠଶାଳାର ଉନ୍ନତି ଚେଷ୍ଟା କରନ୍ତି ନାହିଁ । ଅନେକେ ଶିବଲିଙ୍ଗ ସ୍ଥାପନ କରି କେତେ ଗୋଟା ମାଳୀ, ରାଉଳ ନିମନ୍ତେ ଜୀବିକା ଯୋଗାଡ କରି ଦିଅନ୍ତି, ନତୁବା ଗାଁ ମୁଣ୍ଡେ ବା ଗଛ ମୂଳେ ଠାକୁରାଣୀ ପଥର ଖଣ୍ଡେ ବସାଇ ଦେଇ ମାଜଣା କରିବା ନିମନ୍ତେ ଗୋଟିଏ ଜାନିକୁ ନିଯୁକ୍ତ କରି ଦିଅନ୍ତି, କିନ୍ତୁ କେହି ହେଲେ ସରସ୍ୱତୀଙ୍କ ଆରାଧନାରେ ରତ ହୁଅନ୍ତି ନାହିଁ । ବର୍ଷକେ ଥରେ ଶ୍ରୀପଞ୍ଚମୀ ଦିନ ସରସ୍ୱତୀ ପୂଜା ହୁଏ । ଆଜି ଗ୍ରାମ୍ୟ ପାଠଶାଳା ମାନଙ୍କରେ ଅବଧାନ ମାନଙ୍କର ଅଦାୟର ଦିନ । ଯେଉଁ ପିଲା ପୋଖରି ପଙ୍କରେ ପୋତା ହୋଇ ଥିବା ନଡିଆଟି ଖୋଜି ଧରିଆଣି ପାରିଲା, ସେ ହୁଏ ସରସ୍ୱତୀଙ୍କ ଭକ୍ତ ଏବଂ ତାହାକୁ ହୁଏ ବିଦ୍ୟାପ୍ରାପ୍ତ । ଏହି ସରସ୍ୱତୀ ପୂଜାରେ ଅବଧାନମାନେ ଏହି କୌଶଳ କରିଥାନ୍ତି—ଯେଉଁ ଲୋକଠାରୁ ଗୁରି ପଇସା ମିଳିବାର ସମ୍ଭାବନା, ତାହାର ପିଲା ହାତରେ ନଡିଆଟି ପଡେ । ଆଉ ପିଲା ଗୁଡିକ କେବଳ ଶୀତରେ ଥରୁ୨ ହୋଇ ଏହି ଉତ୍ସବରେ ଯୋଗ ଦେଇଥାନ୍ତି । ଏହାକୁ କହି ଆମ ଦେଶର ସରସ୍ୱତୀ ପୂଜା ।

ପୁଅଟିକି ପଇତା ଖିଏ ପକାଇ ଦେବା ଏବଂ ୭।୮ ବର୍ଷ ବୟସ ଭିତରେ ଝିଅଟିର ବିବାହ କରିଦେବା ବ୍ରାହ୍ମଣମାନଙ୍କର ପବିତ୍ର କର୍ତ୍ତବ୍ୟ । ଏହି ପବିତ୍ର କର୍ତ୍ତବ୍ୟ ପାଳନ ନିମନ୍ତେ ବ୍ରାହ୍ମଣମାନେ ଯେତେବେଳେ ଦ୍ୱାରେ୨ ମାଗି ବୁଲନ୍ତି ସେତେବେଳେ ଲୋକ ସାଧାରଣ ଯେ ଯାହା ଶକ୍ତ୍ୟନୁସାରେ ସାହାଯ୍ୟ କରନ୍ତି । କିନ୍ତୁ କୌଣସି ସ୍କୁଲ ଗୃହ ନିର୍ମାଣ କରାଯିବ, କିମ୍ବା ଗରୀବ ଛାତ୍ର ମାନଙ୍କୁ ବୃତ୍ତି ଦିଆଯିବ, ଏଥିପାଇଁ ମାଗିବାକୁ ହେଲେ ଅନେକେ ଏକ ପଇସା ଦେବାକୁ ମଧ୍ୟ ଏକାନ୍ତ କୁଣ୍ଠିତ ।

ଲୋକେ ନାଚ ଯାତ୍ରାରେ, ବିବାହ ବ୍ରତଘରେ ଅଜସ୍ର ଧନ ବ୍ୟୟ କରି ଦିଅନ୍ତି, ଏମନ୍ତକି ବଲବାଡି ବିକି କରି ସର୍ବସ୍ୱାନ୍ତ ହେଲା ପର୍ଯ୍ୟନ୍ତ ଧନବ୍ୟୟ କରନ୍ତି,

କିନ୍ତୁ ଏହି ଧନରୁ ଏକଶତାଂଶ ସୁଦ୍ଧା ବିଦ୍ୟାଶିକ୍ଷାରେ ଲଗାନ୍ତି ନାହିଁ । ସେଦିନ ଏକ ଗ୍ରାମର କେତେକ ଲୋକ ରାମ ନବମୀ ଯାତ୍ରା କରିବା ନିମନ୍ତେ ଧନସଂଗ୍ରହ କରୁଥିଲେ । ଏମାନେ ମତେ ଆସି ଭେଦା ମାଗିଲେ । ମୁଁ କହିଲି ତୁମ୍ଭ ଗ୍ରାମରେ କୌଣସି ପ୍ରକାର ପାଠଶାଳା ନାହିଁ, ତୁମ୍ଭେମାନେ ଭେଦାଦ୍ୱାରା ଯେତେ ଧନ ସଂଗ୍ରହ କରିଅଛ ତାହା ଦିଅ, ମୁଁ ଆଉ ତେତେ ଧନ ଦେବି । ଏହି ସମୁଦାୟ ଧନରେ ତୁମ୍ଭ ଗ୍ରାମରେ ଗୋଟିଏ ପାଠଶାଳା ସ୍ଥାପନ କରିବା । ପିଲାମାନଙ୍କୁ ପାଠ ନପଢ଼ାଇ ଯାତ୍ରା ପର୍ବ କରିବା ଉଚିତ ନୁହେଁ । ମୋହର ଏହି ପ୍ରସ୍ତାବରେ ସେମାନେ ବିରକ୍ତ ହୋଇ ମତେ ନାସ୍ତିକ ଅଧାର୍ମିକ ବୋଲି ଭାବନା କରି ଗୁଲିଗଲେ ।

ଏ ଅଞ୍ଚଳରୁ ଅନେକ ଲୋକ ରେଙ୍ଗୁନ ଯାଇ ସେଠାରେ କୁଲି କାମ କରି ଧନ ସଂଗ୍ରହ କରି ଆଣନ୍ତି । ବୋଇତରେ ଚଢ଼ି ଦେଶାନ୍ତର ଯିବା ଜାତି ମାରା ବିରୁଦ୍ଧ କାର୍ଯ୍ୟ ବୋଲି ବିବେଚିତ ହୁଏ । ଏଥିପାଇଁ ରେଙ୍ଗୁନ ଫେରନ୍ତା କୁଲି ବା କଣ୍ଟ୍ରାକ୍‌ଟର ମାନଙ୍କୁ ଆପଣା ଜାତିକି ଜରିମାନା ଦେବାକୁ ହୁଏ । ସେ ଦିନ ଗୋଟିଏ ଜାତିସଭା ବସିଥିଲା । ଏହି ସଭାରେ ରେଙ୍ଗୁନ ଯିବା ଲୋକ ମାନଙ୍କୁ କାହାକୁ କି ଦଣ୍ଡ ବିଧାନ କରିବାକୁ ହେବ ଏବଂ କାହାକୁ କେତେ ଜରିମାନା କରିବାକୁ ହେବ, ଏହି ବିଚାର ହେଉଥିଲା । ମୁଁ ଏହି ସଭାରେ ପ୍ରସ୍ତାବ କଲି ଯେ ଏହି ସଭାରେ ସଂଗୃହୀତ ହେବା ଧନ ବା ତହିଁର କିୟଦଂଶ ଗୋଟିଏ ସ୍କୁଲ ଗୃହ ନିର୍ମାଣରେ ଖରଚ କରାଯାଉ । କିନ୍ତୁ ମୋହର ଏହି ପ୍ରସ୍ତାବ ପ୍ରତି କେହି ହେଲେ କର୍ଣ୍ଣପାତ କରି ନାହାନ୍ତି । ଏହିପରି ସଭାମାନଙ୍କରେ ଶତ ଶତ ଟଙ୍କା ଜମା ହୁଏ । ଏହି ଧନରେ କୌଣସି ଜୀର୍ଣ୍ଣ ଦେବାଳୟର ସଂସ୍କାର କରା ଯାଏ । ଏଥିରୁ ଏକ ପଇସା ସୁଦ୍ଧା ବିଦ୍ୟା ଶିକ୍ଷାରେ ବ୍ୟୟିତ ହୁଏ ନାହିଁ, କିବା ଗ୍ରାମ ସଂସ୍କାର, ପଥ ନିର୍ମାଣ କିବା ଅନ୍ନଦାନ ପ୍ରଦାନରେ ଲାଗେ ନାହିଁ । ଅଜ୍ଞାନୀ ସାଧାରଣ ମନ୍ଦିର ପିତୁଳା ଦ୍ୱାରା ପରବ୍ରହ୍ମଙ୍କୁ କ୍ରମଶଃ ହୃଦୟଙ୍ଗମ କରି ପାରନ୍ତି ବୋଲି ଯେଉଁମାନେ ମନ୍ଦିରରେ ପ୍ରତିମା ପୂଜାର ବ୍ୟବସ୍ଥା କରି ଯାଇଅଛନ୍ତି, ସେମାନେ ଏବେ ବୁଝି ପାରିବେ ଯେ, ଏହି ପୌତ୍ତଳିକତା ଦ୍ୱାରା ପରବ୍ରହ୍ମଙ୍କୁ ସ୍ଥିତ ଲୋକେ ଅଜାତନ କାଠ ପଥରରେ ଲାଗି ରହିଲେ ।

ଗୃହସ୍ଥମାନେ ସନ୍ତାନ ଉତ୍ପାଦନ କରିବାକୁ ଯେପରି ଲାଳାୟିତ, ପୁତ୍ର ଧନ ଉପାର୍ଜନ ଦେଖିବାକୁ ସେହିପରି ଅଗ୍ରହାନ୍ୱିତ । ପୁଅ ନୈତିକ ... ବଳ ପୂର୍ବକ ଅତ୍ୟାଗ୍ରହ କରି, ଠକ ଭଣ୍ଡି ଆଣୁ, ଚିନ୍ତା ନାହିଁ । ଯେ କୌଣସି ମତରେ ଧନ ଆଣି ପାରିଲେ ଯୋଗ୍ୟ ପୁତ୍ର ହେଲା । ପୁଅ ଯେତେ ପାଠ ପଢୁ

ଯଦି କିଛୁ ପଇସା ଅଣେନାହିଁ, ସେ ପାଠରେ କିଛୁ ପ୍ରୟୋଜନ ନାହିଁ । ଧନହୀନର ଜୀବନ ବୃଥା, ବରଂ ମୂର୍ଖ ରହିବା ଶ୍ରେୟସ୍କର- ଏହାହିଁ ଲୋକମାନଙ୍କର ଧାରଣା । ମାଆ କହେ ଯେ ମୋ ପୁଅ ପଛେ ମୂର୍ଖ ହେଉ, ବଞ୍ଚିଥାଉ, ଏହିପରି ମାତାମାନଙ୍କର ସନ୍ତାନମାନେ ଯେ ସୁଶିକ୍ଷା ଲାଭ କରିବେ ଏହା ବିଡମ୍ବନା ମାତ୍ର ।

ଆମ୍ଭ ଗ୍ରାମ ନିକଟରେ ଜଣେ ଧନୀ ପରିବାର ବାସ କରନ୍ତି । ଏହି ଗୃହସ୍ଥଙ୍କର ଏକମାତ୍ର ପୁତ୍ର ସନ୍ତାନ । ଆମ୍ଭ ପୁଅ ଚାଟଶାଳୀରେ ପାଠ ପଢିଲେ ତାଙ୍କୁ ଅବଧାନ ତାହାକୁ ବେତରେ ମାରିବ, ଆମ୍ଭ ପୁଅ ଅବଧାନ ହାତରୁ ବେତମାଡ ଖାଇବ, ଏହା ଆମ୍ଭେ କଦାପି ସହି ପାରିବୁ ନାହିଁ । ଏହି ବିଚାର କରି ସେ ଅପଣା ପୁତ୍ରକୁ କୌଣସି ବିଦ୍ୟାଳୟକୁ ପଠାଇ ବିଦ୍ୟାଶିକ୍ଷା ଦେଲେ ନାହିଁ । ବର୍ତ୍ତମାନ ଏହି ପୁତ୍ରର ବୟସ ୨୫ ବର୍ଷ, ଶରୀର ହୃଷ୍ଟପୁଷ୍ଟ ପୁଣି ନୋଳି ମାଳି ମୁଦି କଙ୍କଣରେ ଅଳଙ୍କୃତ । ଯୁବକଟି ବାଳକମାନଙ୍କୁ ନିଜ ସ୍ୱାକ୍ଷର କରି ଶଗଡ଼ ବାହି ପାରନ୍ତି । ଧନୀ ପରିବାରମାନଙ୍କ ଘରେ ବିଦ୍ୟାଶିକ୍ଷା ପ୍ରତି ଏହିପରି ଅଶ୍ରଦ୍ଧା । ଗରିବ ଲୋକମାନେ ପେଟ ଚିନ୍ତାରେ ହାହାକାର କରନ୍ତି । କେବଳ ମଧ୍ୟବିତ୍ତ ଲୋକେ ସ୍ଥାନେ ୨ ବିଦ୍ୟାଶିକ୍ଷା ପ୍ରତି ଅଗ୍ରହାନ୍ୱିତ ଦେଖାଯାଆନ୍ତି ।

— —

## ଶାସ୍ତ୍ର ଆଲୋଚନା ।

ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଯେଉଁ ଭାବନା, ଅନୁମାନ ଏବଂ ଅନୁଭବଗୁଡ଼ିକ ସୁଶୃଙ୍ଖଳା ଓ ପ୍ରଣାଳୀ ସହିତ ଲିପିବଦ୍ଧ ହୁଏ, ବା ଯେ କୌଣସିମତେ ସ୍ମୃତି-କୋଷରେ ସଂରକ୍ଷିତ ହୋଇଥାଏ, ପୁଣି ଯାହାର ସାହାଯ୍ୟରେ ଲୋକ ସାଧାରଣ ଓ ଭାବୀ ବଂଶଧରମାନେ ବିଷୟ ଜ୍ଞାନ କରି ପାରନ୍ତି, ଭାବ ବୁଝି ପାରନ୍ତି, କର୍ମକାଣ୍ଡରେ ଦକ୍ଷତା ସମ୍ପାଦନ କରନ୍ତି ଏବଂ ଇହପର ଉଭୟ ଜୀବନର ପ୍ରତ୍ୟେକ ବିଭାଗରେ ଅପଣାର କର୍ତ୍ତବ୍ୟ ସ୍ଥିର କରିପାରନ୍ତି, ତାହାକୁହିଁ ଶାସ୍ତ୍ର ବୋଲାଯାଏ ।

ଏହି ଜଗତରେ ପ୍ରତିଦିନ ଏହି ଶାସ୍ତ୍ରର ପ୍ରଣୟନ ଘଟିଥାଏ । ପ୍ରତିଦିନ ମଧ୍ୟ ଏହାର ଖଣ୍ଡନ ହେଉଥାଏ । ଦେଶ କାଳ ପାତ୍ରାନୁସାରେ ଏହି ଶାସ୍ତ୍ରର ପ୍ରଭେଦ ଘଟିଥାଏ । ଶାସ୍ତ୍ରତ ସବୁକାଳେ ଏକ, ଏହାର ପ୍ରଭେଦ ବା କିପରି ଘଟିଥାଏ ? କିନ୍ତୁ ଶାସ୍ତ୍ର ନାନାପ୍ରକାର, ଶ୍ରୁତି ସ୍ମୃତି ଓ ପୁରାଣ ମଧ୍ୟ ହିନ୍ଦୁମାନଙ୍କର ଶାସ୍ତ୍ର ।

ଏହି ଶାସ୍ତ୍ରକୁ ଯେଣି ହିନ୍ଦୁମାନେ ଶାସ୍ତ୍ର-ପ୍ରାଣ ବୋଲିଜି ଅଛନ୍ତି । ଏମାନେ ଜୀବନର ପ୍ରତ୍ୟେକ ସାମାନ୍ୟ ଘଟଣା ସକାଶେ ଏହି ଶାସ୍ତ୍ରର ଦୋହାଇ ଦେଇ-ଥାନ୍ତି, କିନ୍ତୁ ଅନେକେ ଉକ୍ତ ଶାସ୍ତ୍ରର ବିରୁଦ୍ଧାଚରଣ କରିଥାନ୍ତି । ଏହି ସ୍ମୃତି ଶାସ୍ତ୍ର ଗୁଡ଼ିକ ନାନାବିଧ ଦେଶକାଳ ପାତ୍ରକୁ ଦେଖି ନାନାବିଧ ମୁନିମାନଙ୍କ ଦ୍ୱାରା ପ୍ରଣୀତ ହୋଇଥାଏ । ଭିନ୍ନ୨ ମୁନିମାନଙ୍କର ଭିନ୍ନ୨ ରୁଚି, ଭିନ୍ନ୨ ମତ । ଏମାନେ ବିଭିନ୍ନ ଦେଶ ଓ କାଳରେ ଅବସ୍ଥିତ କରି ଅବସ୍ଥାକୁ ଦୃଷ୍ଟି ଭିନ୍ନ୨ ବ୍ୟବସ୍ଥା ଦେଇଯାଇ ଅଛନ୍ତି । ସୁତରାଂ ଏକ ଦେଶ ଦର୍ଶୀ ପଣ୍ଡିତମାନଙ୍କ, ଏହି ସ୍ମୃତିମାନଙ୍କ ମଧ୍ୟରେ ପରସ୍ପର ପ୍ରଭେଦ ଏବଂ ବୈପରୀତ୍ୟ ଦେଖାଯାଏ ।

ଅଶିକ୍ଷିତ ଲୋକ ସାଧାରଣ ଆଦୌ ସ୍ମୃତି ଚର୍ଚ୍ଚା କରନ୍ତି ନାହିଁ । ପଣ୍ଡିତମାନେ ମଧ୍ୟ ସମସ୍ତ ଶ୍ରୁତି, ସ୍ମୃତି ଗୁଡ଼ିକୁ ଏକତ୍ର ମିଳାଇ ତହିଁର ପୁଙ୍ଖାନୁ-ପୁଙ୍ଖ ଆଲୋଚନା କରନ୍ତି ନାହିଁ । ପୂର୍ବର ଅବସ୍ଥା ଜ୍ଞାନ ସକାଶେ କେହି ହେଲେ ବ୍ୟବସ୍ଥା ଶିକ୍ଷା କରି ତହିଁର ପର୍ଯ୍ୟାଲୋଚନାରେ ପ୍ରବୃତ୍ତ ହୁଅନ୍ତି ନାହିଁ । ଏହି ବ୍ୟବସ୍ଥା ଶିକ୍ଷା ଓ ତହିଁର ଆଲୋଚନା ସକାଶେ ହିନ୍ଦୁମାନଙ୍କ ମଧ୍ୟରେ କୌଣସି ସ୍ୱତନ୍ତ୍ର ବନ୍ଦୋବସ୍ତ କରା ଯାଇଥିବା ଦେଖାଯାଏ ନାହିଁ । ଏଥି ସକାଶେ କୌଣସି ଚୌପାଠୀ ବା ଟୋଲ ଅତ୍ୟନ୍ତ ବିରଳ । ପ୍ରଚଳିତ ରୀତିନୀତି ଆଚାର ବ୍ୟବହାରହିଁ ସ୍ମୃତି ଗତ ବ୍ୟବସ୍ଥା ବୋଲି ଲୋକମାନଙ୍କର ଗୋଟିଏ ଧାରଣା ଜନ୍ମିଥାଏ । ଏହା ସବୁ ପ୍ରକୃତ ଶାସ୍ତ୍ରୋକ୍ତ ହୁଏ କି ନା ଏହି ବିଷୟ ବୁଝିବା ସକାଶେ କେହି ଚେଷ୍ଟା କରନ୍ତି ନାହିଁ । କ୍ୱଚିତ୍ କୌଣସି ଆଚାର ବ୍ୟବହାର ଯେବେ ସନ୍ଦେହ ବା ମତାନୈକ୍ୟ ଉପସ୍ଥିତ ହେଲେ ସ୍ମୃତି ଦେଖିବାକୁ ପଡ଼ଇଏ । ସେତେବେଳେ ନିରପେକ୍ଷ ପର୍ଯ୍ୟାଲୋଚନା କରି ବ୍ୟବସ୍ଥା ନିରୂପଣ କରିବା ଏକ-ପ୍ରକାର ଅସମ୍ଭବ ହୋଇ ଉଠେ । ପଣ୍ଡିତମାନେ ମଧ୍ୟ ଚିରାଭ୍ୟାସ କବଳରୁ ବିମୁକ୍ତ ହୋଇ ପାରି ନ ଥାନ୍ତି । ଏମାନେ ସ୍ମୃତି ଆଲୋଚନାରେ ପ୍ରବୃତ୍ତ ହେଲେହେଁ ଅପଣାର ଚିର ପୋଷିତ ମତର ଅନୁମୋଦନ ସକାଶେ ବ୍ୟବସ୍ଥାର ଅନ୍ୱେଷଣ କରିଥାନ୍ତି, ପୁଣି ଦମସ୍ତେ୨ ଶାସ୍ତ୍ରାଲୋଡ଼ନରୁ ବିରୁଦ୍ଧମତ ପାଇଲେ ତାହାର ନିଷେଧ ବାକ୍ୟ ପାଇବା ପର୍ଯ୍ୟନ୍ତ ଏକାନ୍ତ ବ୍ୟତିବ୍ୟସ୍ତ ଥାନ୍ତି । ଏ ବାହାରେ ଟିକା ଟିପଣୀର ସ୍ୱତନ୍ତ୍ର କଥା । ଏହି ଟିକା ଦ୍ୱାରା ଯେ ଦଶ ମଧ୍ୟ ମାଙ୍କଡ଼ରେ ପରିଣତ ହେବା ବିଚିତ୍ର ନୁହେ । ପୁଣି ମହାନ୍ ପଣ୍ଡିତମାନେ ମଧ୍ୟ ଯେତେବେଳେ ଏକଦିଗ ହୋଇ କୌଣସି ବିଷୟ ଦେଖି ସ୍ମୃତିର ପର୍ଯ୍ୟାଲୋଚନା କରନ୍ତି ଏମାନେ କେବଳ ବ୍ୟବସ୍ଥା ଗୁଡ଼ିକର ଅକ୍ଷରିକ ଅର୍ଥ ଦେଖି ଅପଣାର ମସ୍ତିଷ୍କ ଗୁଞ୍ଜନ କରିଥାନ୍ତି ।

କେବଳ ହେଲେ ପୂର୍ବ ଶାସ୍ତ୍ରକାର ମାନଙ୍କର ଉଦ୍ଦେଶ୍ୟ ଓ ଦେଶକାଳ ପାତ୍ର ଜ୍ଞାନ ପ୍ରତି ଲକ୍ଷ ରଖନ୍ତି ନାହିଁ, ବର୍ତ୍ତମାନ ଉକ୍ତ ପଦ୍ଧତି ଅନୁସାରେ କାର୍ଯ୍ୟ ଚଳିଲେ ପୂର୍ବ ବ୍ୟବସ୍ଥାପକ ମାନଙ୍କର ଉଦ୍ଦେଶ୍ୟ ନଷ୍ଟ ହୁଏ କି ନାହିଁ, ପୁଣି ଉକ୍ତ ବ୍ୟବସ୍ଥା ଦ୍ୱାରା ଦେଶର ମଙ୍ଗଳ କି ଅମଙ୍ଗଳ ସାଧିତ ହୁଏ, ଏହି ବିଷୟରେ ଆଲୋଚନା କରନ୍ତି ନାହିଁ । ଏହା ନ କରିବା ଲାଗି ଆଜି ଅନେକ ବିଷୟରେ ପୂର୍ବ ଶାସ୍ତ୍ରକାର ମାନଙ୍କର ଉଦ୍ଦେଶ୍ୟ ଏକ ଦେଶରେ ରହିଅଛି, ପୁଣି କାର୍ଯ୍ୟ ପ୍ରଣାଳୀ ଅନ୍ୟ ଦିଗରେ ଚଳି-ଅଛି । ଫଳତଃ ହିନ୍ଦୁ ସମାଜ ଦିନକୁ ଦିନ ହୀନବଳ, ହତୋତ୍ସାହ ଓ ଅଧୋଗତି ପ୍ରବଣ ହୋଇ ପଡୁଅଛି ପୁଣି ପାପ ପଙ୍କରେ ନିମଗ୍ନ ହୋଇ ହିତାହିତ ଜ୍ଞାନ ଶୂନ୍ୟ ହେଉଅଛି, ଏଥିରେ ସନ୍ଦେହ ନାହିଁ । ଏହାର କେତେ ଗୋଟି ଦୃଷ୍ଟାନ୍ତ ନିମ୍ନରେ ବିବୃତ ହେଲା । ହିନ୍ଦୁ ଶାସ୍ତ୍ରକାରମାନେ ବିଧବାର ପୁନର୍ବିବାହ ନିଷେଧ କରିଅଛନ୍ତି । ଏହି ନିଷେଧ ଦ୍ୱାରା ଦାମ୍ପତ୍ୟ ପ୍ରେମର ପବିତ୍ରତା, ସ୍ତ୍ରୀ ମାନଙ୍କର ପାତିବ୍ରତ୍ୟ ଦୃଢ଼ତର ରକ୍ଷା କରାଯାଏ ପୁଣି ଏହି ବିଷୟ ଅଜ୍ଞାନ ବନ୍ଧନରୁ ପରିତ୍ରାଣ ପାଇ ମୁକ୍ତି ମାର୍ଗ ଅନୁସରଣ କରିବା ସହଜ ହୁଏ । ବର୍ତ୍ତମାନ ଦେଖାଯାଉ ଏହି ବ୍ୟବସ୍ଥା ଦ୍ୱାରା ଏହି ଉଦ୍ଦେଶ୍ୟ ସଫଳ ହୁଏ କି । ଏହି ଆଜୀବନ ବୈଧବ୍ୟ ହେତୁ ସମାଜରେ ବ୍ୟଭିଚାରର ମାତ୍ରା ବୃଦ୍ଧି ହେଉଅଛି । ଏହାର ବିଶଦ ବିବରଣ ଏହି ସ୍ଥାନରେ ଦେବା ଅନାବଶ୍ୟକ, ଯେହେତୁ ଏହାସବୁ ଲୋକରେ ସୁବିଦିତ ହୋଇ ସାରିଲାଣି । ତେବେ ବ୍ୟବସ୍ଥା ପାଳନ କଲେହେଁ ଉଦ୍ଦେଶ୍ୟ ସାଧନ ନହେବା କାରଣ କଣ ? ଅଜ୍ଞାନ ବାଳିକାମାନେ ଯେତେବେଳେ ବିବାହ କଣ ଜାଣନ୍ତି ନାହିଁ, ସେମାନେ ପବିତ୍ର ଦାମ୍ପତ୍ୟ ପ୍ରେମ ଓ ପାତିବ୍ରତ୍ୟ କଣ ବୁଝି ପାରନ୍ତି କି ? ପତି ମର୍ଯ୍ୟାଦା ଯେ ଜାଣି ପାରି ନଥାଏ ସେ ବିବାହ ଯୋଗ୍ୟ ହୋଇ ନ ଥାଏ । ତେବେ ଯେଉଁ ବାଳିକା ପ୍ରକୃତ ବିବାହ କରୁନାହିଁ ସେ ବିଧବା କିପରି ହେବ ? ସୁତରାଂ ଏହି ବୈଧବ୍ୟ ବିଡ଼ମ୍ବନା ମାତ୍ର । ଯେତେବେଳେ ବିଧବା ବାଳିକା ନାନାବିଧ ପ୍ରଲୋଭନରେ ପରିବେଷ୍ଟିତ ହୋଇ ଥାଏ ପୁଣି ବିଦ୍ୟା-ଶିକ୍ଷା ଏବଂ ଶାସ୍ତ୍ର ଚର୍ଚ୍ଚା ଯାହା ପକ୍ଷରେ ନିଷେଧ କରାଯାଇ ଥାଏ, ସେ ବ୍ରହ୍ମଚର୍ଯ୍ୟ ରକ୍ଷାକର ବିଷୟ ବନ୍ଧନରୁ ଅବ୍ୟାହତି ପାଇବା ଅସମ୍ଭବ । ଅତଏବ ଏହି ବାଳିକା ବିଧବା ପକ୍ଷରେ ବ୍ରହ୍ମଚର୍ଯ୍ୟ ଅପେକ୍ଷା ବ୍ୟଭିଚାର ସହଜ ହୁଏ ।

— —

## ପ୍ରକୃତ ଶିକ୍ଷା ଓ ପୋଥିପାଠ ।

ମାନବ ଜାତିର ବିଦ୍ୟାଶିକ୍ଷା ପରମ ଧର୍ମ ଅଟେ । ବିଦ୍ୟାବିହୀନ ମାନବ ପଶୁ ସମାନ । ଏହି ପରମ ଧର୍ମ ପରିତ୍ୟାଗ କରୁଥିଲେହେଁ ହିନ୍ଦୁମାନେ ଆପଣା ଧର୍ମଶାସ୍ତ୍ର-

ନୁସାରେ ଧାର୍ମିକ ବୋଲି ପରିଗଣିତ ହୁଅନ୍ତି । କେହି ବ୍ୟକ୍ତି ଗଣ୍ଡ ମୂର୍ଖ ହେଲେହେଁ ତିଳକ, ମାଳ ପ୍ରଭୃତି ଧାରଣ କରି ବିଶୁଦ୍ଧ ଛାମସ ବା ଖଦ୍ଦର ଭାବରେ ଗୃହ ଲୋକଙ୍କୁ ଗୃହ ପଇସା ଦେଲେ, ଦେବ ଦର୍ଶନ ଓ କର୍ମିକର୍ମୀଣୀରେ ଗୃହପଇସା ବ୍ୟୟ କଲେ, ସେହିବ୍ୟକ୍ତି ଧାର୍ମିକମାନଙ୍କ ମଧ୍ୟରେ ପରିଗଣିତ ହୁଅନ୍ତି । ମାନବ ଜାତିର ଜ୍ଞାନ ସମ୍ପାଦନ ପରମ ଧର୍ମ ବୋଲି ଯେତେବେଳେ ଅନେକେ ଗ୍ରହଣ କରି ନାହାନ୍ତି, ତେବେ ଅମ୍ଭମାନଙ୍କ ମଧ୍ୟରେ ବହୁସଂଖ୍ୟକ ଅଶିକ୍ଷିତ ଅଜ୍ଞାନୀ ରହିବା ଅବଶ୍ୟମ୍ଭାବୀ । ଅମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ଶିକ୍ଷିତ ଏବଂ ଜ୍ଞାନୀ ବୋଲି ଆପଣାର ପରିଚୟ ଦିଅନ୍ତି ସେମାନଙ୍କ ସଂଖ୍ୟା ମୁଷ୍ଟିମେୟ । ଏହି ମୁଷ୍ଟିମେୟ ଶିକ୍ଷିତ ମଧ୍ୟରେ ଅନେକେ ପୋଥି ପାଠୁଆ, ପ୍ରକୃତ ଜ୍ଞାନୀ ଅତ୍ୟନ୍ତ ବିରଳ, ପ୍ରାୟ ନାହାନ୍ତି କହିଲେ ଚଳିପାରେ ।

ପୋଥିପାଠ " ପୋଥିବାଇଗଣ " ପରି । ଏହା ଦର୍କାର ବେଳେ କର୍ମକୁ ଆସେ ନାହିଁ । ବୋଝେ ପୋଥି ପଢିଥିବ କିନ୍ତୁ ଗୋଟିଏ କଥାହିଁ ଆଚରଣ କରୁ ନଥିବ, ଏହି ପାଠକୁ ପୋଥିପାଠ କହିବା ଉଚିତ । " ନସତ୍ୟ ପରମୋଧର୍ମଃ " ବୋଲି ଅମ୍ଭେମାନେ ସକଳ ଶାସ୍ତ୍ରରେ ପଢିଲୁ କିନ୍ତୁ ଅମ୍ଭମାନଙ୍କ ମଧ୍ୟରେ କେତେ ଜଣ ସତ୍ୟବାଦୀ ଅଛନ୍ତି ? " ଉତ୍କୋଚ ଗ୍ରହଣ କରି ଜୀବନ କଳଙ୍କିତ କରନା" ବୋଲି କେତେ ନୀତି ଶାସ୍ତ୍ରରୁ ଅମ୍ଭେମାନେ ପଢିଲୁଁ କିନ୍ତୁ କାବ୍ୟତୀର୍ଥ, ନ୍ୟାୟ ବିଶାରଦ, ବି ଏ, ଏମ୍.ଏ; ଉପାଧିଧାରୀମାନଙ୍କ ମଧ୍ୟରେ ଶତକଡା ୯୯ ଲାଞ୍ଚ ମିଛରେ କଳଙ୍କିତ । ଯେଉଁମାନେ ଶାସ୍ତ୍ରପାଠରୁ ଯାହା ଶିଖନ୍ତି ଯଦି ତଦନୁସାରେ କାର୍ଯ୍ୟ କରନ୍ତି ତେବେ ସେହିମାନେହିଁ ଶିକ୍ଷାଦ୍ୱାରା ପ୍ରକୃତ ଜ୍ଞାନଲାଭ କରିଅଛନ୍ତି । ସତ୍ୟବାଦୀ ସ୍କୁଲର ପୁରସ୍କାର ବଣ୍ଟନ ସଭାରେ ସଭାପତି ଥିବାବେଳେ ମହାତ୍ମା ମଧୁସୂଦନ ଦାସ ମହୋଦୟ ଏହି ଭାବ ବ୍ୟକ୍ତ କରିଥିବା ଶୁଣି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇ ଏହି କାମନା କରୁଅଛି କି ସେ ମହାତ୍ମା ଦୀର୍ଘଜୀବୀ ହୋଇ ଅମ୍ଭମାନଙ୍କୁ ଏହିପରି ସଦୁପଦେଶ ଦେଉଥାନ୍ତୁ ।

ଯେଉଁ ବ୍ୟକ୍ତି କେବେହେଁ ମିଥ୍ୟା କହନ୍ତି ନାହିଁ ସେହି ବ୍ୟକ୍ତିହିଁ 'ନସତ୍ୟ ପରମୋଧର୍ମଃ,' ଏହି ମହାବାକ୍ୟର ପ୍ରକୃତ ଶିକ୍ଷା କରିଅଛନ୍ତି ଏବଂ ତହିଁରୁ ପ୍ରକୃତ ଜ୍ଞାନ ଲାଭ କରିଅଛନ୍ତି । ହୃଦୟଗତ ଭାବ ନଥିଲେ ଦେଖାଶିଖା କାର୍ଯ୍ୟ ଭଲ ହୁଏନାହିଁ । କେହି ୨ ଗୋପୂଜା କରନ୍ତି, ନିତ୍ୟ ଗୋପୂଜା ନକଲେ ଭୋଜନ କରିବେ ନାହିଁ, ଗାଈକି ଫୁଲ ଚନ୍ଦନ ଦେଇ ଗୁଡ଼ଳ ବୋଡେ ବା ସୋଲେ ଖୁଆନ୍ତି । ଗାଈ ସିନା ଘାସ ଖାଏ, ଫୁଲ ଚନ୍ଦନରେ ତାର କି ପ୍ରୟୋଜନ ?

ଯେଉଁମାନେ ଏପରି ମିଥ୍ୟା ଗୋପୂଜା କରନ୍ତି ସେମାନେ ଅନ୍ୟର ଗାଈ ଆସି ଅପଣାର କିଛି ଘାସ ଖାଇଦେବା ଦେଖିଲେ ତାହାକୁ ଏପରି ପ୍ରହାର କରନ୍ତି ଯେ ଅନେକରେ ତାହାର ହାଡ ଗୋଡ ଭାଙ୍ଗିଯାଏ । ପାଠକେ, ଦେଖନ୍ତୁ ଏହି ଗୋପୂଜାରେ କେତେଦୂର ହୃଦୟବତ୍ତା ଓ ଭକ୍ତି ଥାଏ । ଏହିପରି ଯେଉଁ ଶିକ୍ଷାରେ ହୃଦୟବତ୍ତା ନ ଥାଏ ତାହା କେବଳ ପୋଥିପାଠ ।

ଆଜକାଲି ଶିକ୍ଷା ପ୍ରଣାଳୀ ଭଲ ନଥିବାରୁ ଛାତ୍ରମାନେ ପରୀକ୍ଷା ପାଇଁ ପାଠ ପଢ଼ନ୍ତି, କିନ୍ତୁ ପ୍ରକୃତ ଜ୍ଞାନ ନିମନ୍ତେ ପଢ଼ନ୍ତି ନାହିଁ । ପରୀକ୍ଷାହିଁ ଏମାନଙ୍କର ଲକ୍ଷ୍ୟ, ପ୍ରକୃତ ଜ୍ଞାନ ସମ୍ପାଦନରେ ଏମାନଙ୍କର ଆଉ ମନ ନଥାଏ । ଯେନକେନ ପ୍ରକାରେଣ ପରୀକ୍ଷାରେ ପାସ କଲେ, ମାର୍କ ଆଣି ପାରିଲେ ହେଲା । ଯଦ୍ୟପି କେହି ଛାତ୍ର କୌଣସି ବିଷୟରେ ଭଲ ଲେଖି ନପାରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରେନାହିଁ ତେବେ ଉପର ଶ୍ରେଣୀକି ଉନ୍ନୀତ ହୋଇ ପାରିଲା ନାହିଁ ବୋଲି ଦୁଃଖିତ ହୁଏ । କିନ୍ତୁ ଅମୁକ ବିଷୟ ଭଲରୂପେ ଶିକ୍ଷା କରି ପାରିନାହିଁ ବୋଲି କୌଣସି ଶୋଚନା ନଥାଏ । ଅନେକ ଛାତ୍ର ସାଧାରଣତଃ ପରୀକ୍ଷାର୍ଥୀ । ଏମାନେ ପ୍ରକୃତ ବିଦ୍ୟାର୍ଥୀ ନୁହନ୍ତି । ସୁତରାଂ ଏମାନେ ପ୍ରକୃତ ଜ୍ଞାନ ସମ୍ପାଦନ କରିବାକୁ ଏକାନ୍ତ ଅକ୍ଷମ । ଏ ମାନଙ୍କର ବିଦ୍ୟାଶିକ୍ଷା କେବଳ ପୋଥି ପାଠରେ ପରିଣତ ହୁଏ । ସ୍ୱାଭାବିକ ପ୍ରବଣତା ବଳବତ୍ତର ରହେ । କୁତ୍ସିତ ସ୍ୱଭାବକୁ ବିଦ୍ୟାଶିକ୍ଷା ଦୂରକରି ପାରେନାହିଁ । ଶିକ୍ଷିତ ଲୋକ ଅପଣାର ଦୂଷିତ କାର୍ଯ୍ୟକୁ କୌଶଳ କ୍ରମେ ଲୁକ୍କାୟିତ ରଖିବାକୁ ଶିଖିଥାଏ । ଧୋବଧଳିଆ ଗୋରୁ କରେ, ମଳ ମଳିଆ ଧରାପଡେ । ଏହି ଘଟଣା ପ୍ରତି ଲୋକଙ୍କର ସ୍ୱତଃ ଆଶଙ୍କା ଜନ୍ମି ପାରେ ନାହିଁ । ସୁତରାଂ ଛାତ୍ରମାନେ ନିଜର ନୃଶଂସ ବ୍ୟାପାରରେ ଉତ୍ତରୋତ୍ତର ବଳ ଏବଂ ଉତ୍ସାହ ପ୍ରାପ୍ତ ହୁଅନ୍ତି । କାବ୍ୟତୀର୍ଥ, କବିରତ୍ନ, ବିଏ, ଏଲ୍ ଏ, ପ୍ରଭୃତି ଉପାଧିଧାରୀ ମାନଙ୍କର ଉପାଧିଟିମାନ ଏକ ଲାଇସେନ୍ସ ପରି ସେମାନଙ୍କର ପ୍ରୟୋଜନ ହୁଏ । ଏହି ଲାଇ-ସେନ୍ସ ଦ୍ୱାରା ସେମାନେ ଉଦ୍ଧାଯୁକ୍ତ କରିବାକୁ ସକ୍ଷମ ହୋଇଥାନ୍ତି । ଏହି ଶ୍ରେଣୀର ଶିକ୍ଷିତ ବ୍ୟକ୍ତିମାନଙ୍କର ଶିକ୍ଷା ମଧ୍ୟ ପୋଥି ପାଠ ଅଟେ । ଏମାନଙ୍କର ହୃଦୟ ପ୍ରଦେଶରେ ପ୍ରଚୁର ଜ୍ଞାନ ପ୍ରବେଶ କରିପାରେ ନାହିଁ ।

ଅନେକେ ପ୍ରଧାନତଃ ଧନୋପାର୍ଜ୍ଜନ କରିବାକୁ ବିଦ୍ୟାଶିକ୍ଷା କରନ୍ତି । କିନ୍ତୁ ପ୍ରକୃତ ଜ୍ଞାନ ନ ହେଲେ ପ୍ରଚୁର ପରିମାଣରେ ଧନ ସଂଗ୍ରହ କରାଯାଇ ପାରେ ନାହିଁ । ପୋଥି ପାଠୁଆମାନେ ଧନୋପାର୍ଜନରେ ମଧ୍ୟ ଅପାରଗ । କୁମ୍ଭାର ଘର ବଳଦ ମାଟି ଗାଡଆ ପର୍ଯ୍ୟନ୍ତ । ଏମାନେ ଟ ୨୫ ବା ୫୦ ର

ଚାକିରି ଖଣ୍ଡେ ପାଇଲେ ଆପଣାର ପୁରୁଷାର୍ଥ ହେଲା ମନେ କରନ୍ତି, ନତୁବା ଓକିଲାତିରେ ମାସିକ ଟ ୧୦୦ କି ୨୦୦ ପାଇଲେ ଆପଣାର ଚଉଦ ବର୍ଷର ତପସ୍ୟା ସଫଳହେଲା ମନେ କରନ୍ତି ।

ବିଦ୍ୟା ବିବାଦାୟ ଧନଂ ମଦାୟ—ପଣ୍ଡିତମାନଙ୍କର ବିଦ୍ୟାବାଦ ହୁଏ । ଯେଉଁ ପଣ୍ଡିତ ନାନାପ୍ରକାର ତର୍କ ବିତର୍କ, ବାଗ୍ ବିତଣ୍ଡା କରି ଅପର ପଣ୍ଡିତକୁ ପରାଜିତ କରିଦିଏ ସେହି ପଣ୍ଡିତ ବିଦ୍ୱାନ୍‌ରୂପେ ଗୃହୀତ ହୁଏ । ଏହି ବିଦ୍ୟା ବାଦ ପରିଣାମରେ ବିଦ୍ୱେଷାତ୍ମକ ବିବାଦରେ ପରିଣତ ହୁଏ । ଏହି ବିବାଦରେ କେବଳ ଜୟ ଓ ପରାଜୟର କଥା ଥାଏ । ଏଥିରେ ବିଦ୍ୟାର ବିନିମୟ ହୁଏନାହିଁ ଅନୁସନ୍ଧିତ୍ସା ନ ଥାଏ ପୁଣି ଆପଣାର ଭ୍ରମ ସଂଶୋଧନ ଏବଂ ପରିମିତ ଜ୍ଞାନର ବୃଦ୍ଧି କରିବା ଇଚ୍ଛା ନ ଥାଏ । ଏହି ବିଦ୍ୟାଶିକ୍ଷା ମଧ୍ୟ ଏକପ୍ରକାର ପୋଥିପାଠ । ଯେଉଁମାନେ ପ୍ରକୃତ ଜ୍ଞାନୀ, ସେମାନେ ବାଳକଠାରୁ ମଧ୍ୟ ଶିଖିବାକୁ ଚାହାନ୍ତି ।

ପ୍ରକୃତ ଜ୍ଞାନ ଓ ପୋଥିପାଠ ମଧ୍ୟରେ ଏହିପରି ଅନେକ ପ୍ରଭେଦ ଅଛି । ଆମ୍ଭମାନଙ୍କ ମଧ୍ୟରେ ପୋଥି ପାଠୁଆ ବେଶି । ପ୍ରକୃତ ଜ୍ଞାନୀ ସଂଖ୍ୟା ବୃଦ୍ଧି ପ୍ରାପ୍ତ ନହେଲେ ଦେଶର ଉନ୍ନତି ସାଧନ ହୋଇ ପାରେ ନାହିଁ ।

—୦—

## ତାକୁ ଛୁଇଁବ କିଏ ?

ସେଦିନ ଆମ୍ଭେମାନେ ରସୁଲକୁଣ୍ଡା ଠାରୁ ଫେରୁଥିଲୁଁ, ଦେଖିଲୁଁ ଯେ ଦଣ୍ଡାସୀ ଜାତିର ଜଣେ ବୁଢ଼ୀ ସ୍ତ୍ରୀ କେନାଲ ବନ୍ଧ ହୁଡ଼ା ଉପରୁ ଖସିପଡ଼ି ଗଡ଼ି ଗଡ଼ି ଯାଇ ପ୍ରାୟ ହାତ ୫ ତ ଖଣାରେ ପଡ଼ି ଯାଇଅଛି । ତା ସଙ୍ଗରେ ତା ସ୍ୱଜାତୀୟ ଲୋକ କେହି ନଥିଲେ । ଦଣ୍ଡାସୀ ଲୋକ, ତାକୁ କିଏ ଛୁଇଁବ ବୋଲି କହି ଅନ୍ୟଲୋକେ ଯେଝାବାଟେ ଚାଲିଗଲେ, ସେହି ରାସ୍ତାରେ ଯେତେ ଲୋକ ଯାଆନ୍ତି, ତଳେ ପଡ଼ିଥିବା ବୁଢ଼ୀ ସ୍ତ୍ରୀ କୁ ଦେଖି ତାହାର ଜାତି କଣ ବୋଲି ପଚାରନ୍ତି, ଦଣ୍ଡାସୀ ବୋଲି ଶୁଣିବା ମାତ୍ରେ ତାହାକୁ କିଏ ଛୁଇଁବ ବୋଲି କହି ଚାଲି ଯାଆନ୍ତି । କେହି ତାହାକୁ ଉଠାଇ ଦେବାକୁ କୌଣସି ଚେଷ୍ଟା କଲେ ନାହିଁ । ଏତେ ଉପରୁ ଖସିପଡ଼ି ଅଛି ଯେ ସେହି ସ୍ତ୍ରୀର ଗୋଡର କୌଣସି ହାଡଖଣ୍ଡା ଖସି ପଡ଼ିଅଛି । ତାହାର ଉଠିବାକୁ ଶକ୍ତି ନାହିଁ । କେହି ଉଠାଇ ଦେଲେ ମଧ୍ୟ

ତାହାର ଆଉ ଠିଆ ହେବାକୁ ଶକ୍ତି ନାହିଁ । ଆମ୍ଭେମାନେ ତାହାକୁ ଏହି ଅବସ୍ଥାରେ ଦେଖିଲୁ । ମୁଁ ତାହାକୁ ଉଠାଇ ଦେବା ଚେଷ୍ଟା କଲି ସଙ୍ଗୀଲୋକ ମାନଙ୍କର ସାହାଯ୍ୟ ପ୍ରାର୍ଥନା କଲି । ସେମାନେ ସେତେବେଳେ ସେହି ସ୍ତ୍ରୀକି ତାହାର ଜାତି ପଚାରିଲେ, ସେ ଦଣ୍ଡାସୀ ବୋଲି କହିଲାରୁ ସେମାନେ ସମସ୍ତେ କହିଲେ "ତାକୁ ଛୁଇଁବ କିଏ" । କେହି କିଛି ସାହାଯ୍ୟ ନ କରି ଚାଲି ଗଲେ । ମୋ ପାଖେ ମୋହର ଜଣେ ଚାକର ପିଲାଟିଏ ଥିଲା । ସେହି ପିଲାଟି ବୁଢ଼ୀ ସ୍ତ୍ରୀକି ଧରି ପାରନ୍ତା କି ନାହିଁ, କିନ୍ତୁ କେତେ ପ୍ରକାର କହିଲେ ସୁଦ୍ଧା ଦଣ୍ଡାସୀ ସ୍ତ୍ରୀକି ଛୁଇଁବାକୁ ମଙ୍ଗିଲା ନାହିଁ । ସେ ସ୍ତ୍ରୀକି କେବଳ ଉଠାଇଦେଲେ ହେବନାହିଁ, ପ୍ରାୟ ୩-୪ ଫର୍ଲଙ୍ଗ ତାହା ଘରଠାକୁ ତାହାକୁ ବୋହି ନେବାକୁ ହେବ । ମୁଁ ନିଜେ ତାହାକୁ ଉଠାଇ ଏତେ ଦୂର ବୋହି ନେଇ ନପାରେ । ସେତେବେଳେ ନିକଟବର୍ତ୍ତୀ ଏକ ଗ୍ରାମକୁ ଯାଇ ସେହି ସ୍ତ୍ରୀର ବନ୍ଧୁଲୋକଙ୍କୁ ଖବର ଦେଲି । ସେମାନେ ଆସିଲେ ବୃଦ୍ଧାସ୍ତ୍ରୀଟିକି ବୋହି ନେଇଗଲେ । ଦଣ୍ଡାସୀ ଲୋକଙ୍କୁ ଅସ୍ପୃଶ୍ୟ କଲା କିଏ ? ହିନ୍ଦୁମାନଙ୍କର ଜାତି ବ୍ୟବସ୍ଥା ଦଣ୍ଡାସୀ ପ୍ରଭୃତି ଅନେକ ଶୂଦ୍ର ବର୍ଣ୍ଣସ୍ଥ ଲୋକମାନଙ୍କୁ ଅସ୍ପୃଶ୍ୟ ଅମନୁଷ୍ୟ ଅପଦାର୍ଥ କରି ପକାଇଅଛି । ଏହି ଜାତି ବ୍ୟବସ୍ଥାର ଅବିଚାର ଓ ଅତ୍ୟାଚାର ହେତୁ ଆଜି ଲୋକେ ଆପଣା ଧର୍ମ କର୍ମ ଛାଡ଼ିଲେ ଏବଂ ମନୁଷ୍ୟତା ପର୍ଯ୍ୟନ୍ତ ହରାଇ ବସିଲେ । ଏହି ଜାତିଭେଦ ହେତୁ ଆଜି ଲକ୍ଷ ଲକ୍ଷ ଲୋକ ଅସ୍ପୃଶ୍ୟ ମୂର୍ଖ, ଅସଭ୍ୟ ଓ ଅମନୁଷ୍ୟ ହୋଇ ପଡ଼ି ରହିଲେ । ଉଚ୍ଚ ବର୍ଣ୍ଣର ଲୋକ ନିମ୍ନଶ୍ରେଣୀର ଲୋକମାନଙ୍କ ବିରାଡ଼ି କୁକୁର ଅପେକ୍ଷା ହୀନ ଜ୍ଞାନ କଲେ । ରକ୍ଷଣଶୀଳ ସାମାଜିକ ଦଳପତିମାନେ ଏହି ଜାତିଭେଦ ରକ୍ଷା କରିବାକୁ ଖଡ୍ଗହସ୍ତ, ହଜାଣ କାଳେ ବିପରୀତ ବୁଦ୍ଧି ।

—o—

# ରେଲ ରାସ୍ତାରେ ବ୍ରାହ୍ମଣ ଯାତ୍ରୀ ।

ସତ୍ୟବାଦୀ ଷ୍ଟେସନଠାରେ ଗୋଟିଏ କୌତୁକାବହ ଘଟନା ଘଟିବା ଅଭିନୟ ଦେଖିଲୁଁ । ଖଲିକୋଟ ବାଲୁକେଶ୍ୱରପୁର ଶାସନର ଦୁଇଜଣ ବ୍ରାହ୍ମଣ ଆମ୍ଭମାନଙ୍କ ସହ ଯାତ୍ରୀ ଥିଲେ । ଜଣକୁ ଝାଡ଼ା ଚଲିବ ହେଲା, ଉଭୟଙ୍କ ମଧ୍ୟରେ ବିଚାର ପଡ଼ିଲା, କଣ କରାଯିବ । ବୃଦ୍ଧ କହିଲେ ଗାର୍ଡ଼ିଭିତରେ ଯେ ହାଣ୍ଡିପାଣି ଯୋଗାଇ ଦିଆଯାଇ ଅଛି ତାହାତ ବ୍ରାହ୍ମଣ କାର୍ଯ୍ୟରେ ଲାଗିବ ନାହିଁ । ଯୁବକ କହିଲେ ପାଣି ମଧ୍ୟ ଅଗତ୍ୟା ବ୍ୟବହାର କରିବା, କିନ୍ତୁ ଶୌଚ ହେବାପାଇଁ

ମାଟି କାହିଁ ? ଆଗାମୀ ଷ୍ଟେସନଠାରେ ଗାଡ଼ିରୁ ଓହ୍ଲାଇ ନିକଟବର୍ତ୍ତୀ କ୍ଷେତ୍ରରୁ
ଜଳଦ୍ଧାନେ ମାଟିମେଞ୍ଜେ ଧରି ଅସିବା ସ୍ଥିରହେଲା । ଏମଧ୍ୟରେ ବେଗପ୍ରାପ୍ତ ଯୁବକ
ଆପଣାର ବେଶଭୂଷା, ଧୋତି, ଚାଦର, କୋଟ କୁର୍ତ୍ତା ପାଗ ପୁଟୁକା ଇତ୍ୟାଦି
ବଦଳାଇ ଗାମୁଛା ପିନ୍ଧି ଜଳ ଧରି ଷ୍ଟେସନ ଅପେକ୍ଷାରେ ଦଣ୍ଡାୟମାନ ରହିଲେ,
ସତ୍ୟବାଦୀଠାରେ ଗାଡ଼ି ଯେମିତି ରହିଲା, ଗାଡ଼ିରୁ ଓହ୍ଲାଇ ରେଲ ନିକଟ କୌଣସି
କାଦୁଅ ଖାଲରୁ ମେଞ୍ଜେ ମାଟି ଓ ଜଳଦ୍ଧାନେ ଧରି ଗାଡ଼ିରେ ପ୍ରବେଶ କଲେ, ମ୍ଲେଚ୍ଛ
ନିର୍ମିତ ପାଇଖାନାରେ ବସି ଆପଣାର ପବିତ୍ର କାର୍ଯ୍ୟ ଶେଷକଲେ । ମ୍ଲେଚ୍ଛ ନିର୍ମିତ
ରେଲଗାଡ଼ି ଭିତରେ ସିନା ଏହା ଥିଲା ପବିତ୍ର କର୍ମ, କିନ୍ତୁ ବ୍ରାହ୍ମଣ ବଟୁରାର
କର୍ମକାଣ୍ଡ ଅନୁସାରେ ସବେଗନାଟା ଗୋଟାଏ ବିଗର୍ହିତ ପାପକର୍ମର ଏହି ପାପକର୍ମର
ପ୍ରାୟଶ୍ଚିତ-ହାତମାଟି ଓ ଅଣ୍ଟାପାଣି କରିବାକୁ ଫେରେ ଅନ୍ୟ ଏକ ଷ୍ଟେସନ ପର୍ଯ୍ୟନ୍ତ
ଅପେକ୍ଷା କରିବାକୁ ହେଲା । ସେତେବେଳେ ତାହାଙ୍କର ସେହିପାପ ଜର୍ଜିତ ନାର-
କୀୟ କାୟାଟା ପବିତ୍ର ଅତ୍ମା ରୂପକ ପୂର୍ବପର ଧୃତବସ୍ତ୍ରକୁ ସ୍ପର୍ଶ କରି ପାରିବ ନାହିଁ ।
ଅତଏବ ଶାସନୀ ବ୍ରାହ୍ମଣ ମହାଶୟ ସେହି ଗାମୁଛା ଖଣ୍ଡିକପିନ୍ଧି ଢ଼ାଳଟା ଧରି
ପାୟ ଅଧଘଣ୍ଟା ଅନ୍ୟଷ୍ଟେସନ ପହଞ୍ଚିବା ପର୍ଯ୍ୟନ୍ତ ଦଣ୍ଡାୟମାନ ରହିଲେ । ରେଲଗାଡ଼ି
ଷ୍ଟେସନରେ ପହଞ୍ଚିବା ମାତ୍ରେ ଗାଡ଼ିରୁ ଓହ୍ଲାଇ ସଡକ ନିକଟ କାଦୁଅପାଣି ଗାଡ଼ିଅରେ
ଅଣ୍ଟାଟା ବୁଡାଇ ଦେଇ ଏକ ନିଶ୍ୱାସକେ ଦଉଡ଼ି ଅସି ଗାଡ଼ିରେ ପଶିଲେ । ଆମେ-
ମାନେ ବସିବା ବଖରାଟା ଜନତାରେ ପୂର୍ଣ୍ଣଥିଲା । ତଥାପି ପ୍ରତ୍ୟେକ ଯାତ୍ରୀ ଏହି
ଦୃଶ୍ୟଟା ଦେଖିବା ପାଇଁ ଉଦ୍‌ଗ୍ରୀବ ରହିଥିଲେ । ଏହି ସବୁ କାଣ୍ଡ ଦେଖି ମନେ-
ହୁଏ ଯଦିଚ ଗୃଦ୍ଧ ନଥାନ୍ତା ତେବେ ବ୍ରାହ୍ମଣ ମାନେ ଦେବତା ହୋଇଥାନ୍ତେ ।
ବୋଧହୁଏ ଯେନି ଗୋଜାତି ଯେପରି ବିଶୁଦ୍ଧ, ଗୁହ୍ୟପ୍ରକ୍ଷାଳନ ପ୍ରକ୍ରିୟା ହେତୁ ଛ ଦଉଡଅ
ନାମଧାରୀ ବ୍ରାହ୍ମଣମାନେ ସେହିପରି ମାନବ ଜାତିରେ ପବିତ୍ରାବତାର ।

—— ○ ——

## ଯଜ୍ଞସୂତ୍ର ଓ ପୋଲିସ ପୋଷାକ ।

ବ୍ରାହ୍ମଣ ଓ ପୋଲିସ ମଧ୍ୟରେ କେତେ ସାମଞ୍ଜସ୍ୟ ଦେଖାଯାଏ ।
କିମ୍ବୃତ ପରିମାଣରେ ଶାରୀରିକ ସ୍ୱାସ୍ଥ୍ୟ ଓ ବଳ ଓ କୌଣସି ନିର୍ଦ୍ଦିଷ୍ଟ ଦୈହିକ
ଉଚ୍ଚତା ପ୍ରାପ୍ତ ହେଲେ ଯେ କୌଣସି ବ୍ୟକ୍ତି ପୋଲିସ କନେଷ୍ଟବଳ ଦଳରେ
ଭୁକ୍ତ ହୋଇପାରେ, ଯେପରି ବ୍ରାହ୍ମଣ ଘରେ ଜନ୍ମଗ୍ରହଣ କରିବା ମାତ୍ରେ ଯେ
କୌଣସି ବ୍ୟକ୍ତି ବ୍ରାହ୍ମଣ ହୋଇପାରେ । ପୋଲିସର ଯେପରି ଲାଲ ପଗଡ଼ି ବ୍ରାହ୍ମଣର

ସେହିପରି ଯଜ୍ଞସୂତ୍ର ବା ଛଦଦଣ୍ଡ । ପୋଲିସର ଲାଲପଗଡ଼ିକୁହିଁ ଲୋକେ ଭୟ କରନ୍ତି ସେହିପରି ବ୍ରାହ୍ମଣର ପଇତାକୁହିଁ ଲୋକେ ମାନ୍ୟ କରନ୍ତି । ଯଜ୍ଞାନୁଷ୍ଠାନର ଚିହ୍ନ ସ୍ୱରୂପ ସୂତ୍ର ଧାରଣ କରିବାକୁ ହୁଏ । ଏହାକୁ ଯଜ୍ଞସୂତ୍ର, ଯଜ୍ଞୋପବୀତ ବା ପଇତା କହନ୍ତି, ଯେପରିକି ପୋଲିସ ଦଳଭୁକ୍ତ ହେଲେ ଚିହ୍ନ ସ୍ୱରୂପ ଲାଲପଗଡ଼ି ଧାରଣ କରିବାକୁ ହୁଏ । ପୋଲିସ ଲୋକେ ଦେଶରେ ଶାନ୍ତିରକ୍ଷା ନିମନ୍ତେ ନିଯୁକ୍ତ ହୁଅନ୍ତି । ବ୍ରାହ୍ମଣମାନେ ଲୋକରେ ଜ୍ଞାନ ପ୍ରଚାର କରିବାପାଇଁ ପ୍ରତିଷ୍ଠିତ ହୁଅନ୍ତି । କିନ୍ତୁ କାମ ଅଭାବରେ ନାମ ବା କି ପ୍ରୟୋଜନ । କାମବିହୀନ ନାମଟା ଅଜାଗଳ ସ୍ତନ ନ୍ୟାୟନିରର୍ଥକ । କେବଳ କୌପୀନରେ କେହି ବୈରାଗୀ ହୋଇ ପାରିବେକି ? ସେହିପରି ଲାଲପଗଡ଼ି କାହାରିକୁ ପୋଲିସ କରି ନପାରେ କିମ୍ବା ପଇତା କାହାରିକୁ ବ୍ରାହ୍ମଣତ୍ୱ ଦେଇ ନପାରେ । ପୋଷାକର ପ୍ରୟୋଜନ ନାହିଁ, ପୁରୁଷତ୍ୱ ଦରକାର । କୋଟ କୁର୍ତ୍ତା ପାଇଜାମା ପଗଡ଼ି କିମ୍ବା ନାମ ଧାମ ଚିତା ପଇତା, ଏହି ସକଳ ବାହ୍ୟାଡମ୍ବର ଆନ୍ତରିକତାର ସହାୟତା କରେ ଅର୍ଥାତ୍ ଗୁଣ ଓ ଶକ୍ତି ବିକାଶର ଅନୁକୂଳ ହୁଏ । କିନ୍ତୁ ଜ୍ଞାନ ଓ କର୍ମ ଅଭାବରେ ଏହାସବୁ ବିଡମ୍ବନା ମାତ୍ର । ପୋଲିସ ଓ ବ୍ରାହ୍ମଣ ମଧ୍ୟରେ ପ୍ରଭେଦ ଏହିଯେ ପୋଲିସ କନେଷ୍ଟବଳ ଶାନ୍ତିରକ୍ଷା ନକରି ଚୌର୍ଯ୍ୟାଦିରେ ସହାୟତା କଲେ ତାହାଙ୍କୁ କାର୍ଯ୍ୟଚ୍ୟୁତକରି ପୋଲିସ ପୋଷାକ ପରିଧାନରୁ ବଞ୍ଚିତ କରାଯାଏ, କିନ୍ତୁ ଦୁର୍ଜନ ବିପ୍ରଙ୍କୁ କୌଣସି ଭୀତିନାହିଁ । ସେ ଯାହାଇଚ୍ଛା ତାହାକରୁ, ତାହାର ପଇତାରେ କାହାରି ଅଧିକାର ନାହିଁ । ବ୍ରାହ୍ମଣର ଜ୍ଞାନ ଓ କର୍ମ ଯାଉଛି ତାହେଉ ସେହି ପଇତା ଟିକଟ ଯେଣୁ ବ୍ରାହ୍ମଣମାନେ ଶୁଦ୍ଧି, ଶ୍ରାଦ୍ଧ, ଅନ୍ନଦାନ, ବସ୍ତ୍ରଦାନ, ବ୍ରାହ୍ମଣଭୋଜନ ଇତ୍ୟାଦି ସକଳ ଅନୁଷ୍ଠାନରେ ପ୍ରବେଶାଧିକାର ପାଆନ୍ତି ।

——○——

## କୁଣ୍ଡ ମଣ୍ଡପ ଶାଳା ।

ଯେଉଁ ବ୍ରାହ୍ମଣମାନଙ୍କର ପ୍ରଧାନ କର୍ମଥିଲା ଅଧ୍ୟୟନ ଏବଂ ଅଧ୍ୟାପନ, ସେହି ବ୍ରାହ୍ମଣଙ୍କ ବଂଶଧରମାନଙ୍କ ମଧ୍ୟରୁ ଆଜି ଅନେକେ ନିରକ୍ଷର ଜମିଦାର । ଯେଉଁ ବ୍ରାହ୍ମଣମାନଙ୍କ କୁଣ୍ଡ, ମଣ୍ଡପ ଶାଳାଦିର ପ୍ରତିଷ୍ଠା କର୍ମକାଣ୍ଡ ମୁଖସ୍ଥ କରିଅଛନ୍ତି ସେମାନେ ବ୍ରାହ୍ମଣ ସମାଜରେ ଉଚ୍ଚ ଏବଂ ସୁଶିକ୍ଷିତ ବୋଲି ପରିଚିତ ହୁଅନ୍ତି । ଆଜି ସେ ଯଜ୍ଞ ନାହିଁ, ଧ୍ୟାନ ନାହିଁ କିମ୍ବା ଦାନ ନାହିଁ ଅଛି କେବଳ ଲମ୍ବା ଚଉଡ଼ା ନାମ ଟିକଟଗୋଟା ମାତ୍ର । କୌଣସି ବ୍ରାହ୍ମଣର ପାଣ୍ଡିତ୍ୟ ଦେଖାଇବାକୁ ହେଲେ ବ୍ରାହ୍ମଣମାନେ କହନ୍ତି ଯେ ଅମୁକ ଲୋକ ଭାରି ବିଦ୍ୱାନ, ଭାରି ପଣ୍ଡିତ

ଯେହେତୁ ସେ କୁଣ୍ଡ ମଣ୍ଡପ ଶାଳା ପ୍ରତିଷ୍ଠା କର୍ମକାଣ୍ଡ ଜାଣନ୍ତି । ଏମାନେ ଏହି କୁଣ୍ଡ ମଣ୍ଡପ ଶାଳାର ଦୋହାଇ ଦେଇ ଆପଣାର ଟେକ ଏବଂ କର୍ମିଷ୍ଠତା ପ୍ରକାଶ କରନ୍ତି । କର୍ପୂର ଗଲାଣି କନା ଅଛି । କୁଣ୍ଡ ମଣ୍ଡପ ଶାଳାମାନ ନିର୍ମାଣ କରିବାକୁ ଶିଳ୍ପି ନାହାନ୍ତି, ଏହି ସକଳ ଅନୁଷ୍ଠାନ ପ୍ରତିଷ୍ଠାର ଉଦ୍ଦେଶ୍ୟ ଲୋକେ ବୁଝନ୍ତି ନାହିଁ ତଥାପି ଏହି ଶୁଷ୍କ କର୍ମକାଣ୍ଡ ଦୋହାଇ ଦେଇ ପୁରୋହିତ ବ୍ରାହ୍ମଣମାନେ ଆପଣାର ଟେକ ରକ୍ଷା କରିବାକୁ ପ୍ରୟାସ କରନ୍ତି । ଏହି କୁଣ୍ଡ-ମଣ୍ଡପ-ଶାଳାର ପ୍ରତିଷ୍ଠା କର୍ମକାଣ୍ଡ ପୁରୋହିତ ବ୍ରାହ୍ମଣମାନଙ୍କର ମଧ୍ୟ ଗୁରୁତ୍ୱ ରକ୍ଷାକରି ନପାରେ । ଦହି ଚୁଡ଼ା ଖିଆ ବ୍ରାହ୍ମଣମାନଙ୍କର କୁଣ୍ଡ ମଣ୍ଡପ ଶାଳା କର୍ମକାଣ୍ଡ ଦ୍ୱାରା ସମାଜର ଉନ୍ନତି ଆଶା ବିଡ଼ମ୍ବନା ମାତ୍ର । ଆମ୍ଭେମାନେ ଯାହାକୁ ମଦ ମାଂସ ଖିଆ ବୋଲି ଘୃଣା କରୁଥିଲୁ ସମ୍ପ୍ରତି ଆମ୍ଭେମାନେ ସେମାନଙ୍କ ପଦତଳେ ଆମ୍ଭର ସଂସ୍କୃତ ଭାଷାର ତତ୍ତ୍ୱ ଏବଂ ମହତ୍ତ୍ୱ ଶିକ୍ଷା କରିବାକୁ ବାଧ୍ୟ । ରକ୍ଷଣଶୀଳ ସମାଜ ନାୟକମାନେ ଏହା ସ୍ୱୀକାର କରି ନପାରନ୍ତି ତଥାପି ସତ୍ୟକହି ସଂକୀର୍ଣ୍ଣତା ତ୍ୟାଗ କରିବାକୁ ହେବ ଏବଂ ଭାରତ ଆର୍ଯ୍ୟ ଜାତିକୁ ଔଦାର୍ଯ୍ୟ ଅବଲମ୍ବନ କରିବାକୁ ହେବ ।

——।୦।——

## ବିଜୟାଦଶମୀ ।

ଦଶମ୍ୟାଂ ଯଃ ସମୁଲ୍ଲଙ୍ଘ୍ୟ ପ୍ରସ୍ଥାନଂ କୁରୁତେ ନରଃ
ତସ୍ୟ ସମ୍ବତ୍ସରଂ ରାଜ୍ୟେ ନ କ୍ୱାପି ବିଜୟୋ ଭବେତ୍ ।

ଆଶ୍ୱିନ ଶୁକ୍ଳ ଦଶମୀ ହିନ୍ଦୁମାନଙ୍କର ଏକ ପ୍ରଧାନ ଅନୁଷ୍ଠାନର ଦିନ । ଏହି ପର୍ବରେ ଦୁର୍ଗାପୂଜା ଉତ୍ସବ କରାଯାଇ ଥାଏ । ଏହି ଦୁର୍ଗା ପୂଜା ଅବଧାନୀ ଉତ୍ସବରେ ଆମୋଦ ପ୍ରମୋଦ କରାଯାଇ ଥାଏ । ଏଥିରେ ଦୁଃଖ ନାଶ ହୁଏ । ଏହେତୁ ଏହାକୁ ମହାଦୁଃଖହା ବୋଲି କହନ୍ତି । ଏହିଦିନ ଯୁଦ୍ଧ ଯାତ୍ରା ଅନୁକୂଳ କରି ଶ୍ରୀ ରାମଚନ୍ଦ୍ର ଜୟଲାଭ କରିଥିଲେ ବୋଲି ଏହାକୁ ବିଜୟା ଦଶମୀ କହନ୍ତି । ଆଜି ପ୍ରତ୍ୟେକ ଲୋକ ଯେ ଯାହା ଅସ୍ତ୍ର, ଶସ୍ତ୍ର, ପୁସ୍ତକ ପତ୍ରର ପୂଜା ଆରାଧନା କରିସାରି ନିଜ ନିଜ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଆଜି ରାଜାମାନଙ୍କର ଯୁଦ୍ଧ ଯାତ୍ରାର ଅନୁକୂଳ କରାଯାଏ ଏବଂ ଶସ୍ତ୍ର ବିଦ୍ୟା ଅନୁଶୀଳନର ପ୍ରାରମ୍ଭ କରାଯାଇ ଥାଏ ।

ଦେଶରେ ଯେତେବେଳେ ଅବିଦ୍ୟତା ଏବଂ ଅରାଜକତା ପ୍ରବର୍ତ୍ତି ଥାଏ, ସେତେବେଳେ ଯୁଦ୍ଧ ନାମକ ଏହି କ୍ରୂର ବ୍ୟାପାରର ସୂତ୍ରପାତ ହୁଏ । ଏହି କ୍ରୂର

ବ୍ୟାପାର ସକାଶେ ତାମସଗୁଣବୋଧକ କର୍ମକାଣ୍ଡର ଅୟୋଜନ କରାଯାଇ ଥାଏ । ମଦମାଂସ ପ୍ରଭୃତି ନାନାବିଧ ମକାରରେ ପ୍ରକୃତି ଦେବୀଙ୍କ ଆରାଧନା କରି ଅନୁଷ୍ଠାତାମାନେ ଉତ୍ସାହିତ ହୋଇଥାନ୍ତି । ନିରୀହ ଜୀବହିଂସା ପୂର୍ବକ ବଳିଦାନ ଦ୍ୱାରା ଲୋକ ବିନାଶ ସକାଶେ ଅପଣାଙ୍କୁ ବଳିଷ୍ଠ ମନେ କରନ୍ତି ଏବଂ ଉତ୍ତେଜନାର ବଶୀଭୂତ ହୋଇ ତଦନୁରୂପ କାର୍ଯ୍ୟ କରିଥାନ୍ତି । କିନ୍ତୁ ଯୁଗର ପରିବର୍ତ୍ତିତ ନିୟମାନୁସାରେ ଆଜି ଦେଶରେ ଅରାଜକତା ନାହିଁ ଅତ୍ୟାଚାର ଏବଂ ଉପଦ୍ରବ ଦେଖା ଯାଏ ନାହିଁ, ସୁତରାଂ ଏହି କ୍ରୂରାତ୍ମକ ଯୁଦ୍ଧ ଯାବାର କୌଣସି ପ୍ରୟୋଜନ ନାହିଁ,ତଥାପି ଆମ୍ଭମାନଙ୍କର ଜମିଦାର ପ୍ରଜା ବାହାଦୂରମାନେ ଏହି ବିଜୟା ଦଶମୀ ଉତ୍ସବ ଉପଲକ୍ଷେ ନିରପରାଧ ଜୀବହତ୍ୟା କରି ଆମୋଦ ପ୍ରମୋଦରେ ପ୍ରମତ୍ତ ହୋଇ ଯୁଦ୍ଧ ଯାବାର ଅନୁକୂଳ କରିଥାନ୍ତି । ନତୁବା ଶସ୍ତ୍ରାନୁଶୀଳର ଶୁଭ ପ୍ରାରମ୍ଭ କରିଥାନ୍ତି । ଏମାନଙ୍କର ବିଜୟ ଯାତ୍ରା କେବଳ ଗଡପ୍ରାନ୍ତ ମହାଦୁଲା ପଡିଆ ପର୍ଯ୍ୟନ୍ତ ବ୍ୟାପ୍ତ । ପୁଣି ଶସ୍ତ୍ରବିଦ୍ୟାନୁଶୀଳନ ସକାଶେ ଏମାନଙ୍କ ବନ୍ଧୁକ ବର୍ଷାବଧି ବନ୍ଧଥାଏ, ଖଣ୍ଡାଖାପରେ କଳଙ୍କ ଥାଏ, ଏବଂ ଅନ୍ୟ ଶସ୍ତ୍ରର ବ୍ୟବହାର ଏହି ଅନୁରୂପ । ଯଦି ଏମାନେ କେବେ୨ ଖଣ୍ଡା ବ୍ୟବହାର କରନ୍ତି, ତେବେ କେବଳ ଜନାନାର କଠୋର ଅବରୋଧ ରକ୍ଷା କରିବା ସକାଶେ ଖଡ୍ଗହସ୍ତ, କିନ୍ତୁ କେହି୨ ମୃଗୟାନ୍ତରାଧରେ ହେଲେ ସୁଦ୍ଧା ଦୁଷ୍ଟଜୀବ ସଂହାର ସକାଶେ ବନ୍ଧୁକର ବ୍ୟବହାର କରି ଥାନ୍ତି ।

ଏହିପରି କତିପୟ ବିଧାନରୁ ଜଣାଯାଇ ପାରେ ଯେ ଆଜିକାଲି ଆମ୍ଭମାନଙ୍କର ଅନେକ ସାମାଜିକ ରୀତି ନୀତିର ଉଦ୍ଦେଶ୍ୟପ୍ରତି ଦୃଷ୍ଟି ନ ଥାଇ କେବଳ ବିଧିରକ୍ଷା ସକାଶେ ତାହାସବୁ ପାଳିତ ହୋଇଥାଏ । ଯେ ରୂପେ ବ୍ରାହ୍ମଣ ସନ୍ତାନମାନେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ ପୂର୍ବକ ବିଦ୍ୟାଶିକ୍ଷା କରିବାପାଇଁ ବ୍ରତବେଦିରୁ ଗାଁମୁଣ୍ଡ ପର୍ଯ୍ୟନ୍ତ ଚାଲି ଯାଇଥାନ୍ତି, ପୁଣିତହୁଁ ଫେରଆସି ଏକାବେଳେକେ ନିଷ୍ଠାତହୋଇ ପଡିଥାନ୍ତି, ସେହିପରି ରଜାମାନେ ମହାଦୁଲା ପଡିଆପର୍ଯ୍ୟନ୍ତ ଦିଗ୍ ବିଜୟଯାତ୍ରା କରୁଥାନ୍ତି, ପୁଣି ଏମାନଙ୍କର ଶସ୍ତ୍ର ପରିଶୀଳନର ବାର୍ଷିକ ଅନୁକୂଳହିଁ ଉପସଂହାରରେ ପରିଣତ ହୋଇଥାଏ ।



## ଗଙ୍ଗା ପୁଣ୍ୟ ବ୍ରାହ୍ମଣ ।

ଗଙ୍ଗା ପୁଣ୍ୟ ବ୍ରାହ୍ମଣମାନଙ୍କର ଗୋଟିଏ ପାଳକ ଦିନ, ଆଜି ବିଶେଷତଃ ଶାସନୀ ବ୍ରାହ୍ମଣମାନଙ୍କର କିଛି ଅଦାୟ ହୁଏ । ଆଜି ଏମାନେ ସମସ୍ତଙ୍କୁ ପଇତା ଦିଅନ୍ତି । ଆବ୍ରାହ୍ମଣ ଚଣ୍ଡାଳ ଆଜି ସମସ୍ତେ ପଇତା ଗ୍ରହଣ କରନ୍ତି । ଆଜି କାଳି

ପଇତାହିଁ ବ୍ରାହ୍ମଣମାନଙ୍କର ପ୍ରଧାନ ନିଶାଣି । ପଇତା ନଥିଲେ କେହି ବ୍ରାହ୍ମଣ ପଦ ବାଚ୍ୟ ନୁହନ୍ତି, ଗୁଣେତର କର୍ମରେ ବାଉରି ସମାନ ହେଲେହେଁ ଚିତା ପଇତା ଯେଣୁ ସମସ୍ତେ ବ୍ରାହ୍ମଣ ରୂପେ ପରିଗଣିତ ହୁଅନ୍ତି । ବ୍ରାହ୍ମଣ ନାମିମାନେ କୌଣସି ଭୂରୀ ଲାଭ ଆଶାରେ ନଡୁବା ସଦ୍ୟ ଗୁରୁ ପଇସା ପାଇବା ନିମନ୍ତେ ବ୍ରାହ୍ମଣେତର ଜାତିମାନଙ୍କୁ ପଇତା ଦେଇ ଥିଲେହେଁ ଆଜି ଏମାନଙ୍କର ବିଶ୍ୱବ୍ୟାପୀ ଉଦାରତାର ଯଥେଷ୍ଟ ପରିଚୟ ମିଳୁଅଛି, ଯେହେତୁ ଏମାନେ ଇତର ଜାତି ଲୋକମାନଙ୍କୁ ଆପଣାର ପଇତା ଦେଇ ଦେବାକୁ କୁଣ୍ଠିତ ହୋଇ ନାହାନ୍ତି । ସେ ଯାହାହେଉ ସମଗ୍ର ହିନ୍ଦୁସ୍ଥାନ ଆଜି ବ୍ରାହ୍ମଣମୟ ଦେଖାଯାଏ । ଏହି ଆର୍ଯ୍ୟଭୂମି ଭାରତ ଦେଶ ଦିନେ ବ୍ରାହ୍ମଣ ଜାତିର ସୃଷ୍ଟି କରିଥିଲା । ଯେତେବେଳେ ଭାରତ ବ୍ରାହ୍ମଣମୟ ଥିଲା ସେତେବେଳେ ଏହି ଦେଶ ଜଗତରେ ସଭ୍ୟତମ ଦେଶ ଥିଲା ଏବଂ ସମସ୍ତ ଜଗତରେ ଆଦର୍ଶ ସ୍ଥାନୀୟ ହୋଇଥିଲା । ଭାରତରୁ ପ୍ରକୃତ ବ୍ରାହ୍ମଣ ସଂଖ୍ୟା ହ୍ରାସପ୍ରାପ୍ତ ହେବାକୁ ଆରମ୍ଭ କରିବା ଦିନଠାରୁ ଭାରତର ସଭ୍ୟତା କ୍ରମଶଃ ଲୁପ୍ତ ହେବାକୁ ବସିଲା ଏବଂ ଭାରତବାସି ମାନଙ୍କର ଅବନତିର ସୂତ୍ରପାତ ହେଲା । "ଏବେ ଲୋଡ଼ିଲେ ଆଉ କାହିଁ ସେ କଥା ପିଠି ଯେନଇ କାହିଁ ପେଟ ବ୍ୟଥା ।" ଭାରତ ଆଜି ଅବ୍ରାହ୍ମଣରେ ପରିପୂର୍ଣ୍ଣ । ଗହ୍ଣାପୃଣ୍ୟ ବ୍ରାହ୍ମଣର ସୃଷ୍ଟି ଆଜି ସମୟୋପଯୋଗୀ ବ୍ୟବସ୍ଥା ହୋଇଅଛି । ସମସ୍ତ ହିନ୍ଦୁଜାତି ଯେତେବେଳେ ସକଳ ଭେଦାଭେଦ ପରିତ୍ୟାଗ କରି ଏକ ଗହ୍ଣାପୃଣ୍ୟ ବ୍ରାହ୍ମଣ ଜାତିରେ ପରିଣତି ଲାଭ କରିବେ ସେତେବେଳେ ସେମାନଙ୍କ ମଧ୍ୟରୁ ପ୍ରକୃତ ବ୍ରାହ୍ମଣ ଜାତିର ସୃଷ୍ଟି ହେବ । ଭଙ୍ଗା ଦାଦରା ଘରକୁ ସମୂଳ ଉତ୍ପାଟନ ନକଲେ ତା'ଉପରେ ସୁଦୃଢ଼ ପକ୍କା ଗୃହ ନିର୍ମାଣ କରାଯାଇ ନପାରେ ।



## ତିଳକ ମହାତ୍ମ୍ୟ ।

ହିନ୍ଦୁମାନେ ସାଧାରଣତଃ କୌଣସି ଏକ ତିଳକ ଧାରଣ କରନ୍ତି । କେବେ କେବେ ଦ୍ୱାଦଶ ସ୍ଥାନରେ ତିଳକ କରିବାକୁ ହୁଏ ଯଥା କପାଳ, ହସ୍ତ, ବକ୍ଷ, ଉଦର, ପାର୍ଶ୍ୱ ଇତ୍ୟାଦି । ଏହିପରି ଶରୀରର ବିଭିନ୍ନ ଅଙ୍ଗମାନ ତିଳକରେ ଚର୍ଚ୍ଚିତ କରିବାକୁ ହୁଏ । ଏହି ତିଳକ ନାନାପ୍ରକାର, ଯଥା ରାମାନନ୍ଦ, ଶ୍ୟାମାନନ୍ଦ, ହରମନ୍ଦିର, ପୁଣ୍ଡ୍ରକ, ଊର୍ଦ୍ଧ୍ୱ ପୁଣ୍ଡ୍ରକ, କଲି, ଠୋପା ଇତ୍ୟାଦି । ଅଶେଷ ପ୍ରକାର ଭକତି, କେ ଜାଣେ ଗୋବିନ୍ଦର ଗତି । ଏହିପରି ତିଳକ ମଧ୍ୟ ନାନା ପ୍ରକାର, ନାନାବିଧ ପଦାର୍ଥରେ ନାନା ପ୍ରକାର ଆକୃତି ଓ ବର୍ଣ୍ଣର ତିଳକ କରିବାକୁ ହୁଏ ।

ପାଉଁଶ, ଅଂଗାର, ଗେରୁ, ଗୋରଚନ୍ଦା, ଚନ୍ଦନ, ହଳଦୀ, ଖଡ଼ ଇତ୍ୟାଦ । ସ୍ନାନ-ପରେ ତିଳକ ଗ୍ରହଣ କରିବାକୁ ହୁଏ । ସ୍ନାନ ହୋଇ ନଥିଲେ ତିଳକ କରା-ଯାଏ ନାହିଁ । ତିଳକଟା ସ୍ନାନର ଏକ ଚହ୍ନ ସ୍ୱରୂପ ଗୃହୀତ ହୁଏ । ଗାଧୋଇ ନଥିଲେ ତିଳକ କୋଥଳକି ଛୁଇଁବାକୁ ମଧ୍ୟ ହୁଏନାହିଁ । କୋଥଳଟି ହିନ୍ଦୁମାନଙ୍କର ଗୋଟିଏ ପବିତ୍ର ଜିନିସ । ଏଥିରେ ଫୁଲ ଚନ୍ଦନ ଦେଇ ଏହାକୁ ମୁଣ୍ଡିଆ ମାରିବାକୁ ହୁଏ । ପୁଣି ଶପଥ କଲାବେଳେ ଏହାକୁ ଛୁଇଁ କରିବାକୁ ହୁଏ । ଯାହାର ଯେତେ ଲମ୍ବା ପଇତା ଓ ଯେତେ ଉଜ୍ୱଳ ତିଳକ ଦେଖାଯାଏ ସେହିଲୋକ ସେତେ ଭକ୍ତ ଓ ନୈଷ୍ଟିକ ବୋଲି ପରିଚିତ ହୁଏ ।

ବ୍ରାହ୍ମଣମାନେ ଉପନୟନକାଳେ କଶ୍ୟପସ୍ୟ ତ୍ର୍ୟାୟୁଷଂ ଇତ୍ୟାଦ ମନ୍ତ୍ର ବୋଲି କପାଳରେ ତିନିଟା ଭସ୍ମ ଗାର କାଟନ୍ତି । ଏହାହିଁ ଥିଲା ବ୍ରାହ୍ମଣମାନଙ୍କର ମୂଳ ତିଳକ । ବ୍ରାହ୍ମଣମାନେ ଯେତେବେଳେ ଭିନ୍ନ ଭିନ୍ନ ଧର୍ମ ଧାରଣା ଘେନି ଭିନ୍ନ ଶ୍ରେଣୀରେ ବିଭକ୍ତ ହେଲେ ଏବଂ ବ୍ରାହ୍ମଣେତର ଜାତିମାନଙ୍କୁ ଅପଣା ଧର୍ମରେ ଦୀକ୍ଷିତ କଲେ, ସେତେବେଳେ ବୋଧହୁଏ, ଏକ ଦଳରୁ ଅନ୍ୟ ଦଳକୁ ପୃଥକ ରଖିବା ନିମନ୍ତେ ନାନାବିଧ ରଙ୍ଗର, ନାନାବିଧ ନିଶାଣର ଭିଆଣ ହେଲା । ବର୍ତ୍ତମାନ ସେହି ଧର୍ମ ଧାରଣା, ସେହି ନିୟମ ନିଷ୍ଠା ଅପସାରିତ ହୋଇଥିଲେହେଁ ଲୋକେ ଏହି ସଂସାର ତିଳକକୁ ମୂଳ କରି ଧରି ଅଛନ୍ତି । କେହି କେହି ତିଳକ ନକଲେ ଭୋଜନ କରନ୍ତିନାହିଁ । କେହି କହନ୍ତି ଶୂନ୍ୟ କପାଳ ହୋଇ ରହିବାକୁ ହେବନାହିଁ; ଶୂନ୍ୟ କପାଳରୁ ପଠାଣି ଲକ୍ଷଣର ପରିଚୟ ମିଳେ । ଯେଉଁ ଅଦୃଷ୍ଟ ବାଦମାନେ କପାଳକୁ ମୂଳ କରିଅଛନ୍ତି, ଭୂପାଳ ନହୁବା କପାଳ ବୋଲି କହନ୍ତି, ପୁଣି ଯେଉଁ-ମାନେ ମସ୍ତକର କପାଳକୁ ମାନବ ଜୀବନର ଗତି, ବିଧି ଓ ଉନ୍ନତିର ଖାତା ବହି ମନେ କରନ୍ତି ସେହି କପାଳଟାକୁ ଶୂନ୍ୟ ରଖିବା କିଂବା ଶୂନ୍ୟ ଦେଖିବା ସେମାନେ ସହ୍ୟ କରିପାରନ୍ତି କି ? ପୁଣି ଅନେକେ ଏହି ତିଳକଟାକୁ ସୌନ୍ଦର୍ଯ୍ୟର ଏକ ସାମଗ୍ରୀ ମନେ କରନ୍ତି । ଏମାନେ ଅତ୍ୟନ୍ତ ମନୋଯୋଗ ପୂର୍ବକ କପାଳୋପରି ଏହି ତିଳକ ରଚନାରେ ବହୁ ସମୟ ବ୍ୟୟ କରନ୍ତି । ଡେଉଲେଟରୁ ଅଫିସରୁ ଫେରିବା ଚଟିପେଟି ମୁଦ୍ରାମାନ ଦିଶନ୍ତି, ନହୁବା ଏକ ଇଂଚ ଓସାର ୪ । ୫ ଇଂଚ ଲମ୍ବ ରୂପା ପଟା ପରି ଦୁଇପଟ ଧଳା ତିଳକ, ତହିଁ ମଧ୍ୟରେ ଲାଲ ରଙ୍ଗର ସରୁ ଶିରି ଗାର-ଏହିପରି ବିବିଧ ରଙ୍ଗରେ କପାଳ ରଞ୍ଜିତ କରିଥାନ୍ତି । ଏହି ବିକୃତ ଭଣ୍ଡଙ୍କର ତିଳକର ଶୋଭା ସୌନ୍ଦର୍ଯ୍ୟ ଯାହାହେଉ ରାତିବେଳେ ପିଲାମାନେ ଏହି ତିଳକଧାରିମାନଙ୍କୁ ଦେଖିଲେ ଡରନ୍ତି ।

ଏହି ତିଳକଦ୍ୱାରା ଜାତିର, ସମାଜର ବା ବ୍ୟକ୍ତିବିଶେଷର କୌଣସି ଲାଭ ଥିବା ଜଣାଯାଏନାହିଁ ବରଂ ଅନେକ କ୍ଷତିର ସମ୍ଭାବନା । ଏଥିଦ୍ୱାରା ସମସ୍ତ ଓ ପରିଶ୍ରମ ବୃଥା ନଷ୍ଟ ହେବା ସଙ୍ଗେ ସଙ୍ଗେ ଦେଶରେ, ଜାତିରେ, ବନ୍ଧୁରେ ଓ ଭାଇ ମଧ୍ୟରେ ଅନୈକ୍ୟ ଏବଂ ଦ୍ୱେଷର ସୃଷ୍ଟି ହୁଏ ଏହି ତିଳକ କଳଙ୍କ ଯେତେ ଶୀଘ୍ର କ୍ଷାଳିତ ହେବ, ସମାଜର ଏବଂ ବ୍ୟକ୍ତି ବିଶେଷର ସେତେ ଶ୍ରେୟଃ ସାଧିତ ହେବ ।

—୦—

## ବିଭାଘର ଭୋଜି ।

ବିଭା ଓ ବ୍ରତ ମାନବ ଜୀବନର ବିଶେଷତଃ ହିନ୍ଦୁ ଜୀବନର ପ୍ରଧାନ କାର୍ଯ୍ୟ ହୁଏ । ଗୃହସ୍ଥମାନେ ଏହିପରି ଗୋଟିଏ ଗୋଟିଏ କାର୍ଯ୍ୟକରି ଆପଣାକୁ କୃତାର୍ଥ ମନେ କରନ୍ତି । ତଥାପି ଏହି କାର୍ଯ୍ୟମାନ ସେମାନେ କିପରି ନିର୍ବାହ କରନ୍ତି ଦେଖାଯାଉ । ବିବାହ ବ୍ରତାଦି କାର୍ଯ୍ୟକୁ ଭୋଜି କହନ୍ତି । ଭୋଜନ ଦେବାଟା ଏହାର ପ୍ରଧାନ ଅଙ୍ଗ ହେବାରୁ ବୋଧହୁଏ ଏହାକୁ ଭୋଜି କହନ୍ତି । ଏହି କାର୍ଯ୍ୟ ପୂର୍ବରୁ ବନ୍ଧୁବାନ୍ଧବ ପ୍ରିୟଜନମାନଙ୍କୁ ନିମନ୍ତ୍ରଣ କରିବାକୁ ହୁଏ ।

ନିମନ୍ତ୍ରଣ ପ୍ରଣାଳୀ—ଅମୁକ ବର୍ଷର ଅମୁକତିଥି ଅମୁକ ନକ୍ଷତ୍ର ଅମୁକ ମୁହୂର୍ତ୍ତରେ ଅମୁକ ନାମ୍ନୀ କନ୍ୟାଙ୍କର ଅମୁକ-ବ୍ୟକ୍ତିଙ୍କ ଅମୁକ ପୁତ୍ରଙ୍କ ସହିତ ଶୁଭ ପରିଣୟ ହେଉଅଛି । ଆପଣ ଅନୁଗ୍ରହ କରି ସପରିବାରରେ ଆସି ଏହିକାର୍ଯ୍ୟ ନିର୍ବାହ କରି-ଦେବା ହେବେ । ଏହିପରି ଲେଖାଯାଇ ନିମନ୍ତ୍ରଣ ପତ୍ର ପଠାଯାଏ । ଏହି ନିମନ୍ତ୍ରଣ ରକ୍ଷାକରି ଯଦି ସମସ୍ତେ ଆସନ୍ତି ତେବେ ଗୃହସ୍ଥ ପକ୍ଷରେ ସେମାନଙ୍କର ତଦ୍ବିର କରିବା ଅସାଧ୍ୟ ବ୍ୟାପାର ହୋଇ-ଉଠିବ । ପ୍ରତ୍ୟେକ ନିମନ୍ତ୍ରିତ ବ୍ୟକ୍ତି ଜଣଜଣଲେଖା ଆସିଲେ ସୁଦ୍ଧା ଗୃହସ୍ଥପକ୍ଷରେ ଅଭାବ ଏବଂ ଅସୁବିଧା ହେଉଥିବେଳେ ପରିବାରି ବର୍ଗଙ୍କର ତଦ୍ବିର କରିବା କିପରି ଅସାଧ୍ୟ ଏବଂ ଅତିରିକ୍ତ ବ୍ୟୟ ସାପେକ୍ଷ ତାହା ସହଜ ଅନୁମେୟ । ନିମନ୍ତ୍ରଣ ରକ୍ଷାକରି ସବୁଲୋକେ ଆସିପାରନ୍ତି ନାହିଁ ବୋଲି ଗୃହସ୍ଥମାନେ ଏପରି ନିମନ୍ତ୍ରଣ କରିଥାନ୍ତି । ଲୋକେ ଯଦି ପରିବାର ସହିତ ଆସୁ-ଥାନ୍ତେ ତେବେ ବୋଧହୁଏ କେହି ଗୃହସ୍ଥ ସେପରି ନିମନ୍ତ୍ରଣ ପଠାନ୍ତେ ନାହିଁ ।

ସେଦିନ ଇନ୍ସପେକ୍ଟର ବାବୁ ନିମନ୍ତ୍ରଣ ପାଇ ଆପଣା ଭଣଜାଙ୍କ ବିଭାଘରକୁ ଯାଇଥିଲେ । ପୂର୍ବ ବନ୍ଦୋବସ୍ତ ଅନୁସାରେ ଏମାନଙ୍କୁ ଆଠଟାବେଳେ ଜଳଖିଆ

ଦେବାକୁ ଥିଲା କିନ୍ତୁ ନିମନ୍ତ୍ରିତମାନେ ଆସିଲାବେଳକୁ ବାରଟା ହେଲା । ଦୁଇଟା ବେଳକୁ ଠାଆଁ ପିଢ଼ା ହେବା କଥା ଶୁଣାଗଲା କିନ୍ତୁ ଦେଖୁଁ ଦେଖୁଁ ଦୁଇଟାରୁ ବାଜିଅଢ଼େଇଟା ହେଲା ଏପର୍ଯ୍ୟନ୍ତ ଠାଆଁ ପିଢ଼ାର ଠିକଣା ହୋଇ ପାରିଲା ନାହିଁ ।

ଉପସ୍ଥିତ ବନ୍ଧୁମାନେ ବାହାରିଯାଇ ଅନ୍ୟ ଯାଗାରେ ରାନ୍ଧିବାଢ଼ି ଖାଇବାକୁ ଉଦ୍ୟମ କରିବା ଦେଖିବାରୁ ଗୃହସ୍ଥଙ୍କର ଚେତା ଆସିଲା । ସେତେବେଳେ ରନ୍ଧା-ବଢ଼ା ହୋଇ ରାତି ଏଗାରଟା ବେଳେ ଠାଆଁ ପିଢ଼ାର ଯୋଗାଡ଼ ହେଲା । ଏ ବିଳମ୍ବର କାରଣ ଜାଣିବାକୁ ପାଠକେ ଉତ୍କଣ୍ଠିତ ଥିବେ । ଗୃହସ୍ଥଙ୍କ ଘରେ କେବଳ ସ୍ତ୍ରୀଲୋକ ରାନ୍ଧନ୍ତି ପୁଣି ଏଥିପାଇଁ କେହି ହେଲେ ପୃଥକ ଭାବରେ ନିଯୁକ୍ତ ହୋଇ ନଥାନ୍ତି ।

ଝିଅ ଶାଶୁଘର ଗଲେ ମାଇପି ଲୋକେ କାନ୍ଦନ୍ତି ପୁଣି ଭୋଜି ଭାତ ହେଲେ ସେମାନେ ରାନ୍ଧନ୍ତି । ଏପରି ରାନ୍ଧିବା ଏବଂ କାନ୍ଦିବା ଦୁଇଟା କାର୍ଯ୍ୟ କରିବାରୁ କେତେ-ବେଳେ ରାନ୍ଧିବାକୁ ହେବ ପୁଣି କେତେବେଳେ କାନ୍ଦିବାକୁ ହେବ ଜାଣି ନପାରି ଏମାନେ ରାନ୍ଧିବାବେଳେ କାନ୍ଦନ୍ତି ପୁଣି କାନ୍ଦିବା ବେଳେ ରାନ୍ଧନ୍ତି । ଝିଅ ଶାଶୁଘର ଯିବା ଜାଣି ଯଦି କେହି ସ୍ତ୍ରୀଲୋକ କାନ୍ଦିବାକୁ ଆରମ୍ଭ କରନ୍ତି ସେତେବେଳେ ରାନ୍ଧିବା ଲୋକ ରନ୍ଧାଛାଡ଼ି କାନ୍ଦିବା ଲୋକ ସଙ୍ଗରେ ମିଶି କାନ୍ଦୁଣିରେ ଆପଣାର ସ୍ୱର ମିଶାଇ ଦିଅନ୍ତି । ଏହିପରି ରାନ୍ଧଣା କାନ୍ଦଣା ପାଖେ ପାଖେ ଚାଲିଥିବାରୁ କେତେଥର ବା ଭାତ ତରକାରୀ ସବୁ ପୋଡ଼ି ଚୂଲିରେ ପଶି ଭସ୍ମ ହୋଇ ଯାଇଥାଏ । ଏଣୁ କରି ଠାଆଁ ପିଢ଼ା ଯୋଗାଡ଼ରେ ଏତେ ବିଳମ୍ବ ଘଟିଥିଲା ।

ସେଦିନ ମହାପାତ୍ରଙ୍କ ଘରେ ବଡ଼ଭୋଜି ହୋଇଥିଲା । ସେଦିନ ଚଉଠିଭୋଜି ଭୋଜନ କରିବାପାଇଁ ମହାପାତ୍ର ମହାଶୟ ନିଜେ ଆମ୍ଭମାନଙ୍କୁ ବହୁବାର ଅନୁରୋଧ କରିଥିଲେ ସାଢ଼େ ଆଠ ଓ ନଅଘଣ୍ଟା ମଧ୍ୟରେ ଭୋଜନ ଦେବାକଥା ପୂର୍ବରୁ ସ୍ଥିର ହୋଇଥିଲା । ଯେଉଁ ବନ୍ଧୁମାନେ ଏପରି ନିମନ୍ତ୍ରଣ ପାଇଥିଲେ ସେମାନେ ଠିକ୍ ସେହି ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହେଲେ କିନ୍ତୁ ଠାଆଁ ପିଢ଼ା ହୋଇ ଭୋଜନ କଲା ବେଳକୁ ଦଶଟା ବାଜିଲା ।

ଶୁଭାଶୁଭ ଅନୁଷ୍ଠାନରେ ହେଉ, ପୁଣ୍ୟ ପର୍ବ ବିଧାନ ପାଳନରେ ହେଉ, ସଭା ସମିତିରେ ଯୋଗଦାନ କରିବାରେ ହେଉ, ପ୍ରତ୍ୟେକ କାର୍ଯ୍ୟରେ ଆମ୍ଭେମାନେ ଏହିପରି ଠିକ୍ ସମୟ ନିୟମ ପାଳନ କରିଥାଉଁ ପୁଣି ଅନେକ ଭୋଜିଘର ମାନଙ୍କରେ ଅଳ୍ପ ଦାତାଙ୍କର ଜ୍ଞାନ ହଜିଯାଏ ଏବଂ ଭୋକ୍ତାମାନଙ୍କର ବଳ ଭାଜିଯାଏ ।

—|୦|—

# ଧର୍ମ ଧାରଣା ।

ସେଦିନ ଜଣେ ବାଉରି କୌଣସି ବ୍ରାହ୍ମଣଙ୍କୁ ପ୍ରହାର କଲା । ବ୍ରାହ୍ମଣ ବାଉରି ଠାରୁ ମାଡ ଖାଇଲା, ବ୍ରାହ୍ମଣର ଜାତି ମହତ୍ତ୍ୱ ଗଲା, ବ୍ରାହ୍ମଣଙ୍କୁ ପ୍ରାୟଶ୍ଚିତ କରିବାକୁ ହେବ କି ନା ସେଦିନ ରାଜ ସଭାରେ ଏହି ମୀମାଂସା କରାଯାଇ ଥିଲା । ବାଉରି ପ୍ରତି ବ୍ରାହ୍ମଣ କି ଅସତ୍ ବ୍ୟବହାର କଲା, କାହିଁକି ବା ଦୌର୍ଜନ୍ୟ କଲା, ଏହି ଅପରାଧ ନିମନ୍ତେ ଉକ୍ତ ବ୍ରାହ୍ମଣକୁ ଦଣ୍ଡ ଭୋଗ କରିବାକୁ ହେବ କି ନା ଏହି ବିଷୟରେ ରାଜସଭାରେ କୌଣସି ବିଚାର ନାହିଁ । କେବଳ ବାଉରି ହାତରୁ ମାଡ଼ ଖାଇବା ହେତୁ ବ୍ରାହ୍ମଣର ଜାତି ଭ୍ରଷ୍ଟ ହେଲା, ଏଥିପାଇଁ ବ୍ରାହ୍ମଣକୁ କି ପ୍ରାୟଶ୍ଚିତ କରିବାକୁ ହେବ, ଏହି ବିଷୟରେ ରାଜସଭାରେ ବିଚାର ପଡିଲା । ରକ୍ଷା ହେଲା, କେହି କେହି ସୁବିବେକ ପଣ୍ଡିତ ବ୍ରାହ୍ମଣର ପ୍ରାୟଶ୍ଚିତ ପାଇଁ ବ୍ୟବସ୍ଥା ଦେଇ ପାରିଲେ ନାହିଁ । ଯଦି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ହୋଇଥାନ୍ତା, ତେବେ ବ୍ରାହ୍ମଣ ଜୀବନ ପ୍ରାୟଶ୍ଚିତ ମୟ ହୋଇ ଉଠନ୍ତା । ଆଜି ବ୍ରାହ୍ମଣମାନେ ବାଉରି, ପାଣ, ହାଡି ପ୍ରଭୃତି ଅନେକ ଜାତି ପ୍ରତି ଆପଣାର ବୈଷୟିକ ସମ୍ବନ୍ଧ ସମ୍ପର୍କ ରଖି ଅଛନ୍ତି । ବ୍ରାହ୍ମଣମାନଙ୍କର ଏହି ପ୍ରାୟଶ୍ଚିତ ପରାଧୀନତା ଦେଖି ବାଉରି, ହାଡି ପ୍ରଭୃତି ନୀଚ ଜାତିରେ ଲୋକେ ପ୍ରତିହିଂସା ପରିଶୋଧ କରିବା ନିମନ୍ତେ ବ୍ରାହ୍ମଣଙ୍କୁ ସ୍ପର୍ଶ ପୂର୍ବକ ଅପମାନ କରିବାକୁ ବସନ୍ତେ । ବ୍ରାହ୍ମଣ ବିଚରା ଏଣେ ମାଡ ଖାଆନ୍ତା, ତେଣେ ପ୍ରାୟଶ୍ଚିତ୍ତ କରନ୍ତା ।

ବୋଧହୁଏ ଏହି ଯୁଗରେ ବ୍ରାହ୍ମଣମାନଙ୍କର ବ୍ରାହ୍ମଣତ୍ୱ ଲୋପ ଗତ ହୋଇ ପଡଅଛି । ଏହି ଦର୍ପର ସ୍ପର୍ଶମାନେ ବ୍ରାହ୍ମଣତ୍ୱ ଅନ୍ତର୍ହିତ ହୋଇଯାଉଅଛି । ବ୍ରାହ୍ମଣମାନେ ଏକ ସମୟରେ ଅନ୍ୟାନ୍ୟ ଜାତିମାନଙ୍କର, କି ରାଜା କି ପ୍ରଜା ସମସ୍ତଙ୍କର ନିୟାମକ ଥିଲେ । ଏବେ ବ୍ରାହ୍ମଣମାନେ ରାଜାମାନଙ୍କ ହାତରେ ତିଆରି ହୋଇ ଅଛନ୍ତି । ଏମାନେ ଧନକୁବେର ରାଜା ମାନଙ୍କର ସ୍ୱେଚ୍ଛାଚାରାନୁବର୍ତ୍ତୀ । ସାମାନ୍ୟ ବ୍ରାହ୍ମଣ ସାମନ୍ତ ଶ୍ରେଣୀ ଭୁକ୍ତ ହୁଏ, ଏବଂ ସାମନ୍ତ ବ୍ରାହ୍ମଣ ମଧ୍ୟ ରାଜ ନିଗ୍ରହରୁ ପଦଚ୍ୟୁତ ହୁଏ, ପୁଣି ସମାଜରେ ଅମାନ୍ୟ ହୁଏ । ବ୍ରହ୍ମାଙ୍କର ସୃଷ୍ଟି ବହୁକାଳର ପୁରୁଣା ହୋଇ ଗଲାଣି । ତାହାଙ୍କର ସକଳ ଜାତି ବନ୍ଧନ ଶିଥିଳ ହୋଇ ପଡିଲାଣି । 'ଧନମୂଳମିଦଂ ଜଗତ୍' ଏବେ କୁବେରର ରାଜତ୍ୱ ପ୍ରବର୍ତ୍ତ ଅଛି । କୌଣସି ଅଜ୍ଞାତ କୁଳଶୀଳ ବ୍ୟକ୍ତିକି ରାଜାମାନେ କୌଣସି ଏକ ଜାତି ଭୁକ୍ତ କରାଇ ଦିଅନ୍ତି । ଚାଷୀ ଘରୁ କନ୍ୟାଟିଏ ବାହା କଲେ ଚଷାପୁଅ ହେଲା, ନତୁବା କରଣ ଘରେ ବା କ୍ଷତ୍ରିୟ ଘରେ କନ୍ୟାଟିଏ ଦେଲେ କରଣ ବା କ୍ଷତ୍ରିୟ ହେଲା, ବାରମିଶା ବେଶ୍ୟା ବାଳକଟିଏ ରାଜ ପ୍ରସାଦରୁ

କାଳକ୍ରମେ ପରଦାରାମିନୀ କୁଳବଧୂ ହୁଏ । ରାଜାମାନଙ୍କ କଥା ଦୂରରେ ଥାଉ କୌଣସି ସାଧାରଣ ଲୋକ ମଧ୍ୟ ୫ ୨୦୦ ବା ୫୦୦ ଟଙ୍କା ଖରଚ କଲେ ଏକ ବିଧବା ବ୍ରାହ୍ମଣୀଙ୍କି ପୁନର୍ବିବାହ କରାଇ ଦେଇ ପାରେ, ଜଣେ ହଲୁଅକୁ ଦଳୁଆ ଘରେ ବିବାହ କରାଇ ଦେଇପାରେ । ତଥାପି ଏହି ଜାତିଟା ଗୋଟିଏ ଅଟଳ ଏବଂ ସ୍ଥିରପଦାର୍ଥ, ପୁଣି ଖାଦ୍ୟପାନ ବା ସ୍ପର୍ଶ ଦୋଷରେ ନଷ୍ଟହୁଏ ବୋଲି ସାଧାରଣଙ୍କ କଥା ଛାଡ଼ ପଣ୍ଡିତ ମାନଙ୍କର ଧାରଣା । ଏହି ଧର୍ମ ଧାରଣା ଦୂରୀଭୂତ ନ ହେବା ପର୍ଯ୍ୟନ୍ତ ଭାରତ ଜାତିର ପରିତ୍ରାଣ ସୁଦୂର ପରାହତ ।



## ଭଣ୍ଡାଚରଣ ।

ପ୍ରସ୍ରାବ ପ୍ରଣାଳୀ—ପ୍ରତ୍ୟେକ ଆଚାରର କୌଣସି ମୂଳ ଉଦ୍ଦେଶ୍ୟ ଅଛି ବା ଥାଇପାରେ । କିନ୍ତୁ ଅଜ ତାହାର ମୂଳ ଉଦ୍ଦେଶ୍ୟ ପ୍ରତି ଲକ୍ଷ ଥିବା ଦେଖାଯାଏ ନାହିଁ । ପ୍ରସ୍ରାବକଲେ ଜଳଗ୍ରହଣ କରିବା ଏକ ନିୟମ ଅଛି । ପଇତାଟା କାନରେ ଦେବା ବ୍ୟବସ୍ଥାଅଛି । ଏହିପରି ଅନେକ ପଦ୍ଧତି ଧର୍ମଶାସ୍ତ୍ରରେ ଅଛି ବା ଥାଇ-ପାରେ କିନ୍ତୁ ସମ୍ପ୍ରତି ବ୍ରାହ୍ମଣ ସମାଜରେ କେବଳ ବାଧିରକ୍ଷା ପାଇଁ ଅନେକ ଆଚାର ବ୍ୟବହାରର ଚିହ୍ନାବଶେଷ ମାତ୍ରଅଛି । ସେଦିନ ନବରଙ୍ଗପୁର ନଟବର ଷଡଙ୍ଗୀଙ୍କର ବିଭାଘର ହୋଇଥିଲା । ବର ଦକ୍ଷିଣା କନ୍ୟାସୁନା ଅଭ୍ୟାଗତ ଯାତ୍ରୀ ମାନଙ୍କ ଘରେ ଖାଇବା ନିମନ୍ତେ ଟଙ୍କା ଓ ଯଥା ଓଗେର ଦିଆଯାଇ ଭୋଜର ଆୟୋଜନ ହୋଇଥିଲା । ଦାସେ, ମହାପାତ୍ରେ, ରଥେ, ମିଶ୍ରେ ଅନେକ ଶାସନରୁ ଅନେକ ପ୍ରକାର ବ୍ରାହ୍ମଣ ଅସିଥିଲେ । ଦ୍ୱାରମୁହଁ ବୈଠକ କୋଠାରେ ଗୋଟିଏ ଗଡ଼ୁ—ଜଳପାତ୍ର ଥାଏ । କେହି ବ୍ରାହ୍ମଣ ପ୍ରସ୍ରାବ କରିବାକୁ ଗଲେ ଏହି ଗଡ଼ୁ ଖଣ୍ଡିକ ଧରି ଯାଆନ୍ତି । କ୍ରମେ କ୍ରମେ ନାନାବିଧ କାର୍ଯ୍ୟରେ ବ୍ୟବହୃତ ହୋଇ ଗଡ଼ୁର ଜଳ ସବୁ ସରିଗଲାଣି, କେବଳ ଶୁଷ୍କ ପାତ୍ରଟା ଅଛି । ତଥାଚ ବ୍ରାହ୍ମଣ ଗୋସାଇଁ ମାନେ ସେହି ଗଡ଼ୁ ଖଣ୍ଡିକ ଧରି ଯାଇ ଲଘୁକ୍ରିୟା ସମ୍ପାଦନ କରି ଫେରନ୍ତି । ଏମାନେ ପ୍ରସ୍ରାବ କାଳେ ଜଳ ବ୍ୟବହାର କରନ୍ତି, ଏହି କଥାଟା ମାତ୍ର ଦାଣ୍ଡରେ ଲୋକଙ୍କୁ ଦେଖାଯାଏ । କିନ୍ତୁ ବାସ୍ତବିକ ଜଳର ପ୍ରୟୋଗ ନଥାଏ । ଏସମୟରେ ଜଣେ ନୈଷ୍ଠିକ ସାମନ୍ତ ବ୍ରାହ୍ମଣ ଏକ ଯିବାପାଇଁ ଉଠି ଦେଖିଲେ ଯେ ସେଠାରେ ଗଡ଼ୁ ନଥିଲା । ଜଳପାତ୍ର ତଲାସ କରିବା ଦେଖି ଭଣ୍ଡାର ପିତଳ ଖଣ୍ଡେ ଲଗିଥିବା ଖଣ୍ଡେ କାଞ୍ଚ ଅଣି ଦେଲା । ଜଳପାତ୍ର ବଦଳରେ ବାଡ଼ି କାହିଁକି ଦେଉଅଛୁ

ବୋଲି ପଚାରିବାରେ ନାପିତ ସେବକ କହିଲା "ଗଡ଼ୁରେ ଯାହାଅଛି ଏହି ବାଡ଼ିରେ ତାହା ଅଛି । ଜଳ ନଥିଲେ ମଧ୍ୟ ଗୋସାଇଁ ମାନେ ପିତଳ ଗଡ଼ୁଟା ନେଇ ଯାଆନ୍ତି । ଏହି ବାଡ଼ିରେ ପିତଳ ଖଣ୍ଡେ ଲାଗିଅଛି ଏହେତୁରୁ, ପିତଳ ଗଡ଼ୁ- ନହିଲେ ଏହି ବାଡ଼ିର ପିତଳରେ କାର୍ଯ୍ୟ ଚଳି ଯିବ ପରାବୋଲି ଦେଇଅଛି ।" ପାଠକେ ଏଥିରୁ ସୁସ୍ପଷ୍ଟ ବୁଝି ପାରିବେ ଯେ ବ୍ରାହ୍ମଣ ମାନଙ୍କର ଆଗ୍ରହ ଗୁଡ଼ିକ ସବୁ ଏହିପରି ଅନ୍ତଃସାର ଶୂନ୍ୟ, ଫମ୍ପା । କେବଳ ଲୋକଙ୍କୁ ଭଣ୍ଡାଇବା ନିମନ୍ତେ ଏହିସବୁ ବାହ୍ୟାଡ଼ମ୍ବର ବିଶେଷ ।

## ଆନ୍ତର୍ଜାତିକ ବିବାହ ।

ଭାରତ ବ୍ୟବସ୍ଥାପକ ସଭାରେ ମାନନୀୟ ପଟେଲ ମହାଶୟ ଆନ୍ତର୍ଜାତିକ ବିଲ ବିଷୟକ ଯେଉଁ ପ୍ରସ୍ତାବ ଆଗତ କରିଅଛନ୍ତି, ତାହା ବର୍ତ୍ତମାନ ଦେଶ କାଳୋପ- ଯୋଗୀ ଏବଂ ଭାରତ ଦେଶ ପକ୍ଷରେ ଅତି ଉତ୍ତମ କଥା ଓ ଅତ୍ୟନ୍ତ ମଙ୍ଗଳ ଜନକ ବ୍ୟବସ୍ଥା । ବହୁକାଳ ହେଲା ଭାରତ ଦେଶରେ ଅସବର୍ଣ୍ଣ ବିବାହ ପ୍ରଥା ଚାଲି ଆସୁଅଛି ଏହାର ଫଳରେ ଆଜି ବୈଦିକ ଧର୍ମ ଓ ଆର୍ଯ୍ୟଜାତି ଲୁପ୍ତ ପ୍ରାୟ ହୋଇ ଜାତି, ନୀତି, ଧର୍ମ, କର୍ମ, ସବୁ ସଙ୍କର ହୋଇ ପଡ଼ିଅଛି । ଗୁଣ କର୍ମ ଓ ସ୍ୱଭାବାନୁସାରେ ବର୍ଣ୍ଣ ବିଭାଗ କରା ଯାଉଥିଲା, ଯଥା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଓ ଶୂଦ୍ର । ବର୍ତ୍ତମାନ ଗୁଣ କର୍ମ ଓ ସ୍ୱଭାବ ପ୍ରତି ଦୃଷ୍ଟି ନରଖି ଖାଇବା ପିଇବା ଓ ଜନ୍ମ ଯେନି ଜାତିର ବିଭାଗ । ଏହି ଅବୈଧ ସଂକୀର୍ଣ୍ଣ ସୀମା ମଧ୍ୟରେ ବିବାହ ସମ୍ବନ୍ଧ ଆବଦ୍ଧ । ଏହି ଅସବର୍ଣ୍ଣ ବିବାହ ହେତୁ ଆଜି ହିନ୍ଦୁଜାତି ହୀନବୀର୍ଯ୍ୟ, ହୀନବଳ, ଅଳ୍ପାୟୁ, ଅକ୍ଷମ, ଅଧାର୍ମିକ ଏବଂ ସଙ୍କର ହୋଇ ପଡ଼ୁଅଛି । ଅତଏବ ପଟେଲ ମହୋଦୟଙ୍କ ପ୍ରସ୍ତାବିତ ବିବାହ ବିଧାନ ଅତ୍ୟନ୍ତ ଆବଶ୍ୟକ, ଯେହେତୁ ଏହି ବ୍ୟବସ୍ଥା ହିନ୍ଦୁ ସମାଜର ସାଂକର୍ଯ୍ୟ ବହୁ ପରିମାଣରେ ନିବାରଣ କରି ବୈଦିକ ଯୁଗର ପ୍ରସିଦ୍ଧ ରୀତି ଆନୟନ କରି ପାରିବ । ଏଥିଦ୍ୱାରା ବରକନ୍ୟା ନିର୍ବାଚନ କ୍ଷେତ୍ର ପ୍ରସାରିତ ହେବ । ସମାନ ଗୁଣ ସ୍ୱଭାବ ଓ ସମାନ ଧର୍ମ କର୍ମର ପୁରୁଷ ସ୍ତ୍ରୀ ବିବାହ କରିବେ । ଏହିପରି ସବର୍ଣ୍ଣ ବିବାହ ସମା- ଜରେ ପ୍ରଚଳିତ ହୋଇ ହିନ୍ଦୁ ଜାତିର ଆଧ୍ୟାତ୍ମିକ ଓ ବୈଷୟିକ ସବୁ ପ୍ରକାର ଉନ୍ନତି ସାଧିତ ହେବ । ଯେଉଁମାନେ ଏହି ବିବାହର ଆପତ୍ତି କରନ୍ତି ସେମାନେ ବର୍ଣ୍ଣ ବିରୋଧୀ, ଜାତିଦ୍ରୋହୀ ଓ ସମାଜ କଣ୍ଟକ । ଏହି ଆଇନ ଦ୍ୱାରା ଆନ୍ତର୍ଜାତିକ ବିବାହ ବାଧ୍ୟତାମୂଳକ କରା ଯାଉନାହିଁ । କିମ୍ବା ପ୍ରଚଳିତ ବିବାହ ପ୍ରଥା ରହିତ କରାଯାଉ ନାହିଁ । ଏଥିଦ୍ୱାରା କେବଳ ଆନ୍ତର୍ଜାତିକ ବିବାହ ଜାତ ସନ୍ତାନମାନେ ଜାରଜ ବୋଲି ଉପେକ୍ଷିତ ନ ହୋଇ ସେମାନଙ୍କର

ପୈତୃକ ସମ୍ପତ୍ତିର ଉତ୍ତରାଧିକାର ସ୍ୱତ୍ୱ ନିରାପଦ ସଂରକ୍ଷିତ ହେବ, ଏହାହିଁ ଏହି ଆଇନର ଉଦ୍ଦେଶ୍ୟ । କେହି ହିନ୍ଦୁ ଯେତେବେଳେ ସ୍ୱଧର୍ମ ତ୍ୟାଗ କରି ଖ୍ରୀଷ୍ଟାନ ବା ମୁସଲମାନ ଧର୍ମ ଅବଲମ୍ବନ କଲେହେଁ ଆଇନ ବଳରେ ପୈତୃକ ସମ୍ପତ୍ତିରୁ ବଞ୍ଚିତ ହୁଏ ନାହିଁ, ତେବେ ଅନ୍ତର୍ଜାତିକ ବିବାହ ହେତୁ କେହି ହିନ୍ଦୁ କାହିଁକି ବା ଉତ୍ତରାଧିକାର ସ୍ୱତ୍ୱରୁ ବଞ୍ଚିତ ହେବ ? ଏହି ଆଇନ ପ୍ରଣୟନ ହେବାମାତ୍ରେ ଯେ ସର୍ବତ୍ର ଅନ୍ତର୍ଜାତିକ ବା ବର୍ଣ୍ଣାନ୍ତର ବିବାହ ପ୍ରଚଳିତ ହେବ ଏହା ନୁହେଁ । କିନ୍ତୁ ଯଦି କେହି ବ୍ୟକ୍ତି ଏପରି ବିବାହ କରି ଥାଏ ବା କରିବାକୁ ଚାହେଁ, ତାହା ପ୍ରତି ଆଇନଗତ ଆପତ୍ତି ରହି ପାରିବନାହିଁ । ବିଧବା ବିବାହ ଆଇନ ହେବାପରେ କେତେଟା ବିଧବା ବିବାହ ଚାଲି ଯାଇଅଛି ? ସୁତରାଂ ରକ୍ଷଣଶୀଳ ଦଳପତି ମାନଙ୍କ ଆଶଙ୍କା ଏକାନ୍ତ ଅମୂଳକ ।



## ଛାଡ଼ଖାଇ ।

କାର୍ତ୍ତିକ ମାସ ହିନ୍ଦୁ ମାନଙ୍କର ଏକ ପବିତ୍ର ମାସ । ଏହି ମାସରେ ଅନେକ ଲୋକ ପ୍ରାତଃ ସ୍ନାନ କରନ୍ତି, ଦିଅଁ ଦର୍ଶନ କରନ୍ତି. ଆମିଷ ଖାନ୍ତି ନାହିଁ, ହବିଷ୍ୟ କରନ୍ତି ଅର୍ଥାତ ଥରେ ଖାନ୍ତି, ମରିଚ, ସୋରିଷ, ବାଇଗଣ, ମୂଳା, ପିଆଜ ପ୍ରଭୃତି ଉତ୍ତେଜକ ପଦାର୍ଥ ଖାନ୍ତି ନାହିଁ । ଯେଉଁମାନେ ମାସ ଯାକ ଏହି ନିୟମ ପାଳି ପାରନ୍ତି ନାହିଁ ଅନ୍ତତଃ ପଞ୍ଚକ ପାଞ୍ଚ ଦିନ ଏହି ନିୟମ ପାଳିଥାନ୍ତି । ପୂର୍ଣ୍ଣିମା ବାସୀ ଦିନ ଛାଡ ଖାଇ ହୁଏ । ଯେ ଯେଉଁ ପଦାର୍ଥ ଛାଡିଥାଏ ପୁଣି ଖାଇବାକୁ ପାଇ ନଥାଏ ସେହି ସକଳ ପଦାର୍ଥ ସଂଗ୍ରହ କରି ଆଜ ସେହି ବ୍ୟକ୍ତି ଖାଏ । ଏମନ୍ତ କି ଆଜ ଏକ ଭୋଜି ହୁଏ, ମାଛ, ମାଂସ, କ୍ଷୀର, ପିଠା, ମଠା, ଖଟା ଇତ୍ୟାଦି ନାନାବିଧ ଭୋଜନର ଆୟୋଜନ ହୁଏ । ଝିଅ ଜୁଆଇଁ, ବନ୍ଧୁ ବାନ୍ଧବ, ପ୍ରିୟ ପ୍ରୀତି ଲୋକମାନେ ନିମନ୍ତ୍ରିତ ହୋଇ ଆସନ୍ତି । ମତ୍ସ୍ୟ ହିଁ ଛାଡଖାଇ ଭୋଜନର ପ୍ରଧାନ ଅପରିହାର୍ଯ୍ୟ ଅଂଶ ।

ମତ୍ସ୍ୟ ମାଂସାଦି ଉତ୍ତେଜକ, ତାମସିକ, ସ୍ୱାସ୍ଥ୍ୟ ବିନାଶକ ଏବଂ ଶରୀର ବର୍ଦ୍ଧକ ଆହାର ସର୍ବଦା ନିଷିଦ୍ଧ । ତଥାପି ମାନବ ପ୍ରକୃତ ଜିହ୍ୱା ଲାଳସାର ବଶୀଭୂତ ହୋଇ ପ୍ରୋକ୍ତ ବିଷମ ଆହାରର ବଶୀଭୂତ ହୋଇ ପଡ଼ିଅଛି । ଏହି ପ୍ରବୃତ୍ତି ଦୂର କରିବା ସକାଶେ କାର୍ତ୍ତିକ ବ୍ରତ, ଏକାଦଶୀ ଉପବାସ ଇତ୍ୟାଦି ବିଧାନର ସୃଷ୍ଟି ହୋଇଅଛି । ସଂଯମ ଦ୍ୱାରା ଏହି ଦୁଷ୍ଟ ପ୍ରବୃତ୍ତି କ୍ରମଶଃ ଦୂର ହୋଇପାରେ । କିନ୍ତୁ ଏହି

ଛାଡଖାଇ ବିଧାନ ଦ୍ୱାରା କାର୍ତ୍ତିକ ବ୍ରତର ଉଦ୍ଦେଶ୍ୟ ନଷ୍ଟ ହେଉଅଛି । ପୂର୍ଣ୍ଣିମାବାସି ଛାଡଖାଇ ଦିନ ମାଛ, ମାଂସ, ପିଆଜ, ରସୁଣ, ମୂଳା, ମରିଚ ଆଦି ଖାଇବା ଦ୍ୱାରା ବ୍ରତ ବିଧାନ, ସ୍ୱାସ୍ଥ୍ୟ ନିୟମ, ତ୍ୟାଗଶୀଳତା, ସଞ୍ଜମ ଆଦି ନଷ୍ଟ ହୁଏ । ବ୍ରତାଗ୍ଭର ଓ ତ୍ୟାଗ ଧର୍ମର ସଞ୍ଚିତ ଫଳ ନଷ୍ଟ ହେବା ବାହାରେ ଶରୀରର ସ୍ୱାସ୍ଥ୍ୟ ନଷ୍ଟ ହୁଏ ଏବଂ ମନ କଳୁଷିତ ହୁଏ । ଏକାଦଶୀର ପୂର୍ବ ଓ ପରଦିନର ଅତ୍ୟାଚାର ଓ ଅତିରକ୍ତ ଆହାର ହେତୁ ଏକାଦଶୀ ବ୍ରତର ଫଳ ଯେପରି ନଷ୍ଟ ହୁଏ ଛାଡଖାଇ ହେତୁ କାର୍ତ୍ତିକ ବ୍ରତ ସେହିପରି ନଷ୍ଟ ହୁଏ । କାଲି ଏକାଦଶୀ କରିବାକୁ ହେବ ଯେ କ୍ଷୁଧା ତୃଷା ଧର୍ଯ୍ୟ କରିବାକୁ ହେବ ବୋଲି ଆଜି ଅନେକେ ଟିକିଏ ବେଶୀ ଖାଇଥାନ୍ତି ପୁଣି ଦ୍ୱାଦଶୀ ପାରଣା ବେଳେ ମଧ୍ୟ କିଛି ଅଧିକ ଖାଇଥାନ୍ତି । ଏହିପରି ଏକାଦଶୀ ପାଳନ ଦ୍ୱାରା କୌଣସି ଫଳ ହୁଏ ନାହିଁ ବରଂ ମନ୍ଦ ଫଳ ଫଳେ । ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଯାଏ । ମାସକର କାର୍ତ୍ତିକ କୃତ୍ୟ ଏକା ଛାଡଖାଇରେ ଭସ୍ମ ହୋଇଯାଏ । କାର୍ତ୍ତିକ ମାସ ପରେ ମତ୍ସ୍ୟାଦି ପଞ୍ଚତ୍ୟକ୍ତ ଦ୍ରବ୍ୟ ପୁନରପି ଭକ୍ଷଣ କରାଯାଇ ପାରେ । କିନ୍ତୁ ଛାଡଖାଇ ବୋଲି କୌଣସି ଧରାବନ୍ଧା ନିୟମ ରହିବା ଉଚିତ ନୁହେ । ଏହି ଛାଡଖାଇ ବିଧାନ ଥିବା ହେତୁ ଅନେକ ଲୋକ କାର୍ତ୍ତିକ କୃତ୍ୟ ପ୍ରତି ଯେତେ ଉଦାସୀନ—ଛାଡଖାଇ ବିଧି ପ୍ରତି ତତୋଽଧିକ ଅନୁରକ୍ତ ।

—○—

## ଦୀପାବଳୀ ।

ଆଜ ଦୀପାବଳୀ ଅମାବାସ୍ୟା । ଆଜି ସର୍ବ ସ୍ଥଳ ଆଲୋକ ଦେବା ବିଧାନ ଅଛି । ବିବିଧ ରଙ୍ଗର ଆଲୋକ ସହାଣେ ବାଣ ବା ଆତସବାଜିର ସୃଷ୍ଟି । ଆଲୋକ ଦାନ ଅଟେ ଏହି ବିଧାନର ମୂଳ ଉଦ୍ଦେଶ୍ୟ । ସବୁ ସ୍ଥଳଠାରୁ ଅମାବାସ୍ୟା ରାତି ବଡ଼ ଅନ୍ଧାର । ବୋଧହୁଏ, ସବୁ ଅମାବାସ୍ୟାଠାରୁ ଏହି ଅମାବାସ୍ୟା ସର୍ବ ଅତି ବଡ ଅନ୍ଧାକାରମୟ । ଏ ହେତୁରୁ ପରା ଆଜ ଆଲୋକର ବିଶେଷ ବିଧାନ କରା ଯାଇଅଛି । ଆଜି ପିତୃଲୋକଙ୍କ ପାଇଁ ଆଲୋକ ଦିଆଯାଏ । ପିତୃଲୋକ କେଉଁ ମାନେ ? ଯେଉଁମାନେ ପରମାତ୍ମା ଓ ପଦାର୍ଥ ବିଦ୍ୟାରେ ନିପୁଣ, ଯେଉଁମାନେ ବିଦ୍ୟୁତାଦି ପଦାର୍ଥ ବନ୍ଧନ ଜାଣନ୍ତି, ଯେଉଁମାନେ ଉତ୍ତମ ବ୍ୟବହାର କରନ୍ତି, ଯେଉଁମାନେ ନିଜେ ଐଶ୍ୱର୍ଯ୍ୟଶାଳୀ ଏବଂ ଅନ୍ୟର ଐଶ୍ୱର୍ଯ୍ୟ ସମ୍ପାଦନ କରନ୍ତି, ଯେଉଁମାନେ ଔଷଧାଦି ସେବନ ଦ୍ୱାରା

ରୋଗମୁକ୍ତ ଥାନ୍ତି, ଏବଂ ମହୌଷଧି ଦାନକରି ଅନ୍ୟ ଲୋକର ସ୍ୱାସ୍ଥ୍ୟ ସାଧନ କରନ୍ତି, ଯେଉଁମାନେ ମାଦକ ବା ହିଂସାକାରକ ଦ୍ରବ୍ୟ ଭୋଜନ କରନ୍ତି ନାହିଁ ଯେଉଁମାନେ ଉପାଦେୟ ବସ୍ତୁର ସଂରକ୍ଷଣ କରନ୍ତି ଏବଂ ଦୁଗ୍ଧ ଘୃତାଦି ଭୋଜନ କରନ୍ତି, ଯେଉଁମାନେ ଧର୍ମ୍ମ କର୍ମରେ ଅପଣାର ସମସ୍ତ ମୁହୂର୍ତ୍ତରେ ଅତି-ବାହିତ କରନ୍ତି, ଯେଉଁମାନେ ଦୁଷ୍ଟଙ୍କୁ ଦଣ୍ଡଦିଅନ୍ତି ଏବଂ ଶିଷ୍ଟ ପାଳନକରନ୍ତି, ଯେଉଁମାନେ ସନ୍ତାନ ମାନଙ୍କୁ ପାଳନ କରନ୍ତି, ଗୌରବ କରନ୍ତି, ଅର୍ଥାତ୍ ପିତା, ପିତାମହ, ପ୍ରପିତା ମହ, ମାତା, ପିତାମହୀ, ପ୍ରପିତାମହୀ, ଭାର୍ଯ୍ୟା, ଭଗିନୀ, ସମ୍ବନ୍ଧୀ ଜ୍ଞାତି, କୁଟୁମ୍ବ, ଅପର ଭଦ୍ରଲୋକ ଓ ବୃଦ୍ଧବ୍ୟକ୍ତି—ଏମାନେ ସମସ୍ତେ ପିତୃ-ଲୋକ ଅଟନ୍ତି । ଆଜି ଏମାନଙ୍କ ପାଇଁ ଆଲୋକର ଯୋଗାଡ କରିବା କଥା । କିନ୍ତୁ ପ୍ରକୃତି ଏମାନଙ୍କୁ ଆଲୋକ ଦିଆଯାଏ ନାହିଁ । ଅନେକ ସାହି ଗଳି ବାଟ ଘାଟ ମଣ୍ଡପ ମନ୍ଦିର ଇତ୍ୟାଦି ଅନ୍ଧକାର ମୟ ପଡଥାଏ, ତହିଁ ପ୍ରତି କାହାରି ଦୃଷ୍ଟି ପଡେ ନାହିଁ । ପଣ୍ଡିତ ଭଦ୍ରଲୋକ, ବୈରାଗୀ, ସନ୍ନ୍ୟାସୀ, ଅତିଥି ଇତ୍ୟାଦି ମହଜ୍ଜନ ମାନଙ୍କୁ ଖଣ୍ଡେ ଲଣ୍ଠନ୍ ବା ଗୋଟିଏ ଦୀପସୁଦ୍ଧା ଦିଆଯାଏ ନାହିଁ । ଘରର ବୁଢ଼ା ବୁଢ଼ି, ରୋଗୀ ବୈରାଗୀ ଲୋକମାନେ କେଉଁ କୋଣ ବାଡ଼େ ପଡ଼ି-ଥିବେ, ସେମାନଙ୍କ ପାଖେ ଗୋଟିଏ ସୁଦ୍ଧା ଦୀପ ନଥିବ । ଏଣେ ଦାଣ୍ଡଦ୍ୱାରେ ଦୀପା-ବଳୀ, ବାଣ, ନାଚ ଇତ୍ୟାଦି, ମଝି ଅଗଣାରେ ବା ବାଡଆଡ ଗଡ଼ରା ମୂଳେ ପିତୃଲୋକଙ୍କୁ ଦୀପଦାନ କରି ଯାଏ । ଜୀବିତ ପିତୃଲୋକେ ଅନ୍ଧାରକୋଣେ ପଡ଼ି—ଥିବେ ତେଣେ ମୃତ ବ୍ୟକ୍ତିଙ୍କ ନାମରେ ଆକାଶକୁ ଆଲୋକ ଦେଖାଯାଏ ।

ଆର୍ଯ୍ୟ ଧର୍ମ୍ମର ଅନେକ ସୁନ୍ଦର ବିଧାନ ଗୁଡିକ ଆଜି ହିନ୍ଦୁ ଧର୍ମ୍ମର କୁସଂସ୍କାରାବଳୀର କଳୁଷିତ, କଳଂକିତ ହୋଇ ପଡିଅଛି । ଆଜ ଦୀପଦାନ ଶ୍ରାଦ୍ଧ କରିବାକୁ ହେବ । ଏଥିପାଇଁ ଜଣେ ପୁରୋହିତ ବ୍ରାହ୍ମଣ ଆସିବେ, କିଛି ମନ୍ତ୍ର ଯନ୍ତ୍ର କରି ପିଠା ଖଜା ଇତ୍ୟାଦି ଆହାର୍ଯ୍ୟ ପଦାର୍ଥରୁ କିଛିନେଇ ଗୁଲିଯିବେ । ଯଦିବା ଶୂଦ୍ରଘରେ ଶ୍ରାଦ୍ଧ କରିବାକୁ ହୁଏ ତେବେ ଚାଉଳ, ମୁଗ, ଗୁଡ଼, ଘିଅ ଇତ୍ୟାଦି ଧରି ଉଠିବେ ।

ଭର୍ତ୍ତା, ଭାର୍ଯ୍ୟା, ଗୃହକର, ଗୃହକରାଣୀ ତିନିଜଣ ଏପରି ପାଞ୍ଚଜଣ ଥିଲେ । ଗୃହକର ମଧ୍ୟରେ ଜଣେ ପାଚକ ବ୍ରାହ୍ମଣ, ଜଣେ ଭଣ୍ଡାରି, ଆଉଜଣେ ବିଧବା ବ୍ରାହ୍ମଣୀ । ପାଞ୍ଚଖଣ୍ଡ ଆଖୁରେ କନା ଗୁଡ଼ାଇ ତହିଁରେ ଘିଅ ଲଗାଇ ପାଞ୍ଚଟା ଦୀପ କାଠି ତିଆରି କରିବା ନିମନ୍ତେ ଗୃହସ୍ଥ କହିଲେ । ପାଞ୍ଚଜଣ ଏକତ୍ରହୋଇ ଖଣ୍ଡେଲେଖେ

ଏହି କଳନ୍ତା ଅଖ୍ୟୁଖଣ୍ଡ ଧର ଉପରକୁ ଆଲୁଅ ଦେଖାଇବେ । ଗୃହିଣୀଙ୍କର ଏଥିରେ ଭାରି ଆପତ୍ତି ଉଠିଲା । ଭଣ୍ଡାରି ପିଲାଟା , ପୁଣି ପର ଘରର ବିଧବା ବ୍ରାହ୍ମଣୀ ଦାସୀଟା କିପରି ବ୍ରାହ୍ମଣ ପରିବାର ସହିତ ମିଶି ସେମାନଙ୍କ ପିତୃ ଲୋକଙ୍କୁ ଆଲୁଅ ଦେଖାଇବ ? ପାଚକ ବ୍ରାହ୍ମଣ ପିଲାକୁ ମାତ୍ର ମିଶାଇବାକୁ ହେଲା, ଭଣ୍ଡାରି ପିଲା ଏବଂ ବ୍ରାହ୍ମଣୀ ଗୃହକରାଣୀକି ଏହି ଦୀପଦାନରୁ ବଞ୍ଚିତ ହେବାକୁ ହେଲା । ବ୍ରାହ୍ମଣର ପିତୃଲୋକଙ୍କୁ ଶୂଦ୍ରଲୋକ ଆଲୋକ ଦେଖାଇ ପାରିବେ ନାହିଁ । ଶୂଦ୍ର ଲୋକ ଦୀପ ଦେଖାଇଲେ ପିତୃଲୋକେ ଅପବିତ୍ର ହୋଇ ପତିତ ହୋଇ ଯିବେ । ପିତୃଲୋକେ ଜୀବିତଥିବା ଯାଏ ଶୂଦ୍ର ରାନ୍ଧିଦେଇ ଥିବା ଅନ୍ନ ସ୍ପର୍ଶରେ ପତିତ ହୋଇଥିଲେ କିନ୍ତୁ ଇତର ଲୋକେ ଆଲୁଅ ଦେଖାଇଲେ ଚଳୁଥିଲା । ମାତ୍ର ଯେତେ-ବେଳେ ବିଯୋଗ ପ୍ରାପ୍ତ ହୋଇ ପିତୃଲୋକେ ମୃତଲୋକରେ ମିଶିଗଲେ ସେତେ-ବେଳେ ସେମାନେ ଶୂଦ୍ର ଲୋକର ଆଲୋକ ଦେଖିଲେ ମଧ୍ୟ ଜାତିଭ୍ରଷ୍ଟ ବା ପତିତ ହୋଇ ଯାଆନ୍ତି । ପିତୃଲୋକ ମାନେ ସଂସାରରୁ ଗଲେ ମଧ୍ୟ ତାହାଁର ବିଧି ନିଷେଧରୁ ମୁକ୍ତ ନୁହନ୍ତି । ହିନ୍ଦୁ ଧର୍ମର କିଦ୍ଭୁତ ବ୍ୟବସ୍ଥା, କି ଧରା ବନ୍ଧା ନିୟମ ! ପିତୃଲୋକ ମାନେ ରକ୍ତ ମାଂସ ଶରୀରରୁ ବିମୁକ୍ତ ହେଲେହେଁ ଅନ୍ନବସ୍ତ୍ର ଆଲୁଅ ଅନ୍ଧାର ଇତ୍ୟାଦି ନିୟମରେ ଚିରକାଳ ଆବଦ୍ଧ ।

ପାଚକ ବ୍ରାହ୍ମଣ ପିଲାର ପୃଥକ ଘର ନଥିଲେ ମଧ୍ୟ ତାହାର ଅବଶ୍ୟ ପିତୃଲୋକ ଅଛନ୍ତି । ସେ ଯଦି ପରଘରେ ରହି ପର ପିତୃଙ୍କୁ ଦୀପ ଦେଖାଇବ ତେବେ ତାହାର ପିତୃ ଲୋକେ ଆଲୁଅ ନପାଇ ଅନ୍ଧାରରେ ଅଣ୍ଡାଳି ହେଉ-ଥିବେ । ଏହି ଶଂକାରେ ପୂଜାହାର ପିଲାଟିର ବଡଭାଇ ବେଳକାଳ ଜାଣି ଘରୁ ତାକୁ ନେଇଯାଇଥିଲା । ତାହାର ବଡଭାଇ ଏକ ଜାଗାରେ ହୋଟେଲ ସ୍ଥାପନକରି ଚଳ-ଉଥାଏ । ଦୁଇଭାଇ ଏକତ୍ର ହୋଇ ଗୋଟିଏ ଦେଉଳ ବେଢ଼ା ଭିତରକୁ ଯାଇ ଯୋଡିଏ ବାଉଁଶ ଜାଳି ଆପଣା ପିତୃଲୋକ ମାନଙ୍କୁ ଦୀପ ଦେଖାଇ ଦେଇ ଆସିଲେ ।

ଏହିପରି ଆଜି ହିନ୍ଦୁ ଲୋକମାନେ ଯେଉଁ ପିତୃଲୋକଙ୍କୁ ଦୀପ ଦେଖାନ୍ତି । ପିତୃଲୋକେ ଯେପରି ବର୍ଷରେ ଥରେ ପେଟ ପୁରା ପିଣ୍ଡଖାଇ ପରିତୃପ୍ତ ହୁଅନ୍ତି, ସେହିପରି ବର୍ଷକେ ଥରେ ଆଜି ଆଲୁଅ ଦେଖିବାକୁ ଗୃହିଁଥାନ୍ତି । ମନୁଷ୍ୟ-ମାନଙ୍କ ପାଇଁ ନିତ୍ୟକର୍ମ ଓ ନିତ୍ୟ ଖାଦ୍ୟ ଭୋଗ୍ୟ ପଦାର୍ଥର ବିଧାନ ଅଛି, ପିତୃ ଲୋକ ଓ ଦେବଲୋକଙ୍କ ପାଇଁ କେବଳ ଏହିସବୁ ନୈମିତ୍ତିକ କାଣ୍ଡର ଭିଆଣ ହୋଇଅଛି । ଯେଉଁମାନେ ପ୍ରକୃତ ପିତୃଲୋକ ଏବଂ ଦେବଲୋକ ପୁଣି ଶରୀର ଧାରଣ ପୂର୍ବକ ଜଗତରେ ବିହାର କରନ୍ତି ସେମାନଙ୍କର ଗୌରବ ଓ ସେବାଶୁଶ୍ରୂଷା

ଜଣାଯାଏ ନାହିଁ । କିନ୍ତୁ ଯେଉଁ ପିତୃଲୋକ ଓ ଦେବ ଲୋକ ଅଜ୍ଞାତକୁଳ ଶୀଳ ଓ ବଳ୍ପିତ ମସ୍ତିଷ୍କର ଭ୍ରାନ୍ତ ଧାରଣା ମାତ୍ର ସେହି ମାନଙ୍କର କେବଳ ପୂଜା ଆରାଧନା ଇତ୍ୟାଦି କରାଯାଏ । ବର୍ଷଯାକ ଦାଣ୍ଡଦ୍ୱାର ଅନ୍ଧାର ପଡିଥିବ; ଲୋକେ ଅନ୍ଧାରରେ ଅନ୍ଧାଳି ହୋଇ ଝୁଣ୍ଟି ହାବୁଡ ପଡୁଥିବେ; ଭଦ୍ରଲୋକ, ବୃଦ୍ଧ ଲୋକ, ଯୋଗୀ, ବୈରାଗୀ, ସନ୍ୟାସୀ କେହି ଅତିଥି ମଧ୍ୟ ଆଲୁଅ ସଙ୍କାଶେ କିରାସିନ ତେଲ ଡିବ୍ବିଟିଏ ବା ବତୀ ଗୋଟିଏ ପାଇ ନଥିବେ; ଅଥଚ ଅମାବାସ୍ୟା ଦିନ ଆକାଶକୁ ଆଲୋକ ଦେଖା ଯାଉଥାଏ ।

କେବଳ ଆର୍ଯ୍ୟ ସମାଜରେ କାହିଁକି ସବ୍ବତ୍ର ଲୋକ ସମାଜରେ ସନ୍ଧ୍ୟା ଦୀପର ବ୍ୟବସ୍ଥା ଅଛି । ସନ୍ଧ୍ୟାବେଳେ ଘର ଭିତର କଥା ଛାଡ଼ ଦାଣ୍ଡଦ୍ୱାରେ ଏବଂ ବାରଦ୍ୱାର ମୁହଁରେ ସନ୍ଧ୍ୟାଦୀପ ଜାଳିବା ବ୍ୟବସ୍ଥା ଅଛି । ପ୍ରତ୍ୟେକ ଗୃହିଣୀ ପ୍ରତ୍ୟହ ସନ୍ଧ୍ୟା ଦୀପ ଜାଳି ଜ୍ୟୋତିର ଆରାଧନା କରନ୍ତି । ପ୍ରତ୍ୟେକ ଗୃହରେ ଏହି ଦୀପଦାନ ଦ୍ୱାରା ରାଜ ମାର୍ଗରେ ଯାତାୟାତ କରିବା ବନ୍ଧୁ ଲୋକଙ୍କର ପୂର୍ଣ ସ୍ୱାଚ୍ଛନ୍ଦ୍ୟ ଜାତହୁଏ । ଆମ୍ଭଦେଶରେ ପୂର୍ବ କାଳରେ ଆଜ କାଲିର ଇଲେକ୍ଟ୍ରିକ୍ ବା ମ୍ୟୁନିସିପାଲିଟିର ବିଧାନ ନଥିଲା । ଏଥିର ମଧ୍ୟ ପ୍ରୟୋଜନ ନଥିଲା । ପ୍ରତ୍ୟେକ ଗୃହସ୍ଥ ଯେଉଁଦାଣ୍ଡ ଦ୍ୱାର ମୁହଁରେ ଗୋଟିଏଲେଖେଁ ଦୀପଜାଳି ଦିଅନ୍ତି । ଏହିଦୀପାବଳୀରେ ଦାଣ୍ଡମୁହଁ, ଗଳି ବାଟ ଘାଟ ସବୁ ସୁନ୍ଦର ଆଲୋକିତ ହୁଏ । କିନ୍ତୁ ଆଜି ଅନେକ ଗୃହସ୍ଥ ଏହି ନିୟମ ଆଉ ପାଳନ କରନ୍ତି ନାହିଁ । ଆମ୍ଭ ସ୍ତ୍ରୀଲୋକଙ୍କର ରକ୍ଷଣଶୀଳତା ହେତୁ ଯଦି ଏହି ନିୟମ ସ୍ଥାନେ ସ୍ଥାନେ ପାଳିତ ହୁଏ ତାହା ବି ଠିକ୍ ନୁହେଁ, ବରଂ ନହେବା ଶ୍ରେୟସ୍କର । ଘରେ କେହିଲୋକ, କେହି ବୁଢ଼ି ବା ପିଲାଟିଏ ଘରୁ ବତୀଟିଏ ଲଗାଇ ଆଣି ଦାଣ୍ଡ ପିଣ୍ଡା ଉପରେ ଥୋଇ ଦେଇ ଗୁଲିଯାଏ, ଏହି ବତୀଟା କ୍ଷଣକରେ ପୋଡି ଲିଭିଯାଏ । ଏହି ଆଲୋକ ବା ଦୀପ ଦାନରେ କାହାର କିଛି ଉପକାର ହୋଇପାରେ ନାହିଁ, କେବଳ ତେଲର ଦାଗଲାଗି ପିଣ୍ଡାଟା ଅନିର୍ମଳ ହୁଏ, ଏବଂ ଅସୁନ୍ଦର ଦେଖାଯାଏ । ଅମାବାସ୍ୟା ରାତିରେ ମଝି ଅଗଣାରେ ଆକାଶକୁ ଆଲୋକ ଟିକିଏ ଦେଖାଇଦେବା ଯେପରି ନିରର୍ଥକ, ସନ୍ଧ୍ୟାବେଳେ ଦାଣ୍ଡପିଣ୍ଡା ଉପରେ ବତୀଟିଏ ଜାଳି ଥୋଇ ଦେବା ସେହିପରି ମୂଲ୍ୟହୀନ ଅନ୍ଧ ବ୍ୟବସ୍ଥା । ଯେ କୌଣସି ବ୍ୟବସ୍ଥା ହେଉ, ନୀତିହେଉ, ଆଚାରହେଉ, ତାହାର ମୂଳ ଉଦ୍ଦେଶ୍ୟ ନବୁଝି ତାହାକୁ ଅବଗ୍ରହ ପୂର୍ବକ ଅନ୍ଧରୂପେ ପାଳନ କଲେ ତାହାର ପରିଣାମ ଫଳ ଭଲହୁଏ ନାହିଁ, ହୁଏତ ଅନେକ ସମୟରେ ଠିକ ବିପରୀତ ହୁଏ । ହିନ୍ଦୁ ଧର୍ମରେ ଉଚ୍ଚତମ ଜାତି ବ୍ରାହ୍ମଣ । ଏହି ବ୍ରାହ୍ମଣ

ମାନଙ୍କ ବସତିକି ଶାସନ କୁହାଯାଏ । ସେଦିନ ସନ୍ଧ୍ୟା ସମୟରେ ଆମ୍ଭେମାନେ ଏକ ଶାସନକୁ ଯାଇଥିଲୁଁ । ଶାସନ ଦାଣ୍ଡଟା କୁହୁଁପରି ଅନ୍ଧାର, ଘୋର ଅନ୍ଧକାର, ହାତରେ ପୋଛି ନେଲେ ମେଞ୍ଚା ମେଞ୍ଚା ଅନ୍ଧାର ଗୁଡ଼ାକ ଆସିବ । ଦେଢ଼ଶ ଦୁଇଶ ଘର ବ୍ରାହ୍ମଣ ଅଛନ୍ତି, କାହାର ଦ୍ୱାରରେ ଗୋଟିଏ ହେଲେ ଦୀପନାହିଁ । ଶାସନ ଦାଣ୍ଡରେ ଧାଡ଼ି ଧାଡ଼ି ନଡ଼ିଆଗଛ । ବିଦେଶାଗତ ଆଗନ୍ତୁକ ବ୍ୟକ୍ତି କଥା ଛାଡ଼ ଶାସନ-ବାସୀ ଲୋକ ମଧ୍ୟ ଏତେବେଳେ ଏହି ଦାଣ୍ଡରେ ଟିକିଏ ଅସତର୍କ ଭାବରେ ଚାଲି-ଗଲେ ନିଶ୍ଚୟ ଝୁଣ୍ଟି ହାବୁଡ଼ି ପଡ଼ିବ, ଗଣେଶ ଆଗରେ ନଡ଼ିଆ ଭାଙ୍ଗିଲାପରି ଅନ୍ଧାର ବୁଢ଼ି ଆଗରେ ନଡ଼ିଆଗଛରେ ମୁଣ୍ଡ ବାଡ଼େଇ ଦେବ, ଅଥଚ ଏହି ବ୍ରାହ୍ମଣମାନେ ଇତର ଘରେ ଦୀପଦାନ ଶ୍ରାଦ୍ଧର ବ୍ୟବସ୍ଥା ଦିଅନ୍ତି ।

—○—

## ବ୍ରାହ୍ମଣ ଉପାଧି ।

ଗହ୍ମାପୁଣ୍ୟ ବ୍ରାହ୍ମଣ—ଶ୍ରାବଣ ପୂର୍ଣ୍ଣିମାକୁ ଲୋକେ ଗହ୍ମାପୂର୍ଣ୍ଣମୀ କହନ୍ତି । ବ୍ରାହ୍ମଣେତର ଜାତିମାନେ—ନିମ୍ନଶ୍ରେଣୀର ଅନେକ ଲୋକ ଆଜି ବ୍ରାହ୍ମଣ ପାଲଟି ଯାଆନ୍ତି । କାରଣ, ଏମାନେ ଆଜି ପଇତାଟେ ଲେଖେ ପକାନ୍ତି । ଆଜିକାଲି ବ୍ରାହ୍ମଣମାନେ ପଇତାଟାକୁ ବ୍ରାହ୍ମଣତ୍ୱର ମୂଳ ସମ୍ବଳ କରିଛନ୍ତି । ଅନେକ ବ୍ରାହ୍ମଣ ପ୍ରାୟ ସମସ୍ତେ କେବଳ ଯଜ୍ଞୋପବୀତ ନାମରେ କାନ୍ଧରେ ସୁତା ଗୋଟିଏ ପକାଇଥାନ୍ତି । ପୋଲିସ ଅତ୍ୟାଚାର କରୁଥିଲେ ଆପଣାର ପଗଡ଼ି ଦେଖି ଯେରୂପ ଶାନ୍ତିରକ୍ଷକ କନେଷ୍ଟବଳ ବା ଚୌକିଦାର ବୋଲି ଆପଣାର ପରିଚୟ ଦିଏ ସେହିରୂପ ପଇତା ମାତ୍ର ଧାରଣ କରି ଅନେକ ଲୋକ 'ବ୍ରାହ୍ମଣ ବୋଲାଉଛନ୍ତି ।' ଏହି ହିସାବରେ ଆଜି ଦିନର ବ୍ରାହ୍ମଣମାନେ ଗହ୍ମାପୁଣ୍ୟ ବ୍ରାହ୍ମଣ ବୋଲି ଗୃହୀତ ହେବା ଉଚିତ । ଓହୋ, ବ୍ରାହ୍ମଣ ଜାତିର କି ଅଧଃପତନ ! ଏମାନେ ପ୍ରଥମେ ଥିଲେ ବ୍ରାହ୍ମଣ, ବେଦପନ୍ଥା ଅବଲମ୍ବନ କରିଥିବାରୁ ଏମାନେ ହେଲେ ବୈଦିକ ବ୍ରାହ୍ମଣ । ସ୍ମୃତିଲିଖନ ପରେ ସ୍ମାର୍ତ୍ତନାମର ସୃଷ୍ଟି ହେଲା । ତା'ପରେ ତନ୍ତ୍ର ଯନ୍ତ୍ର କାଣ୍ଡର ଉଦ୍ଭାବନ ହେଲାରୁ ଶାକ୍ତ ବ୍ରାହ୍ମଣ ବାହାରିଲେ । ଶାକ୍ତମାନଙ୍କ ଗୁପ୍ତ ଅତ୍ୟାଚାରରେ ଯେତେବେଳେ ସମାଜରେ ବିରକ୍ତି ଜନ୍ମିଲା ସେତେବେଳେ ପରମାର୍ଥ ବ୍ରାହ୍ମଣ ଶ୍ରେଣୀର ସୃଷ୍ଟି ହେଲା । ସାରୁ ଆଳୁ ଇତ୍ୟାଦି ପଣ୍ୟ ପରିବାର କୃଷି କରିବାରୁ କେହି ସାରୁଆ ଶ୍ରେଣୀ ଭୁକ୍ତ ହେଲେ, କେହି କେହି ବଳରାମଙ୍କୁ ଆଦର୍ଶ କରି ହଳମୂଷଳ ଧରି କୃଷି କର୍ମ କରି ଧାନ୍ୟାଦି ଶସ୍ୟ ଉତ୍ପନ୍ନ କଲେ ଏବଂ ବଳରାମ ଗୋତ୍ରୀ ବା ହଳିଆ ବ୍ରାହ୍ମଣ ବୋଲାଇଲେ,

କେହି ପ୍ରତିମା ପୂଜାକରି ପୂଜାରୀ ବ୍ରାହ୍ମଣ ହେଲେ ପୁଣି କେହି ରନ୍ଧନ ବ୍ୟବସାୟୀ କରି ପାଚକ ବ୍ରାହ୍ମଣ ବୋଲାଇଲେ । ଏହିପରି ବିବିଧ ଶ୍ରେଣୀର ବ୍ରାହ୍ମଣ ସୃଷ୍ଟି ହେଲା। ଏହି ସଂସ୍କାର ଯୁଗରେ ମଧ୍ୟ ବିବିଧ ନାମରେ ବ୍ରାହ୍ମଣ ଗଢ଼ା ଲାଗିଅଛି । ଦକ୍ଷିଣାଞ୍ଚଳରେ ସ୍ୱର୍ଣ୍ଣକାର ବା ସୁନାରୀମାନେ ଅପଣାକୁ ବିଶ୍ୱ ବ୍ରାହ୍ମଣ ବୋଲନ୍ତି । ତେଲୁଗୁ ଭାଷା ଭାଷୀ ତାଲଙ୍ଗୀ ନାମରେ ଏକ ଜାତି ଅଛି । ଏହି ଜାତିର ଲୋକେ ଶଗଡ଼ ବାହିବା ବୃତ୍ତି କରିଥାନ୍ତି ଏବଂ କୃଷି ମଧ୍ୟ କରନ୍ତି । ଏମାନେ ତାଲଙ୍ଗୀ ବ୍ରାହ୍ମଣ ବୋଲାନ୍ତି । ସେହିପରି ଆଜିଦିନର ଉପବୀତ ଧାରଣର ପ୍ରଥା ଅନୁସାରେ ଅନେକ ଗଣ୍ଡା ପୁଣ୍ୟ ବ୍ରାହ୍ମଣ ହେବେ । ବ୍ରାହ୍ମଣ ଜାତିର ଅଧୋଗତି ଏହିପରି ଚାଲିଛି ।

ବ୍ରାହ୍ମଣର ବ୍ରାହ୍ମଣତ୍ୱ ଯେତେବେଳେ ଜନ୍ମରୁ ହୁଏ ଏବଂ ଟିକା ପଇତାରେ ହୁଏ ତେବେ ଏହିପରି ଅନେକ ନୂତନ ବ୍ରାହ୍ମଣ ବାହାରିବାରେ ଆଶ୍ଚର୍ଯ୍ୟ କ'ଣ ? ତାଲଙ୍ଗୀ, କେଳା, କଣ୍ଡରା ଇତ୍ୟାଦି ଲୋକେ ବ୍ରାହ୍ମଣ ହେବେ ପୁଣି ଅନେକ ବେଶ୍ୟା ପୁତ୍ର ମଧ୍ୟ କୌଣସି ତପସ୍ୟା ନକରି ବଶିଷ୍ଠ ହୋଇ ପଡ଼ିବେ । ଧନ୍ୟରେ ବ୍ରାହ୍ମଣ ଜାତି !

—o—

# ବ୍ରାହ୍ମଣଜାତି ଜନ୍ମ ଗତପରା ?

ସେଦିନ ଶିକ୍ଷା ବିଭାଗର ଜଣେ ସବ୍‌ଆସିଷ୍ଟାଣ୍ଟ ଇନ୍‌ସ୍‌ପେକ୍ଟର କହୁଥିଲେ— ମୋ ରେଞ୍ଜରେ ବହୁସଂଖ୍ୟକ ବ୍ରାହ୍ମଣ ଶିକ୍ଷକ ଅଛନ୍ତି । ଏମାନଙ୍କ ମଧ୍ୟରୁ ବହୁସଂଖ୍ୟକ ଶିକ୍ଷକ ଦୁଷ୍ଟ, ଦୁଶ୍ଚରିତ୍ର, ମିଥ୍ୟାବାଦୀ, ଦୁରଭିମାନୀ ଏବଂ କର୍ତ୍ତବ୍ୟ ଜ୍ଞାନ ରହିତ । ଜଣେ ଶୁଦ୍ର ଶିକ୍ଷକ ଅଛନ୍ତି, ସେହି କେବଳ ଜଣେ ଆଦର୍ଶ ଶିକ୍ଷକ । ଏହି ଶିକ୍ଷକ ଅତ୍ୟନ୍ତ ଅଧ୍ୟୟନଶୀଳ, ବଙ୍ଗଳା, ଓଡ଼ିଆ ଓ ନାଗରଲିପି ଜାଣନ୍ତି, ଅନେକ ପୁସ୍ତକରୁ ନାନାବିଧ ଜ୍ଞାତବ୍ୟ ବିଷୟ ସଂଗ୍ରହ କରି ପିଲାମାନଙ୍କୁ ଶିକ୍ଷାଦିଅନ୍ତି । ଏହାଙ୍କର ଶିକ୍ଷାଦାନ ପ୍ରଣାଳୀ ଅତ୍ୟନ୍ତ ସନ୍ତୋଷଜନକ । ସହକାରୀ ବ୍ରାହ୍ମଣ ଶିକ୍ଷକ ମାନଙ୍କର ଶିକ୍ଷାଦାନରେ ପରିତୃପ୍ତ ନହୋଇ ଏହି ଶିକ୍ଷକ ମହାଶୟ ଅତିରିକ୍ତ ପରିଶ୍ରମ କରି ଶିଶୁ ଶ୍ରେଣୀଠାରୁ ପିଲାମାନଙ୍କୁ ନିଜେ ଶିଖାନ୍ତି । ଏହାଙ୍କର ଛାତ୍ରମାନେ ଅନ୍ୟାନ୍ୟ ସ୍କୁଲ ଛାତ୍ରଠାରୁ ଭଲ ପଢ଼ାଶୁଣା କରି ପାରୁଛନ୍ତି । ଏହି ଚରିତ୍ରବାନ ବିନୟ ସମ୍ପନ୍ନ ବୁଦ୍ଧିଶାଳୀ ସତ୍ ଶିକ୍ଷକ ଅକର୍ମ୍ମକ ଘଟଣା-ଜନ୍ମଦୋଷରୁ ଶୂଦ୍ର, ଅସ୍ପୃଶ୍ୟ, ଅଗ୍ରାହ୍ୟ ପୁଣି ସେହି ଜନ୍ମଗୁଣରୁ ଧୂର୍ତ୍ତ ଦୁର୍ଜ୍ଜନ ଦୁଶ୍ଚରିତ୍ର ଲୋକ ଶିଷ୍ଟ ଓ ଶ୍ରେଷ୍ଠ ବ୍ରାହ୍ମଣ ବୋଲି ସ୍ୱୀକୃତ ହୁଏ । ଧନ୍ୟ ସମାଜ, ଧନ୍ୟ ତୋ ଅଚାର, ଧନ୍ୟ ତୋ ବିଚାର !

—o—

# ଆର୍ଯ୍ୟଧର୍ମ

ଆର୍ଯ୍ୟଧର୍ମ ଜଗତର ପ୍ରାଚୀନ ମୂଳଧର୍ମ । ଭାରତ ମହାଦେଶରେ ଏହି ଧର୍ମର ପ୍ରାଦୁର୍ଭାବ । ଜଗତର ସୃଷ୍ଟି ପ୍ରାରମ୍ଭରେ ଈଶ୍ୱର ଏହି ଧର୍ମର ସାକ୍ଷାତ ଶିକ୍ଷା ଦେଇଥିଲେ । ଯେଉଁ ବେଦ ଈଶ୍ୱରବାଣୀ ଅଟେ, ଅର୍ଥାତ୍ ପରମ ଧାର୍ମିକ ମହାତ୍ମା ମାନଙ୍କର ସ୍ୱାନୁଭୂତ, ସେହି ବେଦ ଏହି ଧର୍ମର ମୂଳଗ୍ରନ୍ଥ । ବେଦ ଚତୁଷ୍ଟୟ-ମୂଳଭିତ୍ତି ଉପରେ ଆର୍ଯ୍ୟଧର୍ମ ସୌଧ ସୁପ୍ରତିଷ୍ଠିତ । ଆର୍ଯ୍ୟ ମହର୍ଷିମାନେ ବେଦ ଉପରେ ଏକାନ୍ତ ନିର୍ଭର କରୁଥିଲେ ଏବଂ ବିବିଧ ଶାସ୍ତ୍ର ପ୍ରଣୟନ କରି ବେଦର ବ୍ୟାଖ୍ୟା କରିଥିଲେ, ବେଦର ଅର୍ଥ ଏବଂ ଅଭିପ୍ରାୟ ପ୍ରକାଶ କରିଥିଲେ । ଯେ ପର୍ଯ୍ୟନ୍ତ ଭାରତ ମହାଦେଶରେ ବେଦୋକ୍ତ ଧର୍ମ ପ୍ରଚଳିତ ଥିଲା, ଭାରତବାସୀ ଆର୍ଯ୍ୟମାନେ ବେଦବାଣୀରେ ଅନୁପ୍ରାଣିତ ହେଉଥିଲେ, ଆପଣାର ଗୀତ, ନୀତି, ଶିକ୍ଷା, ଭାଷା, ଆଚାର, ବିଚାର ପ୍ରଭୃତିରେ ବେଦ ବିହିତ ଧର୍ମର ତିଳେମାତ୍ର ବ୍ୟତିକ୍ରମ କରୁ ନଥିଲେ; ଆର୍ଯ୍ୟ ଋଷିମାନେ ବେଦର ପ୍ରବର୍ତ୍ତକ ଏବଂ ପ୍ରଚାରକ ଥିଲେ, ସର୍ବତ୍ର ଗୃହିମଠ ବେଦର ଅଧ୍ୟୟନ ଅଧ୍ୟାପନ ଚଳୁଥିଲା ଏବଂ ବେଦ ବର୍ଣ୍ଣିତ ବିଧାନାନୁସାରେ ସକଳ କର୍ମ କରାଯାଉଥିଲା, ସେ ପର୍ଯ୍ୟନ୍ତ ଭାରତ ମହାଦେଶ ଜଗତରେ ଆଦର୍ଶ ଥିଲା । ବଳ, ବୀର୍ଯ୍ୟ, ଜ୍ଞାନ, ବିଜ୍ଞାନ, ଧନ, ଜନ, ଧର୍ମ, କର୍ମ ଇତ୍ୟାଦି ଐଶ୍ୱର୍ଯ୍ୟ ଯୋଗୁ ଆର୍ଯ୍ୟ ଜାତି ଜଗତରେ ପୂଜ୍ୟ ଥିଲେ । ଜଗତର ଅନ୍ୟ ସକଳ ଦେଶ, ଅନ୍ୟ ସମସ୍ତ ଜାତି ଭାରତୀୟ ଆର୍ଯ୍ୟ ଗୌରବ ପଦତଳେ ନତମସ୍ତକ ଥିଲେ । ଆଧ୍ୟାତ୍ମିକଜ୍ଞାନ, ବୈଷୟିକବିଜ୍ଞାନ, ଅର୍ଥନୀତି, ବାଣିଜ୍ୟ କୌଶଳ, ସାମରିକ ପରାକ୍ରମ ଇତ୍ୟାଦି ବିଷୟରେ ଆର୍ଯ୍ୟଜାତି ଜଗତର ଗୁରୁ ଥିଲେ, ଆଦର୍ଶ ପଥ ପ୍ରଦର୍ଶକ ଏବଂ ନିୟାମକ ଓ ପରିପାଳକ ଥିଲେ । ଆଧୁନିକ ଇଉରୋପ, ଆମେରିକା, ଆଫ୍ରିକା ଇତ୍ୟାଦି ଦେଶକଥା ଛାଡ଼, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନରେ ବୈଦିକ ଧର୍ମର ଆଦର ଏବଂ ଆଧିପତ୍ୟ ଥିଲା । ବେଦ ବିରୋଧୀ ପ୍ରବଳ ପ୍ରତାପୀ ରାକ୍ଷସାଧୀଶ୍ୱରମାନେ ମଧ୍ୟ ଆର୍ଯ୍ୟଧର୍ମର କିଛି କ୍ଷତି କରିପାରି ନଥିଲେ । କିନ୍ତୁ କାଳର କୁଟିଳ ଗତିବଶେ ଯେଉଁ ଦିନଠାରୁ ବେଦାଧ୍ୟୟନ ଅଧ୍ୟାପନ ରହିତ ହେଲା, ପୁରାଣର କଳ୍ପନା କରାଗଲା, ବେଦ ବିହିତ କର୍ମର ଅନୁଷ୍ଠାନ କରାଗଲା ନାହିଁ, ବେଦ ମନ୍ତ୍ର ଉପେକ୍ଷିତ ହେଲା, ପୁରାଣତନ୍ତ୍ର ପ୍ରତିଷ୍ଠିତ ହେଲା, ସେହିଦିନଠାରୁ ଆର୍ଯ୍ୟଧର୍ମର ଅଧଃପତନର ସୂତ୍ରପାତ ହେଲା ଏବଂ ହିନ୍ଦୁ ବା ଅନାର୍ଯ୍ୟ ଧର୍ମ ପ୍ରବର୍ତ୍ତିତ ହେଲା । ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସର୍ବ-ଅନ୍ତର୍ଯ୍ୟାମୀ, ଅନାଦି, ଅନନ୍ତ, ସଚ୍ଚିଦାନନ୍ଦ, ପରବ୍ରହ୍ମ, ପରାତ୍ପର ପରମେଶ୍ୱରଙ୍କୁ ଛାଡ଼ି କାଷ୍ଠ ପାଷାଣାଦି ପିତୁଳାର ପ୍ରତିଷ୍ଠା ହେଲା, ପ୍ରତିଭା ପରିବର୍ତ୍ତେ ପ୍ରତିମାର

ଅବଧନା କରାଗଲା, ବର୍ଣ୍ଣାଶ୍ରମ ଧର୍ମ ଲୁପ୍ତ ହେଲା, ଗୁଣକର୍ମ ଓ ସ୍ୱଭାବଗତ ଜାତି-ଚତୁଷ୍ଟୟ ଉପେକ୍ଷିତହେଲା, ଏବଂ ଜନ୍ମ ବା ବଂଶଗତ ଅସଂଖ୍ୟ ଜାତିର ସୃଷ୍ଟି-ହେଲା, ଶୂଦ୍ରବର୍ଣ୍ଣରୁ ଏବେ ଶୂଦ୍ରହଜାର ପର୍ଯ୍ୟନ୍ତଜାତି ହେଲାଣି, ବ୍ରାହ୍ମଣ, ବାଉରି, କେଳା, କଣ୍ଡରା, ମହାନ୍ତ ଇତ୍ୟାଦ । ହିନ୍ଦୁମଧ୍ୟରୁ ପ୍ରାୟ ଚତୁର୍ଥାଂଶ ଜାତି ଅନ୍ତ୍ୟଜ ଅସ୍ପୃଶ୍ୟଜାତି ଅଟନ୍ତି । ବିରାଡ଼ି, କୁକୁରକୁ ମଧ୍ୟ ଛୁଇଁବାକୁହେଲା, ସଙ୍ଗେ ଖୁଆଇବାକୁ ହେଲା, ଅଥଚ ଜନ୍ମ ଦୋଷରୁ ଅସଂଖ୍ୟ ମନୁଷ୍ୟ ଅସ୍ପୃଶ୍ୟ ବୋଲି ଉପେକ୍ଷିତ ହେଲେ । ଆର୍ଯ୍ୟ ସମାଜରେ ନାରୀ ଜାତିର ବିଶେଷ ପୂଜାଥିଲା । ଦେବତା ମାନେ ନାରୀଜାତିର ପୂଜାରେ ସନ୍ତୁଷ୍ଟ ହେଉଥିଲେ । ସ୍ତ୍ରୀମାନେ ଅଧ୍ୟାପିକା ଥିଲେ, ବେଦାଦ ଶାସ୍ତ୍ର ଅଧ୍ୟୟନକରି ସତ୍ୟଧର୍ମ ପ୍ରଚାର କରୁଥିଲେ, ସହଧର୍ମିଣୀ ରୂପେ ପୁରୁଷର ପରମ ପୂଜ୍ୟା ଦେବୀଥିଲେ । କିନ୍ତୁ ଆଜ ହିନ୍ଦୁ ସମାଜରେ ସ୍ତ୍ରୀପ୍ରତି ବେଦାଧ୍ୟୟନ ନିଷେଧ, ଈଶ୍ୱରୋପାସନା ନିଷେଧ । ଏମାନେ ଆଜ ପାକଶାଳାର ମୂକ ଜନ୍ତୁ ବିଶେଷ ନତୁବା ପାଶବିକ ପ୍ରବୃତ୍ତିର ବିଳାସ ସାମଗ୍ରୀ । ଯେଉଁଲୋକ ଆପଣାର ସ୍ତ୍ରୀମାନଙ୍କୁ ଯେତେଦୂର ମୂର୍ଖା ମୁଗ୍ଧା ଅସୂର୍ଯ୍ୟମ୍ପଶ୍ୟା ରୂପାକରି ଗୃହକୋଣେ ବା ଅନ୍ତଃପୁରରେ ଆବଦ୍ଧକରିଖି ପାରିଲା, ସେହିଲୋକ ସେତେ ଅଧିକ ସମ୍ଭ୍ରାନ୍ତବୋଲି ସମାଜରେ ପରିଗଣିତହେଲା । ଯେଉଁ ବେଦାଧ୍ୟୟନ ଓ ବେଦବିହିତ ସତ୍ୟ ଧର୍ମାଚରଣ ଯୋଗୁଁ ଲୋକେ ବ୍ରାହ୍ମଣ ହେଉଥିଲେ, ଲୋକ ସାଧାରଣଙ୍କୁ ସେହି ବେଦପାଠ ଓ ଧର୍ମାନୁଷ୍ଠାନ ଅଧିକାର ଦିଆଗଲା ନାହିଁ । କୁକୁର ଘାସଗଦା ଜଗିଲାପରି ବ୍ରାହ୍ମଣ ମାନଙ୍କର ଅଯୋଗ୍ୟ ବଂଶଧର ମାନେ ବେଦକୁ ପୋଥିରେ ବାନ୍ଧି ଘରେ ରଖିଲେ । ବେଦ ପାଠରୁ ବଞ୍ଚିତ ହେବାରୁ ଲୋକେ ମୂଢ଼ରୁ ମୂଢ଼ତର ହେଲେ ଏବଂ ବର୍ତ୍ତମାନ ମହାମୂଢ଼ ହୋଇ ପଡ଼ିଛନ୍ତି । ଆଶ୍ରମଧର୍ମ ରହିତ ହେଲା, ବାନପ୍ରସ୍ଥ ଓ ସନ୍ୟାସ କରିବା ଦୂରେ ଥାଉ କେହିହେଲେ ରୀତିମତ ବ୍ରହ୍ମଚର୍ଯ୍ୟ ପାଳନ କଲେନାହିଁ । ଯେଉଁ ବ୍ରାହ୍ମଣମାନେ ଉଚ୍ଚଜାତି ଓ ଆଦର୍ଶ ଥିଲେ, ସେମାନେ ବାଳକ ବାଳିକା ମାନଙ୍କୁ ୧୨ବର୍ଷ ୮ ବର୍ଷ ବୟସରୁ ବିବାହ କରିଦେଲେ । ଏମାନେ ବାଲ୍ୟ ବୟସରୁ ବିଳାସରେ ମାତି ରୁଗ୍ନ, ବଳହୀନ ଏବଂ ଅଳ୍ପାୟୁ ହେଲେ । ଦ୍ୱିଜ ଜାତିରେ ବାଳ ବିଧବା ସଂଖ୍ୟା ଦିନକୁ ଦିନ ବଢ଼ିଲା । ପୁରୁଷମାନେ ବାରମ୍ବାର ବିବାହ କଲେ, ଏମନ୍ତ କି ୬୦ ବର୍ଷର ବୃଦ୍ଧ ବି ୧୦ ବର୍ଷର ବାଳିକାକୁ ବିବାହ ହେଲା । ବେଶ୍ୟାଗମନର ପ୍ରଚଳନ ବଢ଼ିଗଲା, ବିଧବାର ନିୟୋଗ ନିଷେଧ କରାଗଲା । ସମାଜରେ ବ୍ୟଭିଚାର ବଢ଼ି ବର୍ଣ୍ଣ ସାଙ୍କର୍ଯ୍ୟ ସଂକ୍ରମିତ ହେଲା । ଲୋକମାନେ ଯେଉଁ ବୃତ୍ତିରୁ ବଞ୍ଚିତ ହେଲେ । ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ପ୍ରତିଗ୍ରହ-ବ୍ରାହ୍ମଣର

ଥିଲା ଏହି ଷଟ୍‌କର୍ମ । ପ୍ରଥମ ପାଞ୍ଚଟି କର୍ମ ପରିତ୍ୟକ୍ତ ହେଲା, ପ୍ରାୟ ସମସ୍ତେ ପ୍ରତିଗ୍ରହ ପରାୟଣ ହେଲେ , ପ୍ରାଣୀକି ଉପେକ୍ଷା କରି ପ୍ରେତର ମୁକ୍ତି ଚାହାଁଲେ । ଜୀବିତଙ୍କୁ ଅଶ୍ରଦ୍ଧା କରି ମୃତଙ୍କର ଶ୍ରାଦ୍ଧକଲେ,ନିତ୍ୟକର୍ମରେ ଆସ୍ଥା ନରଖି ନୈମିତ୍ତିକରେ ମାତିଲେ । ଜାତି ଭେଦଟା ଅନ୍ତର୍ଗତ ହେଲା । ବ୍ରାହ୍ମଣମାନେ ଶୂଦ୍ରୋଚିତ ପାଚକ ବୃତ୍ତି କଲେ, ପୁଣି ଅର୍ଥ ଆଶାରେ ଶ୍ୱ ବୃତ୍ତି ଅବଲମ୍ବନ କଲେ । ଦ୍ୱିଜମାନେ ନୀଚଙ୍କର ସେବାକଲେ, ଅର୍ଥାତ୍ ଶୂଦ୍ର ଲୋକର ଶାରୀରିକ ଚାକିରିରେ ଜୀବିକା ନିର୍ବାହ କଲେ । ଉଦ୍ଭିଦ ଫଳ ମୂଳାଦି ସାତ୍ତ୍ୱିକ ଆହାରରେ ତୃପ୍ତ ନହୋଇ ଲୋକେ ମତ୍ସ୍ୟ ମାଂସ ଭକ୍ଷଣ କଲେ । ଅସଂଖ୍ୟ କାଳ୍ପନିକ ଦେବ ଦେବୀର ସୃଷ୍ଟି ହେଲା । ସେମାନଙ୍କ ନାମରେ ପଶୁହତ୍ୟା, ନରବଳୀ ଇତ୍ୟାଦି ନୃଶଂସ ବ୍ୟାପାର ଅନୁଷ୍ଠିତ ହେଲା । ପାଣବିକତାର ପରିହାର ପରିବର୍ତ୍ତେ ପିଶିତ ପ୍ରଲୋଭନରେ ପଶୁହତ୍ୟାର ପ୍ରାରବ୍ଧ ହେଲା । ଦେଶାଟନ,ବିଦେଶ ଗମନ ନିଷେଧ କରାଗଲା, ନୌକାଯାତ୍ରା ରହିତ ହେଲା, ବାଣିଜ୍ୟ ବନ୍ଦହେଲା, ଜ୍ଞାନୋପାର୍ଜନ ଓ ବାଣିଜ୍ୟ ସକାଶେ ବିଲାତ ପ୍ରଭୃତି ବିଦେଶକୁ ଗଲେ ଜାତିଗଲା । ବିଲାତ ଫେରନ୍ତା ବ୍ୟକ୍ତିମାନେ ସାମାଜିକ ଅଧିକାରରୁ ବଞ୍ଚିତ ହେଲେ । ବିଦେଶୀୟ ଲୋକେ ଆସି ଭାରତରେ ବାଣିଜ୍ୟ କରି ଭାରତର ଧନରତ୍ନ ଶୋଷଣ କଲେ । ସ୍ୱୟମ୍ବର ବିବାହ ରହିତ ହେଲା । ବାଳିକ ବାଳିକା ବର କନ୍ୟା ରୂପରେ କିଣା ବିକା ହେଲେ । ଅନେକ ଗୃହସ୍ଥ ଘରଦ୍ୱାର ଜମୀ ବାଡ଼ି ବନ୍ଧା ଛନ୍ଦା କରି ବିକି ଭାଙ୍ଗି ଟଙ୍କା ଆଣି ବାଳକ ବର ଓ ବାଳିକା କନ୍ୟାଟିଏ କିଣି ନେବାକୁ ବାଧ୍ୟ ହେଲେ । ୧୦।୧୨ ବର୍ଷ ବୟସ ଭିତରେ କନ୍ୟାକୁ ବିବାହ ବରି ନପାରିଲେ ପିତାମାତା ଜାତିରୁ ପତିତ୍ ତିନିକୁଳନର୍କ ଗଲେ , ଇହ ପର ସବୁ ଧର୍ମ୍ମ ନଷ୍ଟହେଲା ।

ଏହିପରି ଯେତେବେଳେ ଶାସ୍ତ୍ରର, ବିଶ୍ୱର ଶିକ୍ଷାର ବିସ୍ତାର, ଧର୍ମର ପ୍ରଚାର ଇତ୍ୟାଦି କିଛି ରହିଲା ନାହିଁ ; ଅବିଚାର, ଅନାଚାର, ଦୁରାଚାର ଇତ୍ୟାଦି ପ୍ରବର୍ତ୍ତିଲା ; ସମାଜ କ୍ଷୀଣରୁ କ୍ଷୀଣତର ହେଲା, ଦୁର୍ବଳରୁ ଦୁର୍ବଳତର ହେଲା; ବ୍ରାହ୍ମଣମାନେ ଅବିଦ୍ୟା ଓ ଉଦ୍ଧାନ୍ତ ହେଲେ ; କ୍ଷତ୍ରିୟମାନେ ସ୍ୱୈଣ ଏବଂ ବିଳାସୀ ହେଲେ ; ବୈଶ୍ୟମାନେ ବାଣିଜ୍ୟ ବିରତ ଏବଂ ଶୂଦ୍ରମାନେ ଅକର୍ମଣ୍ୟ, ହେଲେ, ଅସ୍ପୃଶ୍ୟ ହେଲେ, ସେତେବେଳେ ବିଦେଶୀୟ ବିଜାତୀୟ ଅନାର୍ଯ୍ୟ ଲୋକେ ଆସି ଭାରତ ଆକ୍ରମଣ କରିବାକୁ ଲାଗିଲେ, ଦେବାଳୟମାନ ଭାଙ୍ଗିଦେଲେ, ପିତ୍ତଳ ଦେବତାମାନଙ୍କୁ ଫିଙ୍ଗିଦେଲେ, ଅବଳା ପ୍ରତି ଅତ୍ୟାଚାର କଲେ, ମାରିଲେ, ହାଣିଲେ; ମଦ୍ୟମାଂସ ଖୁଆଇଲେ, ଜାତି ନେଲେ ଏବଂ ଧର୍ମ ଭ୍ରଷ୍ଟକଲେ ।

ଆର୍ଯ୍ୟ ଧର୍ମର ସଚ୍ଚିଦାନନ୍ଦ ପରମାତ୍ମାଙ୍କୁ କିଏ ଗୋର କରି ନେଇଯିବ, କେଉଁ କଳାପାହାଡ କାହିଁକି ବା ଲୁହାର ବାଡ଼ ଭାଙ୍ଗନ୍ତା, କିପରି ବା ହଡ଼ା ଗୁଆନ୍ତା ? ଗାର୍ଗୀ, ମୈତ୍ରେୟୀଙ୍କୁ କିଏବା ମୂର୍ଖ । ମୁଗ୍ଧା କହି ପାରନ୍ତା ? ସୀତା, ସାବିତ୍ରୀ, ଦୁର୍ଗାବତୀଙ୍କୁ ପୁଣି କେଉଁ ପାଷଣ୍ଡ ବା ଧର୍ଷଣ କରି ପାରନ୍ତା ? ବଶିଷ୍ଠଙ୍କ ପୌରୋହିତ୍ୟରେ କେହି ସ୍ୱାର୍ଥପରତା ଆକ୍ଷେପଣ କରିପାରେ କି, କିମ୍ବା ହରିଶ୍ଚନ୍ଦ୍ରଙ୍କ ରାଜ୍ୟ କେହି ଅପହରଣ କରି ପାରେ କି ?

ଆର୍ଯ୍ୟଧର୍ମ ଲୋକର ନିତ୍ୟ ଶାଶ୍ୱତଧର୍ମ, ଏହାକୁ ଜଗତରେ କେହି କେବେହେଁ ନଷ୍ଟ କରି ନପାରେ । କଳିକାଳ କି ସତ୍ୟଯୁଗକୁ ନଷ୍ଟ କରି ପାରେ ? କଳିଟା କେବଳ ସତ୍ୟର ଅଳୀକ ଆବରଣ । ଏହି ଆବରଣ ଘୁଞ୍ଚିଗଲେ ତେଜସ୍ୱୀ ସତ୍ୟ ଦେଦୀପ୍ୟମାନ ହୋଇଉଠିବ । ମୁସଲମାନ, ଜୈନ, ଖ୍ରିଷ୍ଟିୟାନ କେହି କେବେ ଆର୍ଯ୍ୟର ସତ୍ତା ନଷ୍ଟ କରି ନପାରେ । ବିଧର୍ମିମାନଙ୍କର କେତେ ଧକ୍କା, କେତେ ଆକ୍ରମଣ ସହ୍ୟ କଲେହେଁ, ଭାରତ ଦେଶରୁ ଆର୍ଯ୍ୟଧର୍ମର ସତ୍ତା ନଷ୍ଟ ହୋଇ ପାରିନାହିଁ । ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କପରି ମହାତ୍ମାମାନେ ଅସ୍ତମିତ ଆର୍ଯ୍ୟଧର୍ମର ପୁନରୁଦ୍ଧାର କରିପାରନ୍ତି । ହରିଦ୍ୱାରଠାରୁ ଆର୍ଯ୍ୟଧର୍ମର ପ୍ରଚାର ଆରମ୍ଭ ହେଲାଣି । ଏହି ଅନାର୍ଯ୍ୟ ହିନ୍ଦୁ ଧର୍ମ ଚିରକାଳ ରହିବା କଥା ନୁହେଁ, ଦିନକୁ ଦିନ ଲୁପ୍ତ ହୋଇ ଆସୁଅଛି । କେବଳ ଗୁରୁକୁଳର ବ୍ରହ୍ମଚାରୀମାନଙ୍କ ପ୍ରଭାବରେ ଏହି ଅନାର୍ଯ୍ୟ ହିନ୍ଦୁଧର୍ମ ଅଚିରେ ଭାରତ ଦେଶରୁ ତିରୋହିତ ହୋଇପାରେ ।

—○—

## ଅନ୍ନ ଚଣ୍ଡାଳ ।

ବେଦବାଦ ସବୁ ଲୋକେ ଅନ୍ନରେ ପ୍ରତିଷ୍ଠିତ । ଅନ୍ନମୟ ପିଣ୍ଡ, ଅନ୍ନ ଦ୍ୱାରା ପ୍ରାଣୀମାନେ ଜୀବନ ଧାରଣ କରନ୍ତି । ଦେଶ ଭେଦରେ ଅନ୍ନର ପ୍ରକାର ଓ ପରିମାଣ ଭିନ୍ନ । ଉତ୍କଳ ଦେଶରେ ଭାତହିଁ ଲୋକମାନଙ୍କର ପ୍ରଧାନ ଆହାର, ସୁତରାଂ ଭାତକୁ ଅନ୍ନ କୁହାଯାଏ । ଏହି ଭାତ ପ୍ରତି ଲୋକଙ୍କର ଆଦର ଗୌରବ, ସ୍ନେହ ଶ୍ରଦ୍ଧା ରହିବାର କଥା, କିନ୍ତୁ ବାସ୍ତବିକ ଦେଖାଯାଏ ଯେ ଲୋକେ ଏହି ଭାତରୂପ ଅନ୍ନକୁ ଏକାନ୍ତ ଘୃଣା କରନ୍ତି, ହେୟଜ୍ଞାନ କରନ୍ତି, ତୁଚ୍ଛ ମଣନ୍ତି, ଚଣ୍ଡାଳପରି ଅସ୍ପୃଶ୍ୟ ଜ୍ଞାନ କରି ଦୂର କରନ୍ତି, ଏହାକୁ ସଖୁଡି ବୋଲି କହି ଉପେକ୍ଷା

କରନ୍ତି । ଏ କି ବଡମ୍ଭନ ! ଲିଆ, ଉଖୁଡା, ଚୁଡା, ମୁଢି, ମିଠାଇ ଇତ୍ୟାଦି ସଂଖୁଡ ହୁଏନାହିଁ, ଅଶୁଦ୍ଧ ହୁଏନାହିଁ, ଇତର ଲୋକଙ୍କ ଦୃଷ୍ଟି ବା ସ୍ପର୍ଶ ଦୋଷରେ ଦୂଷିତ ହୁଏନାହିଁ । ଏହାକୁ ଲୋକେ ଯେତେବେଳେ ହେଉ, ଯେଉଁ ସ୍ଥଳରେ ହେଉ, ଯେଉଁ ଅବସ୍ଥାରେ ହେଉ ବା ଯାହା ହାତରୁ ହେଉ ଗ୍ରହଣ କରନ୍ତି, କୌଣସି ଆପତ୍ତି କରନ୍ତି ନାହିଁ, କିନ୍ତୁ ଭାତ ତିଅଣ ବେଳକୁ ସବୁ ଦୋଷ ଉପସ୍ଥିତ, କେତେ କାଣ୍ଡ କାରଖାନାର ଆବିର୍ଭାବ । ଭାତକୁ କିଏ ଛୁଇଁଦେଲେ ତାହା ମାରା ହୋଇଯାଏ, ସ୍ଥାନ ବିଶେଷରେ ଦୃଷ୍ଟି ଦୋଷରେ ମଧ୍ୟ ଅଶୁଦ୍ଧ ହୋଇଯାଏ । ଭାତ ତିଅଣ ଯେଉଁ ସ୍ଥାନରେ ରଖାଯାଇଥାଏ ବା ପଡି ଯାଇଥାଏ ସେହି ସ୍ଥାନଟା ଅଶୁଦ୍ଧ ହୋଇଯାଏ, ପାଣିରେ ଧୁଆ ବା ଗୋବରରେ ଲିପା ହେବା ପର୍ଯ୍ୟନ୍ତ ଶୁଦ୍ଧ ହୁଏନାହିଁ । ହାତରେ ଭାତ ଧରି କାହାରିକି ଛୁଇଁବାକୁ ହୁଏନାହିଁ, ହାତରେ ଭାତ ଲାଗିଥିଲେ କିମ୍ବା ଭାତ ଧରିଥିଲେ ହାତ ଧୋଇବାକୁ ହୁଏ । ଭାତ ହେଉଛି ହିନ୍ଦୁ ଜାତି ବ୍ୟବସ୍ଥାର ମର୍ମସ୍ଥାନ । ହିନ୍ଦୁ ଜାତିର ଏତେ ବଡ଼ ଜାତି ବ୍ୟବସ୍ଥାଟା କେବଳ ଭାତ ଉପରେ ପ୍ରତିଷ୍ଠିତ କହିଲେ ଚଳିବ । ଏତେ ଗୁଡ଼ାଏ ଜାତକ ଗର୍ଭରେ ଧରିଥିଲେବି ଏହି ଭାତ – ଅନ୍ନର ପବିତ୍ରତା ଦୃଷ୍ଟି ଓ ସ୍ପର୍ଶମାତ୍ରେ ନଷ୍ଟ ହୋଇଯାଏ, ଚଣ୍ଡାଳ ବଡ଼ ଉପେକ୍ଷିତ, ଅଗ୍ରାହ୍ୟ ଓ ଅସ୍ପୃଶ୍ୟ ହୋଇ ପଡେ । ଏହି ଭାତରେ ଦେଶ କାଳ ପାତ୍ର ସବୁ ଅଶୁଦ୍ଧ ଅପବିତ୍ର ହୋଇ ପଡେ, ପୁଣି ପରିଶେଷରେ ହିନ୍ଦୁର ଜାତି ସୁଦ୍ଧା ନଷ୍ଟ ହୋଇଯାଏ ।

ଯେଉଁ ପଦାର୍ଥ ଉତ୍ତମ, ଶୁଦ୍ଧ ଏବଂ ପବିତ୍ର ପୁଣି ହିତକାରକ ଓ ପୁଷ୍ଟିକାରକ ସେହି ପଦାର୍ଥ ଅପର କୌଣସି ପଦାର୍ଥକୁ ଅଶୁଦ୍ଧ ଅପବିତ୍ର କରେନାହିଁ କିମ୍ବା ଅପର କୌଣସି ପଦାର୍ଥର ସ୍ପର୍ଶ ବା ଦୃଷ୍ଟି ଦୋଷରେ ନିଜେ ଅଶୁଦ୍ଧ ବା ଅପବିତ୍ର ହୋଇ ପଡେନାହିଁ, ବରଂ ଅନ୍ୟ ସମସ୍ତ ପଦାର୍ଥକୁ ପରିଶୁଦ୍ଧ ଏବଂ ପବିତ୍ର କରିପାରେ । ପୁରୀ ଜଗନ୍ନାଥଙ୍କ ଅନ୍ନ ପବିତ୍ର ହେବା ଯୋଗୁଁ ସ୍ପର୍ଶ ବା ଦୃଷ୍ଟି ଦୋଷରେ ଅଶୁଦ୍ଧ ହୁଏନାହିଁ, ଏହାକୁ ଲୋକେ ହାତରେ ଧରି ମୁଣ୍ଡରେ ଲଗାନ୍ତି, କାନି ପଣନ୍ତରେ ବାନ୍ଧି ନିଅନ୍ତି, ପଚୁ ସଢ଼ା ଶୁଖିଲା ହେଲେ ମଧ୍ୟ ଲୋକେ ଆଗ୍ରହ ସହକାରେ ଗ୍ରହଣ କରନ୍ତି । ଅନ୍ୟ ଅସ୍ପୃଶ୍ୟ ପଦାର୍ଥ ସ୍ପୃଶ୍ୟରେ ମାଟି ମାଠିଆ ଯେପରି ଅଶୁଦ୍ଧ ହୋଇଯାଏ, ପିତ୍ତଳ ଗରିଆ ସେପରି ହୋଇ ପାରେନାହିଁ । ସେହିପରି ଯେଉଁ ଭାତ ଉତ୍କଳ ଦେଶରେ ସବୁ ପ୍ରକାର ଅନ୍ନ ମଧ୍ୟରେ ସର୍ବୋତ୍କୃଷ୍ଟ ତାହାକୁ ପରମ ପବିତ୍ର ପଦାର୍ଥ ରୂପରେ ସର୍ବଦା ଗ୍ରହଣ କରିବା କଥା ଥିଲା ଏବଂ ତାହାର ସ୍ପର୍ଶଯୋଗେ ଅନ୍ୟାନ୍ୟ ସକଳ ପଦାର୍ଥ ପବିତ୍ରିକୃତ ହେଉଥାନ୍ତା, କିନ୍ତୁ

ସେହି ଅନ୍ନ ଅଜ ଉପେକ୍ଷିତ, ଘୃଣିତ ଏବଂ ପରିତ୍ୟକ୍ତ । ଧାନ ଗୁଣ୍ଡଙ୍କରୁ ନାନା ଉଖୁଡ଼ା ଚୁଡ଼ା ମୁଢ଼ି ଚୁନା ଚକଟା ଇତ୍ୟାଦି ପ୍ରସ୍ତୁତ ହୁଏ, ତାହାସବୁ ପରଶୁଦ୍ଧି ଭାବରେ ସର୍ବତ୍ର ଫଳବତ୍ ଗ୍ରାହ୍ୟହୁଏ, କିନ୍ତୁ ସେହି ଗୁଣ୍ଡଙ୍କୁ ପାଣିରେ ସିଝାଇ ଭାତ କରିଦେଲେ ତାହା ଦୃଷ୍ଟି ସ୍ପର୍ଶାଦି ଦୋଷରେ ଦୂଷିତ ହୋଇ ପଡ଼େ, ପୁଣି ଅସ୍ପୃଶ୍ୟ ଅଗ୍ରାହ୍ୟ ଜାତିନାଶକ ଇତ୍ୟାଦି ହୋଇଯାଏ । ଅତଏବ ତାହହିଁ ଅନ୍ନ ଚଣ୍ଡାଳ ବା ଚଣ୍ଡାଳାନ୍ନ ।

ଅନ୍ନଦାନ ମହାପୁଣ୍ୟ ବୋଲି କଥାଅଛି । ଯୁଧିଷ୍ଠିର ମହାରାଜ ନିତ୍ୟ ସହସ୍ରେ ବ୍ରାହ୍ମଣଙ୍କୁ ଅନ୍ନ ଦେଉଥିଲେ । ବ୍ରାହ୍ମଣମାନେ ସେତେବେଳେ କି ଏହି ଅନ୍ନ—ଚଣ୍ଡାଳ ଗ୍ରହଣ କରୁଥିଲେ ? ଏହି ଅନ୍ନ—ଚଣ୍ଡାଳ ଦାନରେ ବା କି ଫଳ ବା ପୁଣ୍ୟ ହୁଏ ? ବୋଧହୁଏ ସେତେବେଳେ ଅନ୍ନକୁ ଚଣ୍ଡାଳତ୍ୱ ସ୍ପର୍ଶ କରି ନଥିଲା । ଯୁଗ ଭେଦରେ ଅନ୍ନର ଏହି ଶୋଚନୀୟ ଅବସ୍ଥା । ଏହି କଳିକାଳରେ ସେହି ପରମ ପବିତ୍ର ଅନ୍ନବ୍ରହ୍ମ ଅଜ ଅନ୍ନ ଚଣ୍ଡାଳରେ ପରିଣତ ।

—୦—

## ବ୍ରାହ୍ମଣ ଭୋଜନ ସଂସ୍କାର ।

କେହି ସଂସ୍କାରକ ନାମା ଲେଖକ ସେଦିନ ବ୍ରାହ୍ମଣ ଭୋଜନ ବିଷୟରେ କେତେକ ଅପ୍ରିୟ ସତ୍ୟ କହିଥିବାରୁ ଶ୍ରୀମାନ୍ ପଣ୍ଡିତ ବିମଳେଶ୍ୱର ନନ୍ଦ ମହାଶୟ ତାହାଁର ପ୍ରତିବାଦ ଛଳନାରେ ଉକ୍ତ ସଂସ୍କାରକଙ୍କୁ ଅଯଥା ଆକ୍ରମଣ କରିଛନ୍ତି । ନନ୍ଦ ମହାଶୟ କହିଛନ୍ତି ଯେ " ସଂସ୍କାରକମାନେ ଅନ୍ୟର ଦୋଷ ଅନ୍ବେଷଣ ତତ୍ପର " । ଦୋଷ ଅନ୍ବେଷଣ ତତ୍ପର ନହେଲେ କେହି କେବେ କୌଣସି ସଂସ୍କାର କରି ପାରେକି ? ସଂସ୍କାର କରିବାକୁ ଗଲେ ପ୍ରଥମେ ଦୋଷ କଣ ତାହାସ୍ଥିର କରିବାକୁ ହୁଏ । ଅତଏବ ଦୋଷ ଦେଖି ପାରିବା ଓ ଦେଖାଇଦେବା ସଂସ୍କାରକଙ୍କର ପ୍ରଥମ କାର୍ଯ୍ୟ । ଏହା ପଣ୍ଡିତ ମହାଶୟ ଅସ୍ୱୀକାର କରି ପାରିବେ ନାହିଁ । କେବଳ ଉପଦେଶ ପ୍ରଦାନ ଯଥେଷ୍ଟ ନୁହେ, ଅଦର୍ଶ ଆବଶ୍ୟକ ସତ୍ୟ, କିନ୍ତୁ ଆଦର୍ଶ ଅଭାବରେ ଉପଦେଶଟା ଯେ ବ୍ୟର୍ଥ ଏହା ବୋଲିଯାଇ ନପାରେ । ଉପଦେଶ ଅପେକ୍ଷା ଆଦର୍ଶ ଉତ୍କୃଷ୍ଟ ହେଲେହେଁ ଅବଶ୍ୟ ଉପଦେଶର ମୂଲ୍ୟ ଅଛି । ଏହା କଣ ନନ୍ଦ ଆପଣେ ସ୍ୱୀକାର କରନ୍ତି ନାହିଁ ? ପୁଣି ସେହି ସଂସ୍କାରକ ଯଥାଶକ୍ତି ସମ୍ଭବ ଆଦର୍ଶ ଦେଖାଉଅଛନ୍ତି କି ନା ନନ୍ଦ ମହାଶୟ ଦେଖିବା ଚେଷ୍ଟା କରିଅଛନ୍ତି କି ? ସେହି ସଂସ୍କାରକଙ୍କର " ଧୈର୍ଯ୍ୟ ସାହସ ଓ କାର୍ଯ୍ୟ ପଟୁତା " ଥାଇ ନପାରେ । ଈଶ୍ୱର

ଯଥା ଯେତେବେଳେ ଅବତୀର୍ଣ୍ଣ ହୁଅନ୍ତି ବା ଅବତାର ଗ୍ରହଣ କରନ୍ତି, ସେତେ-
ବେଳେ ସେ ଷୋଡଶ କଳାଧର ଅସିପାର ନଥାନ୍ତି । ରାମାନୁଜ, ଚୈତନ୍ୟ,
ରାମମୋହନ, ଦୟାନନ୍ଦ ପ୍ରଭୃତି ମହାତ୍ମାମାନଙ୍କ ଗୁଣରେ ମଧ୍ୟ ଖୁଣ ଥିଲା ବୋଲି,
ସମାଲୋଚକ ଓ ପ୍ରତିବାଦକମାନେ କହୁଥାନ୍ତି । ତେବେ ଏହି ସଂସ୍କାରକ ନାମା-
ଙ୍କିତ ସଂସ୍କାରୋପଯୋଗୀ ଧୈର୍ଯ୍ୟ ବା କାର୍ଯ୍ୟପଟୁତା ନଥିବା ବଚନ ବା ଅସା-
ଧାରଣ ନୁହେ । ଅଧୁନାତନ ସଂସ୍କାରକମାନଙ୍କର ସେହି ଶକ୍ତି ଓ କାର୍ଯ୍ୟ ପଟୁତା-
ଥିଲେ ଏହି ସମ୍ବାଦ ପତ୍ର ପ୍ରବନ୍ଧ ଓ ପ୍ରତିବାଦର ଆବଶ୍ୟକତା ନଥାନ୍ତା । ତଥାପି
ଏହି ସଂସ୍କାରକମାନଙ୍କର ଦୋଷାନ୍ୱେଷଣ କରିବା, କହିବା ଏବଂ ଲେଖିବାଦ୍ୱାରା
ଯେ ସେମାନେ ନିଜେ ନିଜେ ଏବଂ ସମାଜ ଶନୈଃ ଶନୈଃ ସଂସ୍କୃତ ହେବାକୁ
ପ୍ରୟାସ କରନ୍ତି, ଏଥିରେ ସନ୍ଦେହ ନାହିଁ । ସେହି "କେହି ସଂସ୍କାରକ" ଦୋଷ
ନିରାକରଣର ଉପାୟ କହୁନାହାନ୍ତି, ଏବଂ ଦୋଷ ଦୂର କରି ପାରୁ ନାହାନ୍ତି
ବୋଲି ନନ୍ଦ ମହାଶୟ ଅକ୍ଷେପ କରିଅଛନ୍ତି । ସେହି ସଂସ୍କାରକଙ୍କ ଏକମାତ୍ର ଆଦର୍ଶ
ଉପେକ୍ଷିତ ହୋଇଥିବା ପୁଣି କେତେଟା ଉପାୟ କଥନ ବନ ରୋଦନରେ ପରିଣତ
ହୋଇଥିବା ବାମନେଶ୍ୱର ବାବୁ ତାହାଁର ହିସାବ ବୁଝିବାକୁ ପ୍ରୟାସ କରନ୍ତୁ କି ?
ଅବଶ୍ୟ ସମ୍ବାଦପତ୍ରମାନ ଆଲୋଚନା କଲେ ତାହାଁର କିଛି ନିଦର୍ଶନ ପାଇପାରନ୍ତି ।

ପୁଣି ଆଉ ଏକ କଥା । ନନ୍ଦ ମହାଶୟଙ୍କର ମନନ ଯୋଗ୍ୟ ସେହି ସଂସ୍କାରକମାନେ
ସମାଜର ଦୋଷ ଦେଖାଇ କହୁଥିବାଯାକ ସମାଜରେ ଥାନ୍ତି, ଏବଂ ସମାଜ ନିଜର
ଦୋଷ ଦେଖିପାରି କ୍ରମେ କ୍ରମେ ସଂସ୍କୃତ ହେବାକୁ ଲାଗେ । କିନ୍ତୁ ଯେଉଁ କ୍ଷଣି-
କେହି ସଂସ୍କାରକ ନିଜର କଥା ଗୁଡାକ ନିଜେ କାର୍ଯ୍ୟରେ ପରିଣତ କରନ୍ତି ସେହି-
କ୍ଷଣି ସେ ସମାଜରୁ ବହିଷ୍କୃତ, ବିଧର୍ମୀ ମୁସଲମାନ ବା ଖ୍ରୀଷ୍ଟିୟାନ । ତାହାଙ୍କ
କଥାର ଆଉ ମୂଲ୍ୟ ବା ମହତ୍ତ୍ୱ ରହେ ନାହିଁ । ପୁଣି ବାମନେଶ୍ୱର ବାବୁ କହୁ-
ଛନ୍ତି ଯେ ସଂସ୍କାରକ ନିଜେ ବ୍ରାହ୍ମଣ ହୋଇ ଯଜ୍ଞ ଓ ବ୍ରାହ୍ମଣ ପୂଜା ସମ୍ବନ୍ଧରେ ଆଲୋଚନା
କରୁନାହାନ୍ତି । କିନ୍ତୁ ସେ ଉକ୍ତ "ବ୍ରାହ୍ମଣ ଭୋଜନ" ପ୍ରବନ୍ଧଟି ଆଉଥରେ ମନୋ-
ଯୋଗ ପୂର୍ବକ ପାଠକରନ୍ତୁ, ତହିଁରେ ଦେଖିବେ ଯେ ସେହି ସଂସ୍କାରକ ବ୍ରାହ୍ମଣ
କିଏ, ଯଜ୍ଞ ଅନୁଷ୍ଠାନ କଣ ଏବଂ ବ୍ରାହ୍ମଣମାନେ କିପରି ପୂଜାର୍ହ, ଏହି ବିଷୟରେ
ଯତ୍କିଞ୍ଚିତ୍ ଆଲୋଚନା ନକରି ଛାଡି ନ ଥାନ୍ତି, ପୁଣି ବ୍ରାହ୍ମଣମାନଙ୍କ ମଧ୍ୟରୁ
ଅନେକେ ଅଧ୍ୟୟନ ଅଧ୍ୟାପନ, ଯଜନ ଯାଜନ ପରିତ୍ୟାଗ କରି କେବଳ
ଶିଶ୍ନୋଦରପରାୟଣ ନାମ ବ୍ରାହ୍ମଣ ବା ଅବ୍ରାହ୍ମଣରେ ପରିଣତ ହୋଇଥିବା ଏବଂ
ଭୋଜନ ବେଳେ ଏହି ଭେଦ ନିର୍ବିଶେଷରେ ଏମାନେ ଉପସ୍ଥିତ ହେଉଥିବା
କଥା ଲେଖିଛନ୍ତି ।

ସେ ଯାହାହେଉ ଆନନ୍ଦ ଓ ଆଶାର କଥା ଏହିଯେ ସେହି ସଂସ୍କାରକଙ୍କ ଲେଖାରେ ଅନେକ ସତ୍ୟ କଥାଥିବା ନନ୍ଦ ମହାଶୟ ସ୍ୱୀକାର କରିଛନ୍ତି । ସତ୍ୟମେବଜୟତେ ।

—୦—

## ସବର୍ଣ୍ଣାସବର୍ଣ୍ଣ ବିବାହ ।

ବୈଦିକ ଯୁଗରୁ ସବର୍ଣ୍ଣ ବା ସ୍ୱାଭାବିକ ବିବାହ ଆଜି ହିନ୍ଦୁ ସମାଜରେ ପ୍ରଚଳିତ ନାହିଁ । ପୂର୍ବକାଳରେ ଋଷି ମୁନି ପ୍ରଭୃତି ମହାତ୍ମାମାନେ ଜନ୍ମଗତ ଜାତି ନିର୍ବିଶେଷରେ ଆପଣା ଆପଣା ଗୁଣ, କର୍ମ, ସ୍ୱଭାବ ଧର୍ମାନୁସାରେ ସ୍ତ୍ରୀ ଗ୍ରହଣ କରନ୍ତି । ଶ୍ରୁତି, ସ୍ମୃତି, ଇତିହାସ, ପୁରାଣାଦିରୁ ଏଥିର ଶତ ଦୃଷ୍ଟାନ୍ତ ଦିଆଯାଇ ପାରେ ଯଥା—ବଶିଷ୍ଠ, ମନ୍ଦପାଳ, ଯମଦଗ୍ନି, ଗୌତମ, ପ୍ରଭୁ ରାମଚନ୍ଦ୍ର, ରାଜା ଦୁଷ୍ମନ୍ତ, ଯଯାତି, ଶାନ୍ତନୁ, ଭୀମ, ଅର୍ଜୁନ ଇତ୍ୟାଦି । ଏମାନେ ଆପଣାଠାରୁ ଉଚ୍ଚ ଜାତିରୁ, ନୀଚ ଜାତିରୁ କିମ୍ବା କୌଣସି ଅଜ୍ଞାତ କୁଳଶୀଳ ଜାତିରୁ ସ୍ତ୍ରୀ ଗ୍ରହଣ କରିଥିଲେ । ବର୍ତ୍ତମାନ ପଟେଲ୍ ମହାଶୟ ଯେଉଁ ବ୍ୟବସ୍ଥାର ପ୍ରସ୍ତାବ କରିଅଛନ୍ତି ତାହା ନୂତନ ବା ବେଦ ବିରୁଦ୍ଧ ନୁହେ, ବରଂ ପୂର୍ବ ପ୍ରଚଳିତ ରୀତିର ପୁନରୁତ୍ଥାନ ମାତ୍ର । ତଥାପି ଏହି ବିବାହ ସଂସ୍କାର ପ୍ରସ୍ତାବ ଶୁଣି ଆଜି ଜମିଦାର ମହାରାଜାମାନେ, ମହନ୍ତ ମହାରାଜମାନେ, ପ୍ରତିଗ୍ରହ ପରାୟଣ ପୁରୋହିତମାନେ, ସଂକୀର୍ଣ୍ଣ ସ୍ୱାର୍ଥାନ୍ଧ ସମ୍ପାଦକମାନେ ବିଚଳିତ ଏବଂ ଖଡ୍ଗହସ୍ତ । ଜମିଦାର ମହାରାଜାମାନେ ଧର୍ମ, କର୍ମ, ଜାତି, ବର୍ଣ୍ଣ ନିର୍ବିଶେଷରେ ଅନେକ ସ୍ତ୍ରୀ ଗ୍ରହଣ କରନ୍ତି । ମହନ୍ତ ମହାରାଜମାନେ ଧନ ସମ୍ପଦ ଭୋଗ ବିଳାସରେ ମାତିଛନ୍ତି । ପୁରୋହିତ ବ୍ରାହ୍ମଣମାନେ ପାତ୍ରାପାତ୍ର ବିବେଚନା ନକରି ଧନ ଲୋଭରେ କନ୍ୟା ବିକ୍ରୀ କରନ୍ତି । ସମ୍ପାଦକମାନେ ଯଥେଚ୍ଛା ବ୍ୟଭିଚାର କରନ୍ତି । କିନ୍ତୁ ଏତେବେଳେ ଏମାନେ ସମାଜରେ ଜାତିର ଅତ୍ୟନ୍ତ ମଙ୍ଗଳଜନକ ବ୍ୟବସ୍ଥାର ଅନ୍ତରାୟ ହୁଅନ୍ତି । ଯେ କୌଣସି ହେଉ ସଂସ୍କାର ବିରୁଦ୍ଧରେ ଯେ କିଛି କହିଲା ବା ଲେଖିଲା ସେ ହୁଏ ଖାଣ୍ଟି ହିନ୍ଦୁ ଓ ସନାତନ ଧର୍ମ ସଂରକ୍ଷକ । ଯଦି କୌଣସି ସ୍ୱାର୍ଥାନ୍ଧ ବ୍ୟକ୍ତି ଗୋଟେ ପ୍ରଳାପ ବା ଚିତ୍କାର କରେ ବାକି ସମସ୍ତେ ପାଳି ଧରନ୍ତି । ସ୍ୱାଧୀନ ଚିନ୍ତା, ବିଚାର, ବିବେକ ସବୁ ଧର୍ମ ବିରୁଦ୍ଧ ହୁଏ । ଯେଉଁ ଲୋକ ଚମଡ଼ା କଟାଏ, ମାଛ ବିକି କରେ, ଦଲାଲ ହୁଏ, କୌଣସି ଖ୍ରୀଷ୍ଟିଆନ ସ୍ତ୍ରୀର ପାଣିଗ୍ରହଣ କରେ, ପଇତା ପିନ୍ଧିଦେଇ ବ୍ରାହ୍ମ ବନିଯାଏ, ସେହିଲୋକ ମଧ୍ୟ ସମ୍ପାଦକ ଆସନରେ ବସି ହିନ୍ଦୁ ସମାଜ ପାଇଁ ବ୍ୟବସ୍ଥା ଦିଏ । ସେହି ସମ୍ପାଦକ ଏବେ ମାନ୍ୟବର ପଟେଲ୍ ମହାଶୟଙ୍କ ପ୍ରସ୍ତାବିତ ବିବାହ ବ୍ୟବସ୍ଥାର ବିରୁଦ୍ଧ ପ୍ରଳାପରେ ଆପଣା ପତ୍ର ଖଣ୍ଡିକ ପୂର୍ଣ୍ଣ କରନ୍ତି ।

ଅନ୍ତର୍ଜାତିକ ବିବାହ ଆଇନ ଦ୍ୱାରା ହିନ୍ଦୁର ଜାତି, ଧର୍ମ ଲୁପ୍ତ ହୋଇଯିବ ବୋଲି ଯେଉଁମାନେ ଚିତ୍କାର କରନ୍ତି, ସେମାନେ ଭଲ କହନ୍ତୁ, ତୁମ୍ଭେମାନେ ତୁମ୍ଭର ସଂକୀର୍ଣ୍ଣ ସାମାଜିକ ସୀମାମଧ୍ୟରେ ଯେଉଁ ସବର୍ଣ୍ଣ ବିବାହ କରୁଅଛ ତଦ୍ୱାରା ତୁମ୍ଭର ଧର୍ମ, କର୍ମ, ବାଣିଜ୍ୟ, ବ୍ୟବସାୟ ଇତ୍ୟାଦି କି ଠିକ ଚାଲୁଅଛି ? ବ୍ରାହ୍ମଣମାନେ ଆଜି ଯଦି ଅପଣାର ଧର୍ମ କର୍ମ କରୁଥାନ୍ତେ, ଅର୍ଥାତ୍ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା କରୁଥାନ୍ତେ, ତେବେ ସେମାନେ ଅଧ୍ୟାପକ ବୃତ୍ତିକ ବ୍ରାହ୍ମଣ କନ୍ୟା ଗ୍ରହଣକଲେ ଉକ୍ତ ସ୍ତ୍ରୀ ତାହାଙ୍କର ଅଧ୍ୟାପନା ଓ ହୋମାଦି ଅନୁଷ୍ଠାନରେ ସାହଚର୍ଯ୍ୟ କରନ୍ତା । କିନ୍ତୁ ଯେତେବେଳେ କୌଣସି ବ୍ରାହ୍ମଣ ଅନ୍ୟଲୋକର ହିସାବ ପତ୍ର ରଖି କରଣର ବ୍ୟବସାୟ କରେ, ସୈନିକ ବିଭାଗରେ ପ୍ରବେଶକରି ଯୁଦ୍ଧ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ତେଲ ଲୁଣ ବିକି ତେଲିର ବ୍ୟବସାୟ କରେ, ମାଛ ବିକିକରି କେଉଟର କାର୍ଯ୍ୟକରେ ଏବଂ ଆମ୍ବ ଓ କଇଥ ବିକି ବାରୁଇ ହାଡ଼ିର ବ୍ୟବସାୟ କରେ, କିମ୍ବା କୃଷକର, କୃଷକର ଜୀବିକାକରେ, ତେବେ ସେହି ବ୍ରାହ୍ମଣ ଯଥାକ୍ରମେ କରଣ, କ୍ଷତ୍ରିୟ, ତେଲି, କେଉଟ, ହାଡ଼ି, ବାଉରି ବା ଚଷାର କନ୍ୟା ଗ୍ରହଣ କଲେ ତାହାର ସବୁ ଧର୍ମ କର୍ମ ବ୍ୟବସାୟ ସୁଖ ସ୍ୱାଚ୍ଛନ୍ଦ୍ୟ ସହକାରେ ସୁନିର୍ବାହିତ ହେବ ନାହିଁ କି ? ଏଥିଦ୍ୱାରା ତାହାଙ୍କର ବ୍ୟବସାୟର ଉନ୍ନତି ହେବନାହିଁ କି ? ଶୁଣାଯାଉଅଛି ଯେ ପଟେଲ୍ ମହାଶୟଙ୍କ ପ୍ରସ୍ତାବର ପ୍ରତିବାଦ କରିବାପାଇଁ ପୁରୀକ୍ଷେତ୍ରରେ ଏମାରମଠ ମହନ୍ତ ମହାରାଜାଙ୍କ ସଭାପତିତ୍ୱରେ ସଭା ବସିବ । ମହନ୍ତ ମହାରାଜାଙ୍କୁ ଦଣ୍ଡବତ୍ ପ୍ରଣାମ ପୂର୍ବକ ପ୍ରାର୍ଥନା କରୁଅଛୁଁ ଯେ ଅନ୍ତର୍ଜାତିକ ବିବାହର ପ୍ରତିରୋଧ କରିବା ପୂର୍ବେ ବର୍ଣ୍ଣମାନଙ୍କୁ ନିଜ ନିଜ ସବର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରଖନ୍ତୁ । ତାହାଙ୍କୁ ଆମ୍ଭେମାନେ ପଚାରୁଁ ଯେ ଯଦି ବ୍ରାହ୍ମଣ ମାନେ କରଣ, କେଉଟ, କଣ୍ଡରାର କାମ କରନ୍ତି, ତେବେ ସେମାନଙ୍କ କନ୍ୟା ମାନଙ୍କୁ ଅଉ କିଏ ବିବାହ କରିବ । ଆମ୍ଭେମାନେ ଉଚ୍ଚ ଜାତି ହୋଇ ନୀଚ ଜାତିର ବ୍ୟବସାୟ କରିବା ପୁଣି ଆନ୍ତର୍ଜାତିକ ବିବାହର ଅନ୍ତରାୟ ହେବା ତେବେ ଇତର ଜାତି ମାନଙ୍କ ମୂଳୋଚ୍ଛେଦ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ଆଧ୍ୟାତ୍ମିକ ଓ ବ୍ୟବସାୟିକ ଉନ୍ନତି ସୁଦୂରପରାହତ ବୋଲିବାକୁ ହେବ । ଗୁଣ, ସ୍ୱଭାବ, ଧର୍ମ ଓ ବ୍ୟବସାୟରେ ଯଦି ଭେଦ ରହିଲା ନାହିଁ, ତେବେ ଆଉ କାହାକୁ ଦେଖି ବର୍ଣ୍ଣାବର୍ଣ୍ଣ ଭେଦ କରାଯିବ । ବର୍ଣ୍ଣ ଭେଦର ଅଭାବରେ ସବର୍ଣ୍ଣ ଓ ଅସବର୍ଣ୍ଣ ବିବାହର ଅର୍ଥ କଣ ? ଶିରୋନାସ୍ତି ଶିରୋବ୍ୟଥା ।

---

# ବିଭା ନହେଉଣୁ ବିଧବା ॥

ଜଣେ ପ୍ରେଉ ପଣାଖିଆ ବୃଦ୍ଧ ବ୍ରାହ୍ମଣର ଯୋଡ଼ିଏ ପୁଅ ଥିଲେ, ଭାର୍ଯ୍ୟା ଆଗରୁ ମରିଯାଇ ଅଛନ୍ତି । କୌଣସି ବିଷାକ୍ତ ପଦାର୍ଥ ଖାଇ ଦୁଇଟି ଯାକ ମରିଗଲେ । ବଡ଼ପୁଅର ବୟସ ୨୦ ସାନ ପୁଅର ୧୫ । ବଡ଼ ପୁଅଟି ବଭା ହୋଇଥିଲା । କ ୭ ବର୍ଷର କନ୍ୟାଟି ବିଧବା ହେଲା । ସମନ୍ଧିଆଣି କନ୍ୟାଟିକି ଧରି ଆଣି ବୃଦ୍ଧ ବ୍ରାହ୍ମଣ ପାଖେ ଥୁଇ ଦେଇଗଲା । ସମ୍ବନ୍ଧୀ ସମ୍ବନ୍ଧିନୀ ପୁଅ ଜୁଆଁଇ ମରଣରେ ଶୋକ ସନ୍ତପ୍ତ ହୋଇ ହାହାକାର କରୁଛନ୍ତି, ଏଣେ ବିଧବା ବଧୂ କନ୍ୟାଟି ବିବାହ କଣ, ଗୃହ ସଂସାର କଣ କିଛି ନଜାଣି ଧୂଳି ଖେଳୁଛି । ପୁଅ ଯୋଡ଼ିକ ସିନା ଦିନେ ମଲେ, ବୃଦ୍ଧ ପିତା ଏବଂ ବିଧବା ସମ୍ବନ୍ଧିନୀ ପୁରୋହିତ ପାଠ ଓ କୁଳାଗୁରୁର ଧନ୍ଦାରେ ପଡ଼ି ବାରଦିନ ପର୍ଯ୍ୟନ୍ତ ଦରମରା ହେଲେ । ଏହି ବାରଦିନିଆ ବ୍ୟାଧିରୁ ମୁକ୍ତ ହେଲା ପରେ ବୁଢ଼ା ବ୍ରାହ୍ମଣ ମନେକଲେ ଯେ ସେ ଏକ ପୋଷ୍ୟପୁତ୍ର କରିବେ, ଯେହେତୁ ତାଙ୍କର ପୁଅ ନଥିଲେ ସେ ପିଣ୍ଡ-ମୁଠେ ପାଇ ପାରିବେ ନାହିଁ । କନ୍ୟାର ମାତା କହେ ଯେ ସମ୍ବନ୍ଧୀ ଏବେ ଆଉ ପୁଅ କରନ୍ତୁ ନା, ବୋହୂ ପିଲାଟିକି ସବୁ ଦେଇ ଦିଅନ୍ତୁ, ପରେ ବୋହୂ ଦତ୍ତକ-ପୁତ୍ର କରିବ, ଯଦି ଏବେ ସମ୍ବନ୍ଧୀ ଦତ୍ତପୁତ୍ର କରିବେ ତେବେ ବୋହୂପିଲା ନାମରେ କରନ୍ତୁ । ସମ୍ବନ୍ଧୀ କାହାର କଥା ନମାନି ବୃଦ୍ଧ ବ୍ରାହ୍ମଣ ପିଣ୍ଡ ଆଶାରେ ନିଜେ ଦତ୍ତପୁତ୍ର କରିବାକୁ ଧରି ବସିଛନ୍ତି । ଏହିପରି ଉଭୟଙ୍କ ମଧ୍ୟରେ ବୋଲା ବୋଲି ଗାଳି କଳି ଲାଗି ଅଛି । ବୃଦ୍ଧ ବ୍ରାହ୍ମଣ କହୁଛନ୍ତି, ଆମ ପୁଅଟା କି କଷ୍ଟରେ ହୋଇଥିଲା ଯେ ଆଜି ଦିନୁ ପିଲାଟାକୁ ଆଣି ମୁଁ ପୋଷି ପାଳି ରଖିବି, ପୁଣି ତା ପାଇଁ ଦତ୍ତପୁତ୍ର କରିଦେବ । ସମ୍ବନ୍ଧିଆଣୀ କହନ୍ତି, ତୋର ପୁଅକୁ ମୋ ଝିଅକୁ ବିଭା କରିଥିଲୁ, ଏବେ ତୋର ସବୁ ସମ୍ପତ୍ତି ତୋର ସେହି ବୋହୂ ପିଲା ନାଁରେ ଲେଖିଦେ । ଉଭୟଙ୍କ ମଧ୍ୟରେ ଏହିପରି ତର୍କବାଦ ହେଉଥିଲା-ବେଳେ କେତେଜଣ ଭଦ୍ର ଲୋକ ଏହି ପ୍ରସ୍ତାବ କଲେ, ଯଦି ପିଣ୍ଡ ଆଶାରେ ବୃଦ୍ଧ ବ୍ରାହ୍ମଣ ଦତ୍ତପୁତ୍ର କରିବାକୁ ଭାବୁଛନ୍ତି ତେବେ ବିଧବା ବଧୂ ନାମରେ ଦତ୍ତକ ଗ୍ରହଣ କରନ୍ତୁ, ଯେହେତୁ ସେ ନାତିଠାରୁ ହେଲେ ପିଣ୍ଡ ପାଇ ପାରିବେ, କିନ୍ତୁ ନିଜେ ଏକ ପୋଷ୍ୟପୁତ୍ର କଲେ ମୃତ ପୁତ୍ର ଓ ବିଧବା ବଧୂ ଆଉ ପିଣ୍ଡ ପାଇ ପାରିବେ ନାହିଁ । ଏହି ପ୍ରସ୍ତାବରେ ବୃଦ୍ଧ ବ୍ରାହ୍ମଣ କଦାପି ସମ୍ମତ ନହେବାରୁ ଭଦ୍ରଲୋକ ମାନେ କହିଲେ, ଅଚ୍ଛା ତେବେ ଆଉ ଏକ ପନ୍ଥା ଅଛି । ବୃଦ୍ଧ ବ୍ରାହ୍ମଣ ଯଦି ପୋଷ୍ୟପୁତ୍ର କରିବାକୁ ନିଶ୍ଚୟ କରିଛନ୍ତି ତେବେ

ସେହି ପୋଷ୍ୟପୁତ୍ରକୁ ବିଧବା ବଧୂ ସହିତ ନିଯୋଗ କରି ଦିଅନ୍ତି, ଶ୍ୱଶୁର ବୋହୁଦିହେଁ ପିଣ୍ଡ ପାଇବେ, ପୁଣି ଅଜ୍ଞାନ ବାଳକଟି ଘରଦ୍ୱାର କରି ଗୃହାଶ୍ରମ ଧର୍ମପାଳନ କରିବ । ସ୍ମୃତି ପଣ୍ଡିତ ଆସି ମଧ୍ୟ ନିଯୋଗ ବ୍ୟବସ୍ଥା ଦେଇଗଲେ । ଇଥାପି ଉଭୟ ପକ୍ଷ ନିଯୋଗ ବିଧାନର ପକ୍ଷପାତି ନୁହନ୍ତି ।

ପିତାମାନେ ଆପଣାର କ୍ରୀଡ଼ା କୌତୁକ ଆନନ୍ଦ ଉତ୍ସବ ପାଇଁ ଗୋଟିଏ ବାଳିକାକୁ ବଳି କରି ଦିଅନ୍ତି । ଦୈବରେ ବାଳକଟି ମଲେ ବାଳିକାଟି ବିଧବା ହୁଏ । ବିବାହର ପବିତ୍ର ବନ୍ଧନ, ମଙ୍ଗଳ ଚରଣ ଏବଂ ଗୃହାଶ୍ରମ ନିସ୍ୱପ କିଛି ଜାଣି ନଥିବା ବେଳେ ସେମାନଙ୍କୁ ବିଭାକରି ଦିଆଯାଏ । ସେ ସବୁ ଜାଣିବା ବେଳକୁ ଯଦି ସେମାନେ ବିଧବା ହୁଅନ୍ତି ସେତେବେଳେ ସେମାନେ ଆଉ ପ୍ରକୃତ ବିବାହ କରି ନପାରି କପଟ ବ୍ୟଭିଚାର କରିବାକୁ ବାଧ୍ୟ ହୁଅନ୍ତି । ବାଳବିଧବାର ବ୍ରହ୍ମଚର୍ଯ୍ୟ ନାମରେ ସମାଜରେ ବ୍ୟଭିଚାରର ପ୍ରଶ୍ରୟ ଦିଆ ଯାଉଅଛି । ଏହାକୁ କହି ବିବାହ ନହେଉଣୁ ବିଧବା ।

—ㅇ—

## ଦିଅଁ ଗଢ଼ୁ ଗଢ଼ୁ ମାଙ୍କଡ ।

ପହରାଜ ମହାପାତ୍ରେ ଦେଉଳ ତୋଳାଇଲେ, ତହିଁରେ ବିଷ୍ଣୁ ପ୍ରତିମା ବସେଇ କରାଇଲେ, ଦେବତାଙ୍କ ଭୋଗରାଗ ନିମନ୍ତେ ଭୂମିବାଡି ଖଞ୍ଜିଦେଲେ, ସକାଳେ ବାଲଭୋଗ, ମଧ୍ୟାହ୍ନବେଳେ ଖେଚଡି,ସନ୍ଧ୍ୟାପହର ଅନ୍ନ,ରାତିରେ ବଡ଼ସିଂଗାର ଭୋଗଭ, ବାର ମାସରେ ତେର ପର୍ବ ପର୍ବାଣି, ଯାନି ଯାତ୍ରା ଇତ୍ୟାଦିର ବ୍ୟବସ୍ଥା କରିଦେଲେ । ସୁଆର, ସିଂଘାରି, ପୂଜାରି, ଗୀତାଳିଆ, ଟହଲିଆ ଇତ୍ୟାଦ ସେବକ ନିଯୁକ୍ତ ହେଲେ । ଅନ୍ନ, ବ୍ୟଞ୍ଜନ, ଖିରି, କାକରା ଇତ୍ୟାଦ ନାମମାତ୍ର ମୂଲ୍ୟରେ ବିକି ହେବାର ବନ୍ଦୋବସ୍ତ କରାଗଲା । ପହରାଜେ ଥିବାଯାକ କିଛିକାଳ ବିଧିମତେ କାର୍ଯ୍ୟ ଚଳିଲା । ପହରାଜେ ନିଜେ ସମସ୍ତ କାର୍ଯ୍ୟର ତଦନ୍ତ କରୁଥିଲେ । ପହରାଜଙ୍କ ଘରେ ଯେଉଁଦିନ ରନ୍ଧାବଢ଼ା ହୋଇ ନଥାଏ, ଘରେ କଳହ କଯ୍ୟା ହୋଇଥାଏ, କିବା ପହରାଜେ ରୁଷିଥାନ୍ତି ସେ ଦିନ ପହରାଜଙ୍କର ଦେଉଳରେ ଭୋଜନ ହୁଏ, ପୁଣ୍ୟ ପର୍ବରେ ଦିଅଁଙ୍କ ପିଠା ଖଜା ଇତ୍ୟାଦି ଆସିବାରତ ମାମୁଲ୍ କଥା । ପହରାଜଙ୍କର ପ୍ରିୟ ପ୍ରୀତି ସ୍ନେହ ବନ୍ଧୁଲୋକ ଆସିଲେ ତାହାଙ୍କପାଇଁ ଅନେକ ସମୟରେ ଦେଉଳରେ ପାର୍ଶ୍ୱ ଖଞ୍ଜା ହୋଇ ଥାଏ । ଅତିଥି ଅଭ୍ୟାଗତ ପାଇଁ ଯେଉଁ ପାର୍ଶ୍ୱ ଖଞ୍ଜାଥାଏ, ପହରାଜଙ୍କର ଗୁଙ୍କରବାକର ଲୋକ ନୌକର ଅସିଥିବା ଦିନରେ ସେମାନେ ଭୋଜନ

ଅତିଥି ଅଭ୍ୟାଗତ ହୋଇ ପଡନ୍ତୁ । ଏହିପରି ନିଜେ ଧର୍ମକର୍ତ୍ତାଙ୍କର ଧର୍ମ ମୂଳତର ମଧ୍ୟ ସ୍ୱାର୍ଥ ନିହିତ ଥାଏ ।

ଦେଉଳତୋଳା ହେବାର କିଛିକାଳପରେ ପଟ୍ଟରାଜଙ୍କର କାଳ ହୋଇଗଲାରୁ ତାହାଙ୍କର ପୁଅ ପୁତୁରାମାନେ ଉତ୍ତରାଧିକାର ସତ୍ତ୍ୱେ ଟ୍ରଷ୍ଟି ବା ଧର୍ମକର୍ତ୍ତା ନାମରେ ଉକ୍ତ ଦେବାଳୟର ମାଲିକ ହେଲେ, କିନ୍ତୁ ପଟ୍ଟରାଜ ମହାପାତ୍ରଙ୍କ ପୁତ୍ର ସାନ୍ତରା ମହାପାତ୍ରେ ମନ୍ଦିରର ଏକମାତ୍ର ମାନେଜର ବା ଗୁମାସ୍ତା ରୂପରେ ସମସ୍ତ କାର୍ଯ୍ୟଭାର ଗ୍ରହଣ କଲେ । ପିତାଙ୍କର ଧର୍ମରେ ମଧ୍ୟ ଉତ୍ତରାଧିକାର ସତ୍ତ୍ୱେ ପୁତ୍ର ମାଲିକ ହେଲେ । ନିଜେ ମନ୍ଦିର ପ୍ରତିଷ୍ଠାତା ଖଞ୍ଜା ଭୋଗରୁ କିଛି ଅମୃତପାତ୍ର ବା ଦେହଲାଗି କରି ନେଉଥିଲେ । ପୁତ୍ର ତା କାହିଁକି ପିତାଙ୍କ ପଦାଙ୍କ ଅନୁସରଣ କରିବେ ନାହିଁ ? ସାନ୍ତରା ମହାପାତ୍ରଙ୍କ ଅମଳରେ ମନ୍ଦିର ଓ ନିଜଘର ମଧ୍ୟରେ ଆଉ କିଛି ପ୍ରଭେଦ ରଖାଗଲାନାହିଁ ବରଂ ଦେବାଳୟଟା ପୁତ୍ରଙ୍କ ଉପନିବେଶ ହେଲା । ମହାପ୍ରଭୁଙ୍କ ଭଣ୍ଡାରଟା ନିଜ ସିନ୍ଦୁକରେ ରଖାଗଲା, ମନ୍ଦିର ଗୁମାରୁ ଠିକଣା ଲଗା ହୋଇଯାଇ ନିଜଘର ଛୁଆ ହେଲା, ନିଜପାଇଁ ଟଙ୍କା ଲୋଡା ହେଲାବେଳେ ଠାକୁରଙ୍କର ଜମିଟା ବନ୍ଧକ ଦିଆଯାଇ କରଜ ଆସିଲା । ଠାକୁରଙ୍କର ପହିଲି ଭୋଗଟା ଆପଣାର ଅଗମ ବଳଯ୍ୟା ଯୋଗଣ ପରେ ଗ୍ରହଣ ହେଲା । ଏହିପରି କ୍ରମେ ପୁତ୍ର ଧର୍ମକର୍ତ୍ତା ପିତାଙ୍କ ଦେବମନ୍ଦିରର ଏକଚାଟିଆ ମାଲିକ ହେଲେ ଅର୍ଥାତ୍ ନିଜେ ଚଳନ୍ତ ପ୍ରତିମା ସ୍ୱରୂପ ଦେବତା ସ୍ଥଳାଭିଷିକ୍ତ ହୋଇପଡିଲେ । ମର୍ତ୍ତ୍ୟମଣ୍ଡଳେ ଜନ୍ମହୋଇ ଦେବତା ହେଲେହେଁ ମରଇ । ସାନ୍ତରା ମହାପାତ୍ରେ ସ୍ୱର୍ଗାରୋହଣ କଲେ । ତାପରେ ତାହାଙ୍କର ଖୁଡୁତା ପେଟୁତା ଦୁଇ ଭାଇମାନେ ଔରସ ସ୍ୱତ୍ତ୍ୱେ ମନ୍ଦିରର ଧର୍ମକର୍ତ୍ତା ମାଲିକ ହେଲେ । ମନ୍ଦିର ହେଲା ଏବେ ଭାଗ ଘଇତାର ଘର କାହାକୁ ବୋଲିବା ପର । ଠାକୁରଙ୍କ ପ୍ରସାଦ ଲୋକୋପକାର ସକାଶେ ସ୍ୱଳ୍ପ ମୂଲ୍ୟରେ ବିକି ହେବାର ବ୍ୟବସ୍ଥା ହୋଇଛି ପୁଣି ବିଦେଶୀ ଲୋକଙ୍କ ଦାବୀ ଅଗ୍ରଗଣ୍ୟ ହେବାର କଥା, କିନ୍ତୁ ଏହି ଟ୍ରଷ୍ଟି ଧର୍ମକର୍ତ୍ତା ମାନଙ୍କ ଉଦର ଓ ପରିବାରୋପକାରାର୍ଥେ ସେମାନଙ୍କ ଦାବୀ ଅଗ୍ରଗଣ୍ୟ ହୁଏ । ମହାପ୍ରଭୁଙ୍କର ବଡ ସିଙ୍ଗାର ଭୋଗପାଇଁ ଜାକରା, ସରପୁଜା ଆଦି ପିଷ୍ଟକର ପରିମାଣ ଯେତେ ବଢ଼ିଲା ଧର୍ମକର୍ତ୍ତା ଅର୍ଚ୍ଚକ ଓ ସେବକ ମାନଙ୍କର ଅଫିମ ଓ ମଦଗଛର ମାତ୍ରା ସେତେ ବଢ଼ିଲା । ଠାକୁରତ ଚିରକାଳ ନାବାଳକ, ଅର୍ଚ୍ଚକ ଅଭିଭାବକମାନେ କଡାଢିର ଛେନା ମାଳତ ବାଣ୍ଟିଦେଲା ନ୍ୟାୟ ଠାକୁରଙ୍କର ଜମି ବାଡିତକ ଯେଝା ସକ୍ତିରେ ଭୋଗ ଦଖଲ କରିଛନ୍ତି । ନାବାଳକ ଠାକୁର ଆଜଠୁଁ ଦବାଲା

ହେଲେଣି । ଜାଣ ଯାବତ ଏହାଙ୍କର ଅବାଳକତ୍ୱ ଯିବନାହିଁ, ଭବିଷ୍ୟତରେ ଏହାଙ୍କର କି ଦଶା ହେବ ତାହା ସହଜ ବୁଝାଯାଏ—ଏତ ହେଲା ଧର୍ମକର୍ତ୍ତା ମାନଙ୍କର ଅଭିଭାବକତା ବା ଦିଅଁସେବା ତେଣେ ପୂଜାରୀ, ସିଂହାରୀ ମାନଙ୍କର ପୂଜା ସେବା ବିଧି କିପରି ଚାଲିଅଛି ଦେଖନ୍ତୁ । ଦେବତା ମାନେତ ନିବାଳକ, ସେମାନଙ୍କର ବିଷୟ ବୁଝିପାରିବା କ୍ଷମତା ନାହିଁ, ପୁଣି ଅଜ୍ଞାନ ବାଳକ ବାଳିକା ହେଲେ କି ହେଲା, ସାଧୁସ୍ୱଭାବ, ଖାଇବାପାଇଁ ହଠ କରନ୍ତି ନାହିଁ । ବୋଡେ ତିନିସୋଲାର ଅନ୍ନ ଥାଳି ସୋଲେ ତିନିଅଧାରେ ପୂର୍ଣ୍ଣ କରାଯାଏ, ଗୁଡ଼ ତରକାରୀ, ଗିନେ ଘିଅର ବ୍ୟବସ୍ଥା ଥିଲେହେଁ ସମୟେ ୨ ନାମମାତ୍ର ଦୁଇଟା ତିଅଣ, ଘିଅ ଟୋପେ ହେଲେ ମଧ୍ୟ କାମ ଚଳିଗଲା । ଯେଉଁ ଅନ୍ନଥାଳିଟା ବା କାକରା ପିଠା ଗୁଡ଼ ପଇସାରେ ବିକିହେବା କଥା, ତାହା ଛଅପଇସା ଆଠ ପଇସାରେ ବିକି ହୋଇ ବଳକା ପଇସାଟା ସେବକଙ୍କ ବାହାଦୁରିର ଉପରି ପାରିତୋଷିକ ହୁଏ । ମାଆ ଯଦି ଡାହାଣି ପିଲାକୁ ଲୁଚାଇବ କେଉଁଠି ? ଧୋବ ଧାଉଳିଆ ଧର୍ମକର୍ତ୍ତା ମାନଙ୍କର ପ୍ରକାଶ୍ୟ ଉଦାସୃତ୍ତ, ମହଲ ମୁଣ୍ଡିଆ ଦରମାଖିଆ ସେବକ ମାନଙ୍କର ଗୋପ୍ୟ ଛପି- କଏ କାହାକଥା ବୁଝିପାରେ । ରକ୍ଷା ହୋଇଛି, ଦିଅଁମାନେ କାଠ ପଥରରେ ଗଢ଼ା, ସୁନା ରୁପାରେ ହୋଇଥିଲେ ସେବକମାନେ ବାଙ୍କ ଭାଙ୍ଗି ନେଇ ଯାଆନ୍ତେଣି, କିମ୍ବା ମିଷ୍ଟ ପଦାର୍ଥ ହୋଇ ଥିଲେ ପୂଜାରୀମାନେ ଦିଅଁ ଠାକୁରଙ୍କୁ ଉଦରସାତ୍ କରି ସାରନ୍ତେଣି । ଏହିପରି ଦିଅଁ ଗତି ୨ ମାଙ୍କଡ଼ ।

—୦—

## ଆନ୍ତର୍ଜାତିକ ବିବାହ ।

ଶ୍ରୁତି ନିର୍ଦେଶାନୁସାରେ ଜାତି ବା ବର୍ଣ୍ଣ ବିବାହର ନିୟାମକ ଥିଲା । କେବଳ ସ୍ତ୍ରୀ ଓ ପୁରୁଷର ଶରୀର, ମନ ଓ ଆତ୍ମାର ମିଳନ ଉପରେ ବିବାହ ବନ୍ଧନର ପବିତ୍ରତା ପ୍ରତିଷ୍ଠିତ ଥାଏ ।

ଯଦନ୍ତରଂ ତଦବାହ୍ୟଂ ତଦନ୍ତରମ୍

କନ୍ୟାନାଂ ବିଶ୍ୱରୂପାଣାଂ ମନୋଗ୍ରଭାୟୌଷଧେ ( ଅଥର୍ବବେଦ )

ଯେଉଁ ସ୍ତ୍ରୀ ଓ ପୁରୁଷର ବାହ୍ୟ ଓ ଅନ୍ତର ସମାନ ଏବଂ ଯାହାର ମନ ଓ ହୃଦୟର ମେଳ ଥାଏ ସେହି ଦୁହେଁ କେବଳ ବିବାହ ବନ୍ଧନ ଯୋଗ୍ୟ । ବିବାହର ପବିତ୍ରତା ଜାତି, କୁଳ, ମର୍ଯ୍ୟାଦା ଇତ୍ୟାଦି ପାର୍ଥିବ ବସ୍ତୁ ଉପରେ ନିର୍ଭର କରେ

ନାହିଁ, ବିବାହ ଅଟେ ଆଧ୍ୟାତ୍ମିକ ମିଳନ । "ଆତ୍ମାକୁ ଆତ୍ମା ଯଦି ସୂତ୍ରେ ପରମାନନ୍ଦେ ବାନ୍ଧେ" । ଆତ୍ମା ସହିତ ଆତ୍ମାର ମିଳନହିଁ ପରିଣୟ ପବିତ୍ରତାର ପରିମାପକ । ଜାତି, ବର୍ଣ୍ଣ, ରୂପ, ବିଦ୍ୟା, ଧନ ଇତ୍ୟାଦି ପ୍ରେମ ପବିତ୍ରତାର କଣ୍ଟକ ସ୍ୱରୂପ । ପିତା ମାତା ଜ୍ଞାତି ଓ ଇତର ଜନମାନେ କେବଳ ଏହି ବାହ୍ୟ ସାଦୃଶ୍ୟ ଗୃହାନ୍ତି । ଜାତି କୁଳ, ସଂପ୍ରଦାୟ, ସବର୍ଣ୍ଣ, ଅସବର୍ଣ୍ଣ ଇତ୍ୟାଦି ପାର୍ଥିବ ପ୍ରତିବନ୍ଧକ ହେତୁ ଆଜି ବିବାହର ପବିତ୍ରତା ବା ଆଧ୍ୟାତ୍ମିକତା ଏକାବେଳକେ ନଷ୍ଟ ହୋଇଅଛି । ବିବାହଟା ବାଲ୍ୟକ୍ରୀଡ଼ା, ନୃତ୍ୟଗୀତ, ସମାରୋହ, ଆଡ଼ମ୍ବର, ମାନ ମର୍ଯ୍ୟାଦା, ଦାନ, ପ୍ରତିଗ୍ରହ କିମ୍ବା ବିବାଦ ବିଗ୍ରହରେ ପରିଣତ ହୋଇଅଛି । ଏହାହିଁ ଅସବର୍ଣ୍ଣ, ଅସ୍ୱାଭାବିକ ଏବଂ ଅପବିତ୍ର ବିବାହ ବନ୍ଧନ । ଏହାକୁ ବିବାହ ନକହି ଦାସୀ ପରିଗ୍ରହ କିମ୍ବା ପାଶବ ଅତ୍ୟାଚାର କୁହାଯାଇ ପାରେ । ଏଥିରେ ବାଲ୍ୟ ବିବାହ, ବହୁ ବିବାହ, ବୃଦ୍ଧ ବିବାହ ଇତ୍ୟାଦି ଅବୈଧ ବିବାହ ଅନ୍ତର୍ଗତ । ଏହା ସ୍ତ୍ରୀ ପୁରୁଷ ବିବାହ ନୁହେ, ଅଟେ କେବଳ ବାଳକ ବାଳିକାଙ୍କର କ୍ରୀଡ଼ା କୌତୁକ, ପିତା ମାତାଙ୍କର ସମ୍ବନ୍ଧୀ ସମ୍ବନ୍ଧ ସ୍ଥାପନ, ପରିଜନ ଇତରଜନମାନଙ୍କର ଭୂରିଭୋଜନ କିବା ଦର୍ଶକମାନଙ୍କର ନାଚ ତାମସା ଓ ବହୁରୂପ ଦର୍ଶନ । ଏହି ଅବୈଧ ବିବାହ ହେତୁ ଅନେକ ଗୃହାଶ୍ରମ ସଂସାରର ଶ୍ମଶାନରେ ପରିଣତ ହୁଏ—ଅନେକ ସ୍ତ୍ରୀ ପୁରୁଷର ଆଶା ଆକାଙ୍କ୍ଷା ସବୁ ଜୀବନରେ ଅପୂର୍ଣ୍ଣ ରହିଯାଏ, ଅନେକ ଦମ୍ପତି ମତାନ୍ତର, ମନାନ୍ତର, ଦ୍ୱନ୍ଦ, କଳହ, ବିରହ, ବିପତ୍ତି, ବିଚ୍ଛେଦ ଇତ୍ୟାଦି ଭୋଗ କରନ୍ତି, ସନ୍ତାନ ହୀନ ରହନ୍ତି ନତୁବା ଦୁର୍ବଳ ହୀନବୀର୍ଯ୍ୟ ଅଳ୍ପାୟୁ ପୁତ୍ରକନ୍ୟା କିବା ଦୁଷ୍ଟ ଧୂର୍ତ୍ତ ସନ୍ତାନ ଉତ୍ପାଦନ କରି ଭାବୀ ଜୀବନ ଦୁଃଖମୟ ଏବଂ ବଂଶ କଳଙ୍କିତ କରନ୍ତି । ଏହି ରୀତିରେ ବିବାହ କରି ଲୋକେ ଘରଦ୍ୱାର କରିଅଛନ୍ତି, କଳିଷଠା ଷାଠିଏ ବର୍ଷ ବଞ୍ଚିଅଛନ୍ତି, ପୁତ୍ର ନାତି ସମ୍ପାଦନ କରୁଛନ୍ତି ସତ୍ୟ, କିନ୍ତୁ ଦମ୍ପତି ମଧ୍ୟରେ ଯେ ପବିତ୍ର ମନୋମିଳନ ପରସ୍ପରର ସାହଚର୍ଯ୍ୟ, ସୁଖ ସୌହାର୍ଦ୍ଦ୍ୟ ସଙ୍ଘଟିତ ହେଉଥାଏ, ଏହା ବୋଲା ଯାଇ ପାରେ ନାହିଁ । ଏକ ବଳଦ ଆଉ ଏକ ମଇଁଷି ଏକତ୍ର ଯୋଡି ହଳ କଲେ ମଧ୍ୟ ଭୂମିର ଗୃଷ ବେଉଷଣ କାର୍ଯ୍ୟ ଚଳିଯାଏ । ଜମିଟାକୁ ଲଙ୍ଗଳ ମୂନରେ ଆଷାଢ଼ ମାସରେ ଗାର ଗାର କରି ଦେଇ ଶ୍ରାବଣ ମାସରେ ଧାନଗଛ ପୋତି ଦେଲେ ଅବଶ୍ୟ କିଛି ଗୋଟାଏ ଧାନଫସଲ ହୋଇପାରେ, ତେବେ ଏହାକୁ କି କହି ପ୍ରକୃତ କୃଷି, ଏହାକି ଧାନ୍ୟାଦି ଶସ୍ୟ ଅଦାୟର ପରିମାଣ ? ଏହି ହିସାବରେ ଦେଖିଲେ ସ୍ତ୍ରୀ ପୁରୁଷ କାହିଁକି ମାଙ୍କଡ କୁକୁର ସଂଯୋଗରୁ ମଧ୍ୟ କିଛି ଗୋଟାଏ କିମ୍ଭୂତ କିମାକାର ଫଳ ପ୍ରସୂତ ହୋଇପାରେ । କିନ୍ତୁ ଏହି ବିବାହକୁ ସୁନ୍ଦର, ସବର୍ଣ୍ଣ ବା ସ୍ୱାଭାବିକ ବିବାହ କୁହାଯାଇ ନପାରେ । ଏହି ବିବାହକୁ ଲୋକେ ପ୍ରଜାପତି ଘଟଣା କହନ୍ତି । ପ୍ରଜାପତି

କଣ ବିବାହ ନାମରେ ନର ବାନର ଓ ଦେବ ରାକ୍ଷସ ମଧ୍ୟରେ ସଂଯୋଗ ଘଟାନ୍ତି ? ପାଷଣ୍ଡ ପିତା ମାତାହିଁ ବାଳକ ବାଳିକା ପକ୍ଷରେ ପ୍ରଜାପତି ଅଟନ୍ତି । ଏମାନେ ଯେଉଁ ଅଘଟନ ସଙ୍ଘଟନ କରି ପକାନ୍ତି ତହିଁରେ ପିଲାପିଲି ମାନଙ୍କର ହଲ୍ ଚଲ୍ ହେବାକୁ ଶକ୍ତି ନାହିଁ । ଏହି ପ୍ରଜାପତି ମାନଙ୍କ ଅବିମୃଷ୍ୟ, ଅଯ୍ୟବରଣାମଦର୍ଶିତା, ସ୍ୱାର୍ଥପରତା ହେତୁ ସନ୍ତାନ ସନ୍ତତି ମାନଙ୍କର ଭାବୀଜୀବନ ଦୁଷ୍ଟ, ଭ୍ରଷ୍ଟ, ନଷ୍ଟ ହୋଇ ପଡ଼ୁଅଛି । ପିତା ମାତା ଓ ଅଗ୍ରର୍ଯ୍ୟ-ଏହି ପ୍ରଜାପତି ମାନଙ୍କର ସନ୍ତାନମାନଙ୍କ ବ୍ରହ୍ମଚର୍ଯ୍ୟ ଓ ବିଦ୍ୟାଣେଷା ପ୍ରତି ପ୍ରଥମ ଦୃଷ୍ଟି ଦେବାକଥା । ଏହି ପ୍ରଧାନ କର୍ତ୍ତବ୍ୟ ଛାଡ଼ ଯୁବକ ଯୁବତୀ ମାନଙ୍କ ବ୍ୟକ୍ତିଗତ ଅଧିକାରରେ ଏମାନେ ଅଯଥା ହସ୍ତକ୍ଷେପ କରିଥାନ୍ତି । ଏହି ଅଭିଭାବକତାରେ ଏମାନେ ଧର୍ମ ଗର୍ଭ ୨ ଅନେକ ଜାଗାରେ ମାଙ୍କଡ଼ ପ୍ରସୂତ କରିଥାନ୍ତି ।

ବରକନ୍ୟା ନିର୍ବାଚନ କ୍ଷେତ୍ର ଏତେଦୂର ସଂକୀର୍ଣ୍ଣ ସୀମାରେ ଅବଦ୍ଧ ହେଲାଣି ଯେ, ଦେଶ ଜାତି କୁଳ ଓ ସମ୍ପ୍ରଦାୟରୁ ଏବେ ସାହି ପଡ଼ଶା ପର୍ଯ୍ୟନ୍ତ ଆସିଲଣି । ମୂଳି ଜାତି ମୂଳି ସହସ୍ର ଉପଜାତିରେ ବିଭକ୍ତ ହେଲାଣି । ଏହି ଉପଜାତି ବା ଅପଜାତି ମଧ୍ୟରେ ବିବାହ ସମ୍ବନ୍ଧ ନିବନ୍ଧ କରାଯାଏ । କୌଣସି୨ କୁଳ ବା ସମ୍ପ୍ରଦାୟରେ ଲୋକସଂଖ୍ୟା କେତେ ହଜାରରୁ ବେଶୀ ନୁହନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଆଜୀବନ ଅବିବାହିତ ରହନ୍ତି ନତୁବା ଅତ୍ୟନ୍ତ ନିକଟ ସମ୍ପର୍କରେ ବିବାହ ସମ୍ବନ୍ଧ ସ୍ଥାପନ କରନ୍ତି । କରଣ ଓ କୁମୁଟି ଜାତିର ଲୋକ ନିତାନ୍ତ ସ୍ୱଳ୍ପ । କୁମୁଟି ଜାତିର ଲୋକେ ଭାଣିଜୀ ଓ ମାମୁଁ ଝିଅ ଭଉଣୀ ବିବାହ କରିବାକୁ ବାଧ୍ୟ ହୋଇଥାନ୍ତି । ଅନେକ ପିତାମାତା ବହୁ ଯତ୍ନରେ ଲାଳନ ପାଳନ କରିଥିବା ପ୍ରାଣ ପ୍ରତିମା କନ୍ୟାକୁ ନିଜ ଗୋଷ୍ଠି ମଧ୍ୟରେ ଉପଯୁକ୍ତ ବର ପାତ୍ର ନପାଇ ଅପାତ୍ରରେ ପ୍ରଦାନ କରିଥାନ୍ତି । ଏହି ଅସମାନ ବିବାହ ବନ୍ଧନ ଫଳରେ ପତି ପତ୍ନୀ ଉଭୟେ ଅଜୀବନ ଦୁଃଖ କ୍ଲେଶ ଭୋଗ କରନ୍ତି ଏବଂ ପିତାକୁଳ ଓ ଶ୍ୱଶୁର କୁଳ ବହୁ ଶୋକ ସନ୍ତାପର କାରଣ ହୁଅନ୍ତି । ଅନେକ ଯୁବକ ଧର୍ମନିଷ୍ଠ ମନୋମିଳନ ଯୋଗୁଁ, ଗୁଣ କର୍ମ ଓ ସ୍ୱଭାବର ସାମଞ୍ଜସ୍ୟ ହେତୁ କିମ୍ବା ରୂପ ଲାବଣ୍ୟ ବା ଧନ ସମ୍ପଦ ଲାଳସାରୁ କିଅବା କୌଣସି ଅଭାବ ପ୍ରଯୁକ୍ତ ଆପଣାର କୁଳ, ଗୋଷ୍ଠି, ଅଭିଜାତି ବା ଉପଜାତିରୁ ବହିର୍ଭୂତ କୌଣସି ଅପରଜାତିରୁ କନ୍ୟା ଗ୍ରହଣ କରିଛନ୍ତି, ଏମାନେ ସେଥିପାଇଁ ଆପଣା ପୈତୃକ ସମ୍ପତ୍ତିରୁ ବଞ୍ଚିତ ରହନ୍ତି, ଏହିପରି ଅନେକ ଲୋକ ସାଧୁ ସ୍ୱଭାବ, ସତ୍‌କର୍ମପରାୟଣ ଓ ଧାର୍ମିକ ଥିଲେହେଁ ପୁଣି ଅନେକ ପରିବାର ଓ ସନ୍ତାନ ବର୍ଗ ସମାଜରୁ ପୁଣି ପୈତୃକ ସମ୍ପତ୍ତିରୁ ବିତାଡ଼ିତ ହୋଇ

ଅଗତ୍ୟା ଧର୍ମାନ୍ତର ଗ୍ରହଣ କରନ୍ତି । ଏବଂବିଧ ନାନା କାରଣରୁ ହିନ୍ଦୁ ସଂଖ୍ୟା ଦିନକୁ ଦିନ ହ୍ରାସପ୍ରାପ୍ତ ହେଉଅଛି ।

ଅତଏବ ଯଦତ ମାନନୀୟ ପଟେଲ ମହୋଦୟଙ୍କ ପ୍ରସ୍ତାବିତ ଅନ୍ତର୍ଜାତୀୟ ବିବାହ ବ୍ୟବସ୍ଥା ଆଇନାନୁମୋଦିତ ହୁଅନ୍ତା ତେବେ ବ୍ୟକ୍ତିଗତ ଉନ୍ନତି ସଙ୍ଗେ ହିନ୍ଦୁ ଧର୍ମର ଅଭ୍ୟୁଦୟ ହୁଅନ୍ତା । ଏହି ବ୍ୟବସ୍ଥାରେ କାହାର ପ୍ରତି ବାଧ୍ୟ ବାଧକତା ନାହିଁ, ବହିର୍ଜାତିରୁ କନ୍ୟା ଗ୍ରହଣ କରିବା କେବଳ ଇଚ୍ଛାଧୀନ । ଏହି ଆଇନ ବଳରେ ଯେ ଉଚ୍ଚ ନୀଚ ଜାତିଭେଦ ନିର୍ବିଶେଷରେ ସର୍ବତ୍ର ଅନ୍ତର୍ଜାତିକ ବିବାହ ପ୍ରଚଳିତ ହେବ ଏହି ଆଶଙ୍କା ନିତାନ୍ତ ଅମୂଳକ । ଯାପାନ, ଭାରତ ପ୍ରଭୃତି ଦେଶରେ ଅନ୍ତର୍ଜାତୀୟ ବିବାହ ପ୍ରତି ଆଇନଗତ ଆପତ୍ତି ନ ଥିଲେହେଁ ଅସମାନ ବା ଅବୈଧ ବିବାହ ନାହିଁ କି ଅତ୍ୟନ୍ତ ବିରଳ । ସେ ଯାହାହେଉ ଗୁଣ କର୍ମ ଓ ସ୍ୱଭାବାନୁସାରେ ଅନ୍ତର୍ଜାତିକ ବିବାହ ପ୍ରଚଳିତ ହେବାହିଁ ଶ୍ରେୟସ୍କର ।

—o—

## ଜାତିସ୍ୱରୂପ ଲକ୍ଷଣ ।

ମନୁଷ୍ୟମାନେ ଚତୁରାତର ଗୁଣଜାତିରେ ବିଭକ୍ତ । ଯଥା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ।

ବ୍ରାହ୍ମଣୋଽସ୍ୟ ମୁଖ ମାସୀଦ୍ ବାହୁ ରାଜନ୍ୟଃ କୃତଃ ।
ଉରୂ ତଦସ୍ୟ ଯଦ ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ ।

ପରମାତ୍ମା ପରମେଶ୍ୱର ଲୋକମାନଙ୍କୁ ଗୁଣ ଜାତିରେ ବିଭକ୍ତ କରିଛନ୍ତି । ଯଥା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଅଟନ୍ତି ପରମାତ୍ମା ପରମେଶ୍ୱର । ସେହି ପରମେଶ୍ୱର ବିରାଟ ପୁରୁଷ ନାମରେ ଅଭିହିତ । ଏହି ବିଶ୍ୱସଂସାରର ପ୍ରାଣୀ ସମୂହ ସେହି ବିରାଟ ପୁରୁଷ ସ୍ୱରୂପ । ଯେଉଁମାନେ ସେହି ବିରାଟ ପୁରୁଷଙ୍କର ମୁଖ ସ୍ୱରୂପ ସେମାନେ ହୋଇଲେ ବ୍ରାହ୍ମଣ, ଯେଉଁମାନେ ବାହୁ ସ୍ୱରୂପ ସେମାନେ କ୍ଷତ୍ରିୟ, ଯେଉଁମାନେ ଉରୁ ସେମାନେ ବୈଶ୍ୟ ଏବଂ ଯେଉଁମାନେ ପାଦ ସେମାନେ ଶୂଦ୍ର । ଯେଉଁମାନେ ମୁଖୋଚିତ ଅର୍ଥାତ୍ ମୁଖର ବା ମୁଖରେ କାର୍ଯ୍ୟ କରନ୍ତି ସେମାନେ ବ୍ରାହ୍ମଣ, ଯେଉଁମାନେ ବାହୁପର ଅର୍ଥାତ୍ ବାହୁଦ୍ୱାରା କାର୍ଯ୍ୟ କରନ୍ତି ସେମାନେ କ୍ଷତ୍ରିୟ, ଏହିପରି ଯେଉଁମାନେ ଉରୁର କାର୍ଯ୍ୟ କରନ୍ତି ସେମାନେ ବୈଶ୍ୟ ଏବଂ ଯେଉଁ

ମାନେ ପାପର କାର୍ଯ୍ୟ କରନ୍ତି ସେମାନେ ଶୂଦ୍ର । ଯେଉଁମାନେ ବିଦ୍ୱାନ୍ ଏବଂ ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନାଦି କର୍ମ କରନ୍ତି, ସେମାନେ ବ୍ରାହ୍ମଣ, ଯେଉଁମାନେ ବୀର ଶୂର ଏବଂ ଯୁଦ୍ଧ କରି ପ୍ରଜାପୁଞ୍ଜଙ୍କୁ ଅପଦରୁ ରକ୍ଷା କରନ୍ତି ସେମାନେ କ୍ଷତ୍ରିୟ, ଯେଉଁମାନେ କୃଷି ବାଣିଜ୍ୟାଦି ବାଣିଜ୍ୟ କରନ୍ତି, ଖାଦ୍ୟ ପେୟ ପଦାର୍ଥ ଯୋଗାନ୍ତି ସେମାନେ ବୈଶ୍ୟ, ପୁଣି ଯେଉଁମାନେ ସେବା ଶୁଶ୍ରୂଷାକର ଉକ୍ତ ତିନି ଜାତିର କାର୍ଯ୍ୟରେ ସହାୟତା କରନ୍ତି ସେମାନେ ଶୂଦ୍ର । ପୁଣି ଯେଉଁମାନେ ବେଦପାରଗ ସେମାନେ ବ୍ରାହ୍ମଣ, ଯେଉଁମାନେ ବିଜୟାଭିଳାଷୀ, ସେମାନେ କ୍ଷତ୍ରିୟ; ଯେଉଁମାନେ ଧନ ଜନ ସମ୍ପଦ ସମ୍ପନ୍ନ ସେମାନେ ବୈଶ୍ୟ, ପୁଣି ଯେଉଁମାନେ ସୁଖାଶୀ ସେମାନେ ଶୂଦ୍ର ।

ଅଧ୍ୟାପନମଧ୍ୟୟନଂ ଯଜନଂ ଯାଜନଂ ତଥା
ଦାନଂ ପ୍ରତିଗ୍ରହଶ୍ଚୈବ ବ୍ରାହ୍ମଣାନାମ କଳ୍ପୟତ୍ । ମନୁ । ।
ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବ ମେବଚ
ଜ୍ଞାନଂ ବିଜ୍ଞାନ ମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜଂ । ଗୀତା ।

ବ୍ରାହ୍ମଣମାନଙ୍କର ଏହି ଷଟ୍ କର୍ମ:-(୧) ବ୍ରାହ୍ମଣମାନେ ପୁରୁଷ ଓ ସ୍ତ୍ରୀ ହୋଇଥିଲେ ବିଧ ବିଦ୍ୟାଧ୍ୟୟନ କରି ପୂର୍ଣ୍ଣ ବିଦ୍ୱାନ ହେବେ (୨) ଏମାନେ ଲୋକମାନଙ୍କୁ, ପୁରୁଷ ପୁରୁଷଙ୍କୁ ଏବଂ ସ୍ତ୍ରୀ ସ୍ତ୍ରୀଲୋକମାନଙ୍କୁ, ନିଷ୍କପଟ ଓ ନିରପେକ୍ଷ ଭାବରେ ପ୍ରୀତି ପୂର୍ବକ ଶିକ୍ଷା ଦେବେ (୩) ଅଗ୍ନି ହୋମାଦି ଯଜ୍ଞ ନିଜେ କରିବେ ଏବଂ (୪) ଲୋକଙ୍କ ଦ୍ୱାରା କରାଇବେ (୫) ବିଦ୍ୟା ପୁଣି ଅନ୍ନବସ୍ତ୍ର ସୁବର୍ଣ୍ଣାଦି ଧନ ସତ୍ପାତ୍ରରେ ଦାନ କରିବେ ପୁଣି (୬) ଯେଉଁ ଗୃହସ୍ଥ ଲୋକ ସନ୍ମାର୍ଗ ଓ ନ୍ୟାୟରେ ଧନୋପାର୍ଜନ କରନ୍ତି ସେମାନଙ୍କଠାରୁ ଦାନ ଗ୍ରହଣ କରିବେ । ଏହି ଛଅ କର୍ମ ମଧ୍ୟରୁ ଅଧ୍ୟୟନ କରିବା, ଯଜ୍ଞ କରିବା ଏବଂ ଦାନ କରିବା, ଏହି ତିନି କର୍ମ ଉତ୍କୃଷ୍ଟ ଧର୍ମ କର୍ମ ଅଟେ, ପୁଣି ପଢ଼ାଇବା ଯଜ୍ଞ କରାଇବା, ଏବଂ ଦାନ ଗ୍ରହଣ କରିବା ନିକୃଷ୍ଟ ବା ଜୀବିକା ଅଟେ । ପ୍ରତିଗ୍ରହଃ ପ୍ରତ୍ୟବରଃ ପ୍ରେତ୍ୟ ବିପ୍ରସ୍ୟ ଗର୍ହିତ—ମନୁ । ଏହି ତିନି ଜୀବିକା ମଧ୍ୟରୁ ପଢ଼ାଇବା ଏବଂ ଯଜ୍ଞ କରାଇବା ଉତ୍ତମକର୍ମ ପୁଣି ପ୍ରତିଗ୍ରହ ବା ଦାନ ଗ୍ରହଣ କରିବା ନୀଚକର୍ମ ଅଟେ ।

ଶମ—ଅର୍ଥାତ୍ ମନକୁ ଅଧର୍ମ କାର୍ଯ୍ୟରେ ନ ଲଗାଇବା ଏବଂ ଅଧର୍ମାଚରଣରୁ ସର୍ବଦା ନିବୃତ୍ତ ରଖିବା । ଦମ—ଇନ୍ଦ୍ରିୟ ଗଣକୁ ଅସଦାଚରଣରୁ ନିବୃତ୍ତ ରଖିବା ଏବଂ ଧର୍ମାଚରଣରେ ପ୍ରବୃତ୍ତ କରିବା । ତପ—ବ୍ରହ୍ମଚର୍ଯ୍ୟ, ବିଦ୍ୟା-

ଧ୍ୟାନ ଓ ଯୋଗାଭ୍ୟାସରେ ସିଦ୍ଧିଲାଭ କରିବା ସକାଶେ ଶୀତ ଉଷ୍ଣ, ନିନ୍ଦା ସ୍ତୁତି, କ୍ଷୁଧା ତୃଷା, ମାନାପମାନାଦି ଦ୍ୱନ୍ଦରେ ବିଚଳିତ ନ ହୋଇ ତାହାସବୁ ସହ୍ୟ କରିବା । ଶୌଚ—ରାଗ ଦ୍ୱେଷ ହିଂସାଦରୁ ମନ ଓ ଆତ୍ମାକୁ ପୁଣି ଜଳାଦିରେ ଶରୀରକୁ ସର୍ବଦା ନିର୍ମଳ ଓ ପବିତ୍ର ରଖିବା । କ୍ଷାନ୍ତି-କ୍ଷମା ଅର୍ଥାତ୍ କେଉଁଣସି ବ୍ୟକ୍ତି ନିନ୍ଦା ଅପମାନାଦି କଲେ ତାହାପ୍ରତି କ୍ରୋଧ ନ କରି କୃପାଳୁ ହେବା । ଆର୍ଜବ—ନିରଭିମାନ ରହିବା ଦମ୍ଭ ଆତ୍ମଶ୍ଲାଘା ଅର୍ଥାତ୍ ଆପଣା ମୁଖରେ ନିଜର ପ୍ରଶଂସା ନକରି ନମ୍ର ସରଳ ଶୁଦ୍ଧ ପବିତ୍ରଭାବ ରଖିବା । ଜ୍ଞାନ—ସକଳ ଶାସ୍ତ୍ର ପଢି ବଡୁର ହୋଇବା ଏବଂ ପଢ଼ାଇବା ପାଇଁ ସାମର୍ଥ୍ୟ ଲାଭ କରିବା । ବିଜ୍ଞାନ—ପୃଥିବୀଠାରୁ ଈଶ୍ୱର ପର୍ଯ୍ୟନ୍ତ ସମସ୍ତ ପଦାର୍ଥ ତତ୍ତ୍ୱ ଜାଣିବା ଏବଂ ତଦ୍ୱାରା ଉପକାର ପାଇବା ଓ ଲୋକଙ୍କର ଉପକାର କରିବା । ଆସ୍ତିକ୍ୟ—ପରମେଶ୍ୱର, ବେଦ ଧର୍ମ, ପରଲୋକ ପରଜନ୍ମ, ପୂର୍ବଜନ୍ମ, କର୍ମଫଳ ଓ ମୁକ୍ତିରେ ଆସ୍ଥାବାନ୍ ହେବା । ଏହି ନଅ ପ୍ରକାର ଗୁଣ ଓ କର୍ମଯୁକ୍ତ ହେବା ଅର୍ଥାତ୍ ଗୁଣ କର୍ମ ଓ ସ୍ୱଭାବରେ ସବୁଠାରୁ ଉତ୍ତମ ହେବା । ଯେଉଁ ବ୍ୟକ୍ତିଠାରେ ଏହିସବୁ ଗୁଣ କର୍ମ ଓ ସ୍ୱଭାବ ବିଦ୍ୟମାନ ସେହି ବ୍ୟକ୍ତି କେବଳ ବ୍ରାହ୍ମଣ ବା ବ୍ରାହ୍ମଣୀ ପଦବାଚ୍ୟ । ମନୁଷ୍ୟ ମଧ୍ୟରେ ଏହିମାନେ କେବଳ ବ୍ରାହ୍ମଣ ବର୍ଣ୍ଣର ଅଧିକାରୀ । ଏହି ବର୍ଣ୍ଣ ମଧ୍ୟରେ ପରସ୍ପର ଗୁଣ, କର୍ମ ଓ ସ୍ୱଭାବ ମିଳାଇ ଦେଖି ବିବାହ କରିବାକୁ ହୁଏ ।

ପ୍ରଜାନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନ ମେବଚ ।<br>
ବିଷୟେଷ୍ୱ ପ୍ରସକ୍ତିଶ୍ଚ କ୍ଷତ୍ରିୟସ୍ୟ ସମାସତଃ । ମନୁ ।<br>
ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେଚାପ୍ୟ ପଳାୟନମ୍ ।<br>
ଦାନମୀଶ୍ୱର ଭାବଶ୍ଚ କ୍ଷାତ୍ରକର୍ମ ସ୍ୱଭାବଜଂ । ଗୀତା ।

ଦୀର୍ଘ ବ୍ରହ୍ମଚର୍ଯ୍ୟଦ୍ୱାରା ସାଙ୍ଗୋପାଙ୍ଗ ବେଦାଦି ଶାସ୍ତ୍ର ପଢିବା, ଅଗ୍ନିହୋତ୍ରାଦି ଯଜ୍ଞକରିବା, ସୁପାତ୍ରରେ ବିଦ୍ୟା ଧନ ରତ୍ନାଦି ଦାନକରିବା ପୁଣି ପ୍ରଜାମାନଙ୍କ ଉତ୍ପନ୍ନ-ହେବା ଏବଂ ସେମାନଙ୍କୁ ସର୍ବଦା ସର୍ବପ୍ରକାର ଲାଳନ ପାଳନ କରିବା, କ୍ଷତ୍ରିୟର ଧର୍ମ ଅଟେ ପୁଣି ଶସ୍ତ୍ର ବିଦ୍ୟା ଶିକ୍ଷାଦେବା, ନ୍ୟାୟାନୁସାରେ ଦଣ୍ଡ ଦାନରେ ନିଯୁକ୍ତହେବା ଏବଂ ସୈନିକ ଦଳଭୁକ୍ତ ହେବା ତାହାର ଜୀବିକା ଅଟେ । ବିଷୟରେ ଅନାସକ୍ତ ହୋଇ ସର୍ବଦା ଜିତେନ୍ଦ୍ରିୟ ରହିବା, ଲୋଭ ବ୍ୟଭିଚାର ମଦ୍ୟପାନାଦି ଦୁର୍ବ୍ୟସନରୁ ପୃଥକ୍-ରହି ବିନୟ ଓ ସୁଶୀଳତାଦି ଶୁଭଗୁଣ ଯୁକ୍ତହେବା, ସଂଗ୍ରାମ, ଶସ୍ତ୍ରପ୍ରହାର ଓ ମୃତ୍ୟୁରେ ଭୀତ ନହେବା, ଉତ୍ତମ ପ୍ରତାପଶାଳୀ ହେବା ଏବଂ କାହାରଠାରେ ଦୀନତା ଓ ଭୀରୁତା ପ୍ରକାଶ ନକରିବା, ତୃକେତେ ଆପଦ ବିପଦ ଦୁଃଖ କ୍ଲେଶ ଉପସ୍ଥିତ ହେଲେହେଁ ଧୈର୍ଯ୍ୟ-

ଧ୍ୟାଗ୍ନ କରିବା, ସଂଗ୍ରାମ ବାହୁଯୁଦ୍ଧ, ବିଗ୍ରହ ଓ ଦୂତକାର୍ଯ୍ୟରେ ଅତି ଚତୁର ବୁଦ୍ଧି-ମାନ ହେବା, ଯୁଦ୍ଧକ୍ଷେତ୍ରରେ ସର୍ବଦା ଉଦ୍ୟତ ରହିବା, କଦାପି ଶତ୍ରୁର ବଶୀଭୂତ ନହେବା, ପୁଣି ଈଶ୍ୱର ଯେପରି ଦୟାକରି ଲୋକମାନଙ୍କୁ ପୁତ୍ରବତ୍ ପାଳନ କରନ୍ତି, ପକ୍ଷ-ପାତ ନକରି ଧର୍ମାଧର୍ମ ବିଗ୍ରହକରନ୍ତି; ଲୋକମାନଙ୍କୁ ଯଥା ଯୋଗ୍ୟ ସୁଖ ଦୁଃଖ ରୂପ ଫଳ ପ୍ରଦାନ କରନ୍ତି, ପୁଣି ଆପଣାର ସର୍ବଜ୍ଞତାଦି ଗୁଣଯୋଗୁଁ ସର୍ବାନ୍ତର୍ଯାମୀ ସ୍ୱରୂପ ସମସ୍ତ-ଙ୍କର ଭଲମନ୍ଦ ସବୁକର୍ମ ଜାଣନ୍ତି, ସେହିପରି ରାଜାମାନେ ଆପଣା ପ୍ରଜାମାନଙ୍କୁ ପାଳନ କରିବେ, ଗୁପ୍ତ ଚର ନିଯୋଗ ଦ୍ୱାରା ପ୍ରଜାବର୍ଗ ଓ ରାଜପୁରୁଷମାନଙ୍କର ଭଲ ମନ୍ଦ ସବୁ କଥା ବୁଝୁଥିବେ, ଦିନ ରାତି ନ୍ୟାୟବିଗ୍ରହ କରି ପ୍ରଜାମାନଙ୍କୁ ସୁଖଦେଇ ଶିଷ୍ଟପାଳନ, ଦୁଷ୍ଟର ଦଣ୍ଡବିଧାନ କରିବେ, ବିବିଧପ୍ରକାର ଯତ୍ନକରି ଆପଣା ଶରୀରକୁ ନିରୋଗ, ବଳିଷ୍ଠ, ଦୃଢ଼ ଓ ତେଜସ୍ୱୀ ରଖିବେ ଏବଂ ନ୍ୟାୟ ଧର୍ମ ମାର୍ଗରେ ଚାଲି ଆତ୍ମାକୁ କୃତକୃତ୍ୟ କରିବେ ଇତ୍ୟାଦି ଗୁଣ ଓ କର୍ମର ସଂଯୋଗ ଯେଉଁ ବ୍ୟକ୍ତିଠାରେ ବର୍ତ୍ତମାନ ସେହି ବ୍ୟକ୍ତି କେବଳ ଅଟେ କ୍ଷତ୍ରିୟ ବା କ୍ଷତ୍ରିୟା । ଏହି ବର୍ଣ୍ଣ ମଧ୍ୟରେ ଯେଉଁ ବ୍ୟକ୍ତି-ମାନଙ୍କର ଉକ୍ତ ଗୁଣ କର୍ମ ଓ ସ୍ୱଭାବର ମେଳ ଦେଖାଯାଏ, ସେହିମାନେ କେବଳ ପବିତ୍ର ବିବାହ ସୂତ୍ରରେ ଆବଦ୍ଧହେବେ । ଯେପରି ବ୍ରାହ୍ମଣମାନେ ପୁରୁଷମାନଙ୍କୁ ଓ ବ୍ରାହ୍ମଣୀମାନେ ସ୍ତ୍ରୀଲୋକଙ୍କୁ ବିଦ୍ୟାଶିକ୍ଷା ଦିଅନ୍ତି, ସେହିପରି ରାଜପୁରୁଷମାନେ ପୁରୁଷମାନଙ୍କର ଓ ରାଜସ୍ତ୍ରୀମାନେ ସ୍ତ୍ରୀଲୋକର ନ୍ୟାୟନିଷ୍ପତ୍ତି କରନ୍ତୁ । ଯେଉଁ କ୍ଷତ୍ରିୟମାନଙ୍କର ରାଜ୍ୟନାହିଁ, ସେମାନେ ରାଜ୍ୟରେ ଅନ୍ୟାନ୍ୟ ରାଜକାର୍ଯ୍ୟରେ ନିଯୁକ୍ତ ରହିବା ଉଚିତ ।

ପଶୁନାଂ ରକ୍ଷଣଂ ଦାନମିଜ୍ୟା ଧ୍ୟୟନମେବଚ
ବଣିକ ପଥଂ କୁସୀଦଞ୍ଚ ବୈଶ୍ୟସ୍ୟ କୃଷିମେବଚ । ମନୁ ।

ବେଦାଦି ଶାସ୍ତ୍ର ପଢ଼ିବା, ଅଗ୍ନିହୋତ୍ରାଦି ଯଜ୍ଞକରିବା ଏବଂ ଅନ୍ନାଦି ଦାନ-କରିବା ଏହି ତିନିକର୍ମ ବୈଶ୍ୟର ଧର୍ମଅଟେ । ପୁଣି ଗୋମେଷାଦିର ପାଳନ, ଦୁଗ୍ଧାଦି ବିକ୍ରୟ କରିବା, ନାନାଦେଶର ଭାଷା, ହିସାବ, ଭୂଗର୍ଭ ବିଦ୍ୟା, ବୀଜରଗୁଣ ଏବଂ ସକଳ ପଦାର୍ଥର ଭାବାଭାବ ଜାଣିବା, ଋଣଦେଇ କଲନ୍ତର ଗ୍ରହଣ କରିବା, କୃଷି ବ୍ୟବସାୟ କରିବା ଏବଂ ଅନ୍ନ ଆଦି ପଦାର୍ଥର ସୁରକ୍ଷା କରିବା—ଏହି ସବୁକର୍ମ ବୈଶ୍ୟର ଜୀବିକା ଅଟେ । ଏହି ଗୁଣ ଓ କର୍ମ ଯେଉଁ ବ୍ୟକ୍ତିଠାରେ ବିଦ୍ୟମାନ ସେହିକେବଳ ବୈଶ୍ୟ । ଏହି ଗୁଣ ଓ କର୍ମର ମେଳଦେଖି ବିବାହ କରିବା ଉଚିତ ।

ଏକମେବହି ଶୂଦ୍ରସ୍ୟ ପ୍ରଭୁଃକର୍ମ ସମାଦିଶତ୍
ଏତେଷାମେବ ବର୍ଣ୍ଣାନାଂ ଶୁଶ୍ରୂଷା ମନସୂୟୟା । ମନୁ ।

ଯେଉଁମାନେ ବିଦ୍ୟାବିହୀନ, ଯେଉଁମାନଙ୍କୁ କେତେ ପଢ଼ାଇଲେହେଁ ପାଠ ଆସେ ନାହିଁ, ଯେଉଁମାନେ ପୁଷ୍ଟ, ବଳିଷ୍ଠ ଏବଂ ସେବାକାର୍ଯ୍ୟରେ କୁଶଳ ସେମାନେ ଅଟନ୍ତି ଶୂଦ୍ର । ଉକ୍ତ ତିନିବର୍ଣ୍ଣର ସେବା ଶୁଶ୍ରୂଷା କରିବାହିଁ ସେମାନଙ୍କର ଧର୍ମ । ଅସୂୟା ରହିତ ଓ ପ୍ରୀତିଯୁକ୍ତ ହୋଇ ସେବା କରିବାହିଁ ସେମାନଙ୍କର ପରମଧର୍ମ । ଏହି ମୂର୍ଖତ୍ୱାଦି ଗୁଣ ଓ ସେବା କର୍ମ ଯେଉଁ ଲୋକଠାରେ ଥାଏ ସେହିଲୋକ କୋଲାଏ ଶୂଦ୍ର । ଏହି ଗୁଣକର୍ମ ପରୀକ୍ଷାକରି ଏମାନଙ୍କ ମଧ୍ୟରେ ବିବାହ, ପୁଣି ଏମାନଙ୍କୁ ଯଥା ଯୋଗ୍ୟ ଅଧିକାର ଦେବା ଉଚିତ ।

ଏହି ଗୁଣ, କର୍ମ, ସ୍ୱଭାବ ଦେଖି ଲୋକମାନେ ଚାରିବର୍ଣ୍ଣରେ ବିଭକ୍ତ । ଯେଉଁ ଦେଶରେ ଏହି ଗୁଣକର୍ମାନୁସାରେ ବର୍ଣ୍ଣବିଭାଗ କରାଯାଏ, ପୁଣି ବର୍ଣ୍ଣମଧ୍ୟରେ ଗୁଣକର୍ମ ଓ ସ୍ୱଭାବର ମେଳାମେଳି ପରୀକ୍ଷା କରି ସ୍ତ୍ରୀ ପୁରୁଷ ମଧ୍ୟରେ ବିବାହ କରାଯାଏ । ସେହି ଦେଶ ଧନ୍ୟ ଏବଂ ସେହି ଦେଶର ଲୋକ ସମୁଦାୟ ଉନ୍ନତ ଓ ଐଶ୍ୱର୍ଯ୍ୟଶାଳୀ ହୁଅନ୍ତି । କିନ୍ତୁ ଏହାମଧ୍ୟ ମନେ ରଖିବାକୁ ହେବ ଯେ ସାଧାରଣତଃ ଯେଉଁ ବ୍ୟକ୍ତି ଯେଉଁ ବର୍ଣ୍ଣରେ ଜନ୍ମଗ୍ରହଣ କରିଥାଏ ସେହିବ୍ୟକ୍ତି ସେହି ବର୍ଣ୍ଣର ଗୁଣ କର୍ମ ଓ ସ୍ୱଭାବ ଅତି ବିଶେଷ ଭାବରେ ପାଇଥାଏ ।



## ଶାସନୀ ବ୍ରାହ୍ମଣ ପାଚକ ।

କର୍ମରୁ ଧର୍ମ ପୃଥକ ନୁହେ । ପ୍ରତ୍ୟେକ କର୍ମରେ ଧର୍ମ ଅନ୍ତର୍ଗତ । ଖାଇବାରେ, ଶୋଇବାରେ, ପିନ୍ଧିବାରେ, କହିବାରେ ଇତ୍ୟାଦି କାର୍ଯ୍ୟରେ ଧର୍ମ ନିହିତ ଅଛି । ଏହାହିଁ ଧର୍ମର ରୀତି ଗତି ଓ ବିଧି । ଦେବାଳୟରେ, ଗିରିଜାରେ କିମ୍ବା ମସଜିଦରେ ଧର୍ମ ଆବଦ୍ଧ ନୁହେ । ଏହାହିଁ ହିନ୍ଦୁମାନଙ୍କର ଆର୍ଯ୍ୟ ଧର୍ମ । କିନ୍ତୁ କାଳକ୍ରମ ଅନୁସାରେ ଆଜି ହିନ୍ଦୁ ଧର୍ମ ଲକ୍ଷଭ୍ରଷ୍ଟ ହୋଇ ପଡ଼ିଅଛି । ହିନ୍ଦୁର ଧର୍ମ ଆଜି କେବଳ ଅନ୍ନଗତ । ହିନ୍ଦୁର ଜାତି, ନୀତି, ରୀତି, ଧର୍ମ କର୍ମ, ମାନ ମହତ୍ତ୍ୱ, ମର୍ଯ୍ୟାଦା ଇତ୍ୟାଦି କେବଳ ଖାଇବାରେ ଅଛି । ତାହା ମଧ୍ୟ ଫଳାହାର ବା ମିଷ୍ଟାନ୍ନ ସାମଗ୍ରୀରେ ନାହିଁ, କେବଳ ଅନ୍ନ ବା ଭାତ ଛୁଆଁଣରେ ଅଛି । ତୁମ୍ଭେ ସ୍ୱାର୍ଥପର ବା ପରାର୍ଥପରାୟଣ, ସତ କହୁଛ ବା ମିଛ କହୁଛ, ଉଦ୍ୟମୀ ଅଛ କିମ୍ବା ଅଳସୀ ଅଛ, ବିଳାସୀ ଅଛ କିମ୍ବା ସଂଯମୀ ଅଛ—ଏହି ସବୁକଥା କିଛି ବୁଝିବା ଆବଶ୍ୟକ ନାହିଁ । କଣ ଖାଉଛ କିଏ

ରାନ୍ଧନ୍ତି, କାହା ହାତରୁ ଖାଉଛ, ଧର୍ମ ଦେଖିବାକୁ ହେଲେ ଏହାହିଁ ବୁଝିବାର କଥା । ଜାତିରେ ଯେ ବଡ, ସେହିଲୋକ ରାନ୍ଧିଦେଲେ ଖାଇବାପାଇଁ କାହାର କିଛି ଆପତ୍ତି ରହେ ନାହିଁ । ସବୁ ଜାତି ମଧ୍ୟରେ ବ୍ରାହ୍ମଣ ଉତ୍କୃଷ୍ଟ । ନାନାଶ୍ରେଣୀର ବ୍ରାହ୍ମଣ ମଧ୍ୟରେ ଶାସନୀ ଦାକ୍ଷାସୂ ବ୍ରାହ୍ମଣ ସର୍ବୋତ୍କୃଷ୍ଟ ବିବେଚିତ ହୁଏ । ସୁତରାଂ ଶାସନୀ ବ୍ରାହ୍ମଣର ପାଚକତା ସମସ୍ତଙ୍କର ଶିରୋଧାର୍ଯ୍ୟ । ସାମନ୍ତ ବ୍ରାହ୍ମଣ ଘରେ ଲୋକେ ହାତ ଗୋଡ ଅଧୁଆ ଖାଇଯା'ନ୍ତି । ଏମାନଙ୍କ ରନ୍ଧା ଅନ୍ନ ଖାଇଲେ ବଳ, ବୀର୍ଯ୍ୟ, ସାହସ ଓ ଉତ୍ସାହ ସଙ୍ଗେ ଅଧିକ ଧର୍ମ ଜନ୍ମେ ଏବଂ ଶିକ୍ଷା-ଗୁରୁ ଓ ସଦାଗୁରୁ ବଶିଷ୍ଠ ଜାତିଶ୍ରେଷ୍ଠ ହେବାକୁ ହୁଏ । ଅତଏବ ଶାସନୀ ବ୍ରାହ୍ମଣ-ମାନେ ସର୍ବତ୍ର ପାଚକ ନିଯୁକ୍ତ ହେବା ଶ୍ରେୟସ୍କର ।

ଶାସନୀ ବ୍ରାହ୍ମଣମାନେ ଅସଂଖୁଡି ପଦାର୍ଥ ହେଲେ ଯେ କୌଣସି ଲୋକ ପିଣ୍ଡାରେ ପଥ୍ୟ ବସି ଖାଇପିବେ କୌଣସି ଚିନ୍ତାନାହିଁ, କିନ୍ତୁ ସଖୁଡି ସାମଗ୍ରୀ ଅର୍ଥାତ୍ ଭାତ ତିଅଣ ଅନ୍ୟ କାହାଠାରୁ ଗ୍ରହଣ କରନ୍ତି ନାହିଁ । ଏମାନେ ରାନ୍ଧିଥିଲେ ଅନ୍ୟସବୁ ଜାତିର ଲୋକେ ଖାନ୍ତି, କିନ୍ତୁ ଅନ୍ୟ କେହି ରାନ୍ଧିଦେଲେ ଏମାନେ ଖା'ନ୍ତି ନାହିଁ । ଏଥିପାଇଁ ହିନ୍ଦୁ ସମାଜରେ ଏହି ବ୍ରାହ୍ମଣମାନଙ୍କର ଶ୍ରେଷ୍ଠତ୍ୱ ଏବଂ ଜାତ୍ୟାଧିକ୍ୟ । ଅତଏବ ଏହି ବ୍ରାହ୍ମଣମାନେ ଯଦି ପାଚକ ହେବେ ତେବେ ଶାସନୀ ବ୍ରାହ୍ମଣମାନେ ଅନ୍ନ ସକାଶେ ଇତସ୍ତତଃ ବୁଲି ଆଉ ହଇରାଣ ହେବେନାହିଁ, ସେଇଁଠେ ହେଲେ ମୁଠେ ଅନ୍ନ ଖାଇଦେଇ ପୋଡା ପେଟ ଶୀତଳ କରିପାରିବେ ।

ଆଜିକାଲି ଶାସନୀ ବ୍ରାହ୍ମଣମାନେ ଶାସନ ଜମି ବାଡି ସବୁ ବନ୍ଧା ଭାଙ୍ଗି ଖାଇସାରି ଦେଲେଣି, କେବଳ ଯାଚଞ୍ଚା, ଦାନଘର ଓ ପ୍ରେତପଣା ଅନ୍ୱେଷଣରେ ବାରଦ୍ୱାର ବୁଲୁଛନ୍ତି, ପୁଣି ଅବଜ୍ଞାତ, ତିରସ୍କୃତ ହୋଇ ଅର୍ଦ୍ଧଚନ୍ଦ୍ର ପାଇ ଘଉଡା ଖାଇଲେ ହେଁ ଲେସିଝ ଥୋବଡ ହୋଇ ମାଗୁଥାନ୍ତି ନତୁବା ମାନ ଅଭିମାନ, ଗାଳିଗୁଲା କରି ଅଭିଶାପ ଦେଉଥାନ୍ତି । ତଳଲା ପାଣିରେ ଘର ପୋଡେ ନାହିଁ । ଏମାନଙ୍କ ଅଭିଶାପ ପ୍ରତି ଗୃହସ୍ଥର ଭ୍ରୂକ୍ଷେପ ନଥାଏ । ଏମାନଙ୍କର ଯଦି ପୂର୍ବପରି ବିଦ୍ୟା, ବିଜ୍ଞାନ, ବିଭବ, ଧର୍ମକର୍ମ ଇତ୍ୟାଦି ଥା'ନ୍ତା ତେବେ ଏମାନେ ସର୍ବତ୍ର ସେବା ପୂଜା ପାଉଥାନ୍ତେ, ଲୋକେ ଅନ୍ନ-ବସ୍ତ୍ର, ଧନରତ୍ନ ଆଣି ଏମାନଙ୍କ ପାଦତଳେ ଦେଇ ଯାଉଥାନ୍ତେ । " ଆଉ ଲୋଡ଼ିଲେ କାହିଁ ସେକଥା, ପିଠି ଦେଲେ କାହିଁ ପେଟବ୍ୟଥା" ।

ବର୍ତ୍ତମାନ ଅବସ୍ଥାକୁ ଚାହିଁ ବ୍ୟବସ୍ଥା କରିବାକୁ ହେବ । ପୋଡା ପେଟ ସକାଶେ ବାରଦ୍ୱାର ବୁଲିବା, ଅପମାନିତ ହୋଇ ଅର୍ଦ୍ଧଚନ୍ଦ୍ର ପାଇ ଘଉଡା, ଖେଦିଦା

ଯାଇବାଠାରୁ, ପୁଣି ଭିକ୍ଷା ଏବଂ ପରଶ୍ରଦ୍ଧାଦି ନୀଚ ବୃତ୍ତି କରିବାଠାରୁ ପାଚକ ବା ପୂଜାରୀ ବ୍ୟବସାୟ କରିବା ଶ୍ରେୟସ୍କର ନୁହେଁକି ? ମାଗି ଖାଇବା ଠାରୁ ଲଗି ଖାଇବା ଶ୍ରେୟସ୍କର ନୁହେଁକି ? ପୁଣି ପାଚକ ବା ପୂଜାରୀ ହେଲେ ଅଧିକ ଆଦର ଓ ସମ୍ମାନ ପାଇବାର କଥା । ଏହି ବ୍ୟବସାୟ ଦ୍ୱାରା ଶାସନୀ ବ୍ରାହ୍ମଣର ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସମ୍ମାନ ହେବ, ଆଭିଜାତ୍ୟ ଗୌରବ ସଂରକ୍ଷିତ ହେବ ଏବଂ ଅନ୍ନ ବସ୍ତ୍ରାଭାବ ବହୁ ପରିମାଣରେ ଦୂରୀଭୂତ ହେବ । ଆଜି ଏକା ଲଭ—ସଙ୍ଗୁଡ଼ ଅନ୍ନ ଯେତେବେଳେ ହେଉଛି ଜାତି, ବର୍ଣ୍ଣ ଓ ଧର୍ମର ନିୟାମକ, ପରିପାଳକ ଓ ସଂସ୍ଥାପକ ସେତେବେଳେ ଉଚ୍ଚ ଜାତୀୟ ଶାସନୀ ବାମ୍ଭଣ ପାଚକ—ପୂଜାରୀ ହେଲେ ଖାଇବା ପିଇବା ବିଷୟ ଯେଣୁ କାହାରିକୁ ଅପ୍ରତିଭ ହେବାକୁ କିବା ଅଭାବ ଅସୁବିଧା ଭୋଗ କରିବାକୁ ପଡ଼ିବ ନାହିଁ ।

---

# ନାରୀ କି ଜନ୍ତୁ ?

ମାତୃଭୂମି ମାତୃଭାଷା ନିମନ୍ତେ ଦେଶର ନେତାମାନେ ମାନ୍ୟବର ସଦସ୍ୟବର୍ଗ ଏବଂ ଅଧିବକ୍ତାବୃନ୍ଦ କି ଚିନ୍ତା କରନ୍ତି, କେତେ ଲେକ୍‌ଚର କରନ୍ତି, କେତେ ଅସ୍ଥାନ ଆନ୍ଦୋଳନ କରନ୍ତି, କିନ୍ତୁ ପ୍ରକୃତ ମାତୃ ଜାତିର ଖବର କେହି ବୁଝନ୍ତି ନାହିଁ । ଯୁବତୀ ସ୍ତ୍ରୀମାନେ ଶ୍ୱଶୁରାଳୟ କାରାବାସରେ ବନ୍ଦୀ ରହନ୍ତି । ଏମାନେ ରୁଦ୍ଧ ଗୃହର ଅନ୍ଧାର କୋଣେ ରହନ୍ତି, ସ୍ୱାସ୍ଥ୍ୟ ସାଧକ ସୂର୍ଯ୍ୟାଲୋକରୁ, ନିର୍ମଳ ମୁକ୍ତବାୟୁ ସେବନରୁ ଏବଂ ସ୍ୱଚ୍ଛସଲିଳା ସ୍ରୋତସ୍ୱତୀ ଜଳ ଅବଗାହନରୁ ଚିରକାଳ ବଞ୍ଚିତ ରହନ୍ତି । ନୂଆ ବୋହୂ ଗୁଡ଼ିକ ଘରର ଚନ୍ଦାଜନ୍ତୁ, ଦାଣ୍ଡରେ ଚନ୍ଦାଜନ୍ତୁ, ବାଡ଼ିରେ ପଶୁଜନ୍ତୁ । ଶାଶୁ, ଶ୍ୱଶୁର, ନଣନ୍ଦ, ଦେଢ଼ଶୁର ଜେଜୀଙ୍କର ଇତ୍ୟାଦି ଲୋକଙ୍କ ପାଇଁ ରନ୍ଧା ବାଢ଼ିଦେବା ଏବଂ ସ୍ୱାମୀର ପାଦସେବା ପ୍ରଭୃତି ଚରିତାର୍ଥ କରିବା ଅଟେ ଯୁବତୀ ବଧୂର ପ୍ରଧାନ ଏବଂ ଅପରିହାର୍ଯ୍ୟ ବ୍ୟବସାୟ । ଯୁବତୀ ବଧୂଟି ଜ୍ୱର, କାଶ, ପେଟବ୍ୟଥା, ମୁଣ୍ଡବ୍ୟଥା ଇତ୍ୟାଦି ରୋଗରେ ପ୍ରପୀଡ଼ିତ ଥାଉ, ସାତ ଆଠ ମାସର ଗର୍ଭବତୀ ହୋଇଥାଉ, ପୁତ୍ରକନ୍ୟା ଶୋକରେ ଅଧୀର ହୋଇ ଥାଉ, ସେହି କେବଳ ରାନ୍ଧିବ । ସାଧୁସଙ୍ଗ କରିବା, ପୋଥି ପଢ଼ିବା ଏବଂ ଦେବାର୍ଚ୍ଚନ କରିବା, ଏ ସବୁ ତାକୁ ମନା । ନୂଆବୋହୂମାନେ ଦୁଇ ତିନିବର୍ଷରେ ଥରେ ମାତ୍ର ଖଣ୍ଡେ ମାଏ ବାପ ଘରକୁ ଯାଇ ଏହି କାରାବାସରୁ ଓ କଷ୍ଟରୁ ଟିକିଏ ମୁକ୍ତିଲାଭ କରିଥାନ୍ତି । ଶ୍ୱଶୁର ଘରେ ନୂଆ ବୋହୂଟି ସମସ୍ତଙ୍କର ଦାସୀ ରୋଷେଇଆଣୀ, ଦିନରାତି ହାଣ୍ଡିଶାଳେ ଗଧୁଣୀ ପରି କାମକରୁଥିବ, ନଡ଼ିବା ମୂଷା, ବରାଡ଼ି ପରି

ଲୁଚି ବସିଥିବ, ପୁଣି ରାତିହେଲେ ନିଷ୍ଠୁର ପାଷଣ୍ଡ ପତିର ପାଶବ ଅତ୍ୟାଚାର ସହ୍ୟ କରୁଥିବ । ନବ ଯୁବତୀ ନୂଆବହୁର ଯଦି ପାଶବ ପ୍ରବୃତ୍ତି ଟିକିଏ ପ୍ରବଳ ନଥାନ୍ତା ତେବେ ସେ ଶ୍ୱଶୁରାଳୟରେ ଦିନେ କାଳ କାଟି ପାରନ୍ତାନାହିଁ, ଅନେକେ ଆତ୍ମହତ୍ୟା କରୁଥାନ୍ତା । ପତିଭକ୍ତି, ଶାଶୁ ଶ୍ୱଶୁରସେବା ଇତ୍ୟାଦି ଯେ ଯାହା କହୁ ପଛେ ପାଶବ ସଙ୍ଗ ଲିପ୍ସା କେବଳ ତାହାକୁ ଶଶୁରାଳୟର ଶ୍ୱବୃତ୍ତି ଅବଲମ୍ବନ ଏବଂ ଅତ୍ୟାଚାର ଓ ନିର୍ଯ୍ୟାତନ ମଧ୍ୟରେ ଅବସ୍ଥାନ ଶକ୍ତି ପ୍ରଦାନ କରେ । ସେହି ତରୁଣୀ ପକ୍ଷରେ ସ୍ୱାମୀ ଶରୀର ସଙ୍ଗ ଲାଳସା କେବଳ ଶ୍ୱଶୁରାଳୟର ନିଷ୍ଠୁର ପାଷଣ୍ଡ ଅତ୍ୟାଚାର-ସାଗରର ଏକମାତ୍ର ତରଣୀ । ଯେଉଁ ଗୃହରେ ଅବରୋଧ ପ୍ରଥା ଅତି ପ୍ରବଳ ସେହିଠାରେ ନବୀନା କାମିନୀ ଅପଣାର ଯୁବସ୍ୱାମୀ ଗୃହସ୍ଥଠାରୁ ଦେହ ସଙ୍ଗବିନା ଅନ୍ୟ ସଙ୍ଗ, ଶିକ୍ଷା, ଦୀକ୍ଷା ଇତ୍ୟାଦି ଗ୍ରହଣ କରିବାକୁ ଅବକାଶ ପାଏ ନାହିଁ ।।

—୦—

## ବିବାହ ନିର୍ବନ୍ଧ ।

ସେଦିନ ବିବାହ ନିର୍ବନ୍ଧ ହେଲାବେଳେ ମତେ କେହି ଜଣେ ଡାକିଥିଲେ । ମୁଁ ଯାଇଥିଲି । କନ୍ୟା ପିତା ବର ପିତା ଉଭୟ ପକ୍ଷରୁ ଦୁଇ ପୁରୋହିତ ଏବଂ ଅନ୍ୟାନ୍ୟ କେତେକ ଜଣ ଭଦ୍ରଲୋକ ଉପସ୍ଥିତ ଥିଲେ । କନ୍ୟାଦାନ ଓ କନ୍ୟା ଗ୍ରହଣ ବିଷୟରେ ଉଭୟ ପକ୍ଷର ବାଗ୍‌ଦାନ ବିଧାନକୁ ନିର୍ବନ୍ଧ କୁହାଯାଏ । ଏ ଅଞ୍ଚଳରେ ଶୂଦ୍ରଲୋକେ ଏହି ବିଧାନକୁ ଗଣ୍ଠିବନ୍ଧା କହନ୍ତି । କନ୍ୟାକୁ ଯେବେ ଦାନ କରିବାକୁ ହୁଏ ତେବେ ପିତାଦତ୍ତ କନ୍ୟାହିଁ ପ୍ରସିଦ୍ଧ । କନ୍ୟା ପିତା ବିଦ୍ୟମାନ ଥିଲେହେଁ ତାହାଙ୍କର କୌଣସି ଜ୍ଞାତି ଭାଇ ଦ୍ୱାରା ଉକ୍ତ ନିର୍ବନ୍ଧ ବିଧାନ କରାଗଲା । "ଭ୍ରାତା ହେଲା ଭାଇ ପଢ଼ଣାକୁ ଯୋଗ୍ୟ ନୁହେ", ସବିଶେଷ ଏହି ମାତ୍ର, ଏତେବେଳକୁ ମାତ୍ର "ଜ୍ୟେଷ୍ଠଭ୍ରାତା ସମୋ-ପିତା" ଦୁହାଇ ଦିଆଗଲା । ବାଗ୍‌ଦାନ ସ୍ଥାନରେ ପିଢ଼ା, ଗୁରଖଣ୍ଡ, ପଇଲା, ଶୁଅର ଏକ ଦୀପ ଥୁଆ ହେଲା, ପୂର୍ଣ୍ଣକୁମ୍ଭ ରଖାଗଲା । କୁମ୍ଭଟି ଜଳରେ ବା ମାଟିରେ ପୂର୍ଣ୍ଣ-ହୁଏ ନାହିଁ, ଚାଉଳ ବା ଧାନରେ ପୂର୍ଣ୍ଣ ହୁଏ । ପ୍ରତ୍ୟେକ ଅନୁଷ୍ଠାନରେ ଏହି ପୂର୍ଣ୍ଣ-ପାତ୍ରଟି ନାପିତ ବା ପୁରୋହିତ ପାଉଣାର ଅଂଶ ବିଶେଷ । ପୂର୍ଣ୍ଣକୁମ୍ଭ ଉପରେ ଏକ ନଡ଼ିଆ ରଖାଗଲା । ଏହା ମଧ୍ୟ ପୁରୋହିତର ପ୍ରାପ୍ୟ । ଫୁଲ, ଚନ୍ଦନ, ନୈବେଦ୍ୟ ପଦାର୍ଥ ଇତ୍ୟାଦି ଉପକରଣ ସଂଗୃହୀତ ହେଲା । ବାଗ୍‌ଦାନକର୍ତ୍ତା, ଗ୍ରହୀତା ପୁଣି ଉଭୟ ପୁରୋହିତ ଲୁଗା ବଦଳାଇ ମଠା ପିନ୍ଧି ପିଢ଼ା ଉପରେ ବସିଲେ । ପୁରୋହିତମାନେ

ଗଣପତି ଓ ବରୁଣପୂଜା କଲେ । ତାପରେ ଦାତା ଓ ଗ୍ରହୀତାଙ୍କ ତୁଣ୍ଡରେ ସଂକଳ୍ପ ବାକ୍ୟଟା ବୋଲାଇ ଦିଆଗଲା । କରିବ ବୋଲି ସିନା ସମ୍ୟକ୍ ପ୍ରକାରେ କଳ୍ପନା କରାଗଲା, କିନ୍ତୁ ବାସ୍ତବକ ବାଗ୍‌ଦାନ କିମ୍ବା ଗ୍ରହଣ ସ୍ୱୀକାର କରାଗଲା କି ନାହିଁ ଉପସ୍ଥିତ ଭଦ୍ରଲୋକ କେହି ଜାଣି ପାରିଲେନାହିଁ । ଏତିକିରେ ନିର୍ବନ୍ଧବିଧି ଶେଷହେଲା ।

ଏହି ବିଧାନରେ ବର ଓ କନ୍ୟାର କୌଣସି ସମ୍ବନ୍ଧ ସମ୍ପର୍କ ନାହିଁ । ୧୦ ବର୍ଷର କନ୍ୟା ୧୫ ବର୍ଷର ବର ବିବାହ ବନ୍ଧନର ପବିତ୍ର ଦାୟିତ୍ୱ କଣ ବୁଝିବେ ଯେ ସେମାନେ ଏହି ନିର୍ବନ୍ଧ ବିଧାନରେ ଯୋଗ ଦେବେ । କନ୍ୟାଟା ସ୍ପେଟୀ, କାଣୀ, ଲୁଙ୍ଗୀ ଇତ୍ୟାଦି ବିକଳାଙ୍ଗିନୀ ହୁଏ କି ନା ଦେଖିବା ପାଇଁ ତାହାଙ୍କୁ ନିର୍ବନ୍ଧ ସ୍ଥାନକୁ ଅଣା ଯାଉ ବୋଲି ବରପକ୍ଷ ପୁରୋହିତ ଅନୁରୋଧ କଲାରୁ ସେପରି କୁଳାଗ୍ରର ନୁହେ ବୋଲି କନ୍ୟାପକ୍ଷ ଲୋକେ ଆପତ୍ତି କଲେ । ବର ଓ କନ୍ୟାର ରୂପ, ଗୁଣ, କର୍ମ ଓ ସ୍ୱଭାବର ମେଳ ଅଛି କି ନା ଦେଖାଯାଏ ନାହିଁ । ସମ୍ବନ୍ଧମାନେ ଧନବାନ ଓ ବିଷୟ-ସମ୍ପନ୍ନ ଅଛନ୍ତି କି ନା, ପରସ୍ପର ପ୍ରତି ଲୁଗା ପଟା ଆଉ ଅଳଂକାର ଇତ୍ୟାଦି ଦେଇ-ନେଇ ଭଲ ମର୍ଯ୍ୟାଦା କରନ୍ତି କି ନା, ସର୍ବପ୍ରଥମେ ପ୍ରଧାନତଃ ଉଭୟ ପକ୍ଷଙ୍କର ଏହି କଥା ଦେଖିବାକୁ ହୁଏ । ଭାବୀଦମ୍ପତିର ଭବିଷ୍ୟତ ସୁଖ ଦୁଃଖ ବିଷୟରେ କୌଣସି ବିଚାର ନ ଥାଏ, ଯେ ହେତୁ ସେ ସବୁ ପ୍ରଜାପତି ଘଟଣା, ଯାହା ହେବାକୁ ଥିବ ହେବ, ଉହିଁରେ କାହାର ହାତ ନାହିଁ । ସାତମଙ୍ଗଳା ବାହାରେ କନ୍ୟା ମରୁ, ବେଶି ଚିନ୍ତା ନାହିଁ, ଯେହେତୁ ବରଟା ବାର୍ଦ୍ଧକ୍ୟରେ ମଧ୍ୟ ଯୁବଯାନୀ, କିନ୍ତୁ ବର ଗଲେ କନ୍ୟାର ଇହ ପର ଉଭୟ ସଂସାର ସରିଲା । ବରାଢ଼ି କୁକୁର ଜୀବନ ପଛେ ହେଉ, ହାତ ବାଡ଼ ବନ୍ଧ ହୋଇ ଥାଉ ।

ବ୍ରତ, ନିର୍ବନ୍ଧ, ବିବାହ, ଅନ୍ତ୍ୟେଷ୍ଟି ଇତ୍ୟାଦି ଅନୁଷ୍ଠାନ ଆରମ୍ଭରେ ଅଗ୍ନିହୋତ୍ର କରିବାହିଁ ବୈଦିକ ବ୍ୟବସ୍ଥା । ଆଜି ଆଉ ଏହି ବୈଦିକ ବ୍ୟବସ୍ଥା, ସ୍ୱତି ନୀତି ନାହିଁ । ତତ୍‌ପରିବର୍ତ୍ତେ ବିବିଧ ପ୍ରକାର କପୋଳ କଳ୍ପିତ ପୌରାଣିକ କର୍ମକାଣ୍ଡ ବିଧାନ ଅଛି । ଗଣପତି ବୋଲି, ବରୁଣ ବୋଲି, ଇନ୍ଦ୍ରାଦି ଦଶଦିଗପାଳ ବା ସୂର୍ଯ୍ୟାଦି ନବଗ୍ରହ ବୋଲି, ସବୁ ପରାତ୍ପର ପରମେଶ୍ୱରଙ୍କ ପ୍ରତି । ଅନ୍ନ, ଔଷଧି, ଘୃତ ଇତ୍ୟାଦିରେ ବେଦ-ମନ୍ତ୍ର ଉଚ୍ଚାରଣ ପୂର୍ବକ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ହୋମକୁଣ୍ଡରେ ଅର୍ଥାତ୍ ଅଗ୍ନିରେ ଆହୁତି ପ୍ରଦାନ କରିବାହିଁ ବୈଦିକ ସ୍ୱତି ଥିଲା । ଏବେ ଗଣପତି, ବରୁଣ ଇତ୍ୟାଦି ନାମରେ ପୃଥକ ପୃଥକ ବିଗ୍ରହ ତିଆରି କରି, ଉକ୍ତ ବିଗ୍ରହଗୁଡ଼ିକୁ ଫୁଲ ଚନ୍ଦନ ଧୂପ ଦୀପ ଦେଇ, ଗୁଡ଼ ଚିକିଟି ନଡ଼ିଆ ଖଣ୍ଡେ ଇତ୍ୟାଦି ନୈବେଦ୍ୟ ଦେଇ ପୂଜା ଆରାଧନା କରା-

ଯାଏ । ଭାବଗ୍ରାହୀ ପରମେଶ୍ୱର କେବଳ ଭକ୍ତିର ଓ ପବିତ୍ର ଭାବ ଗ୍ରହଣ କରନ୍ତି, ମଠା, ମକୁଟା, ନଡ଼ିଆ କଦଳୀରେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ତଥାପି ବେଦପ୍ରସିଦ୍ଧ ଅଗ୍ନିହୋତ୍ର ପରିତ୍ୟାଗ କରି ପୁରୋହିତ ବ୍ରାହ୍ମଣମାନେ ମଠା, ଗାମୁଛା, ନଡ଼ିଆ କଦଳୀ, ଡାଲି, ଚାଉଳ ଇତ୍ୟାଦି ଉପଢ଼ୌକନକୁ ମୂଳ କରି ସର୍ବବ୍ୟାପୀ ପରମାତ୍ମାଙ୍କ ସ୍ଥାନରେ କାଷ୍ଠ ପାଷାଣାଦି ବିଗ୍ରହ ଅରୋପ କରନ୍ତି । ବୈଦିକ କର୍ମକାଣ୍ଡ ଯେପରି ବିଦାକାର ଧାରଣ କରିଅଛି, ବିବାହ ବ୍ୟବସ୍ଥା ମଧ୍ୟ ତଦ୍ରୂପ ଲକ୍ଷ୍ୟଭ୍ରଷ୍ଟ ହୋଇ ବିପରୀତ ଦିଗରେ ଗୁଳିଅଛି । ଏହାର ସଂସ୍କାର ହେବା ଉଚିତ ଗଲେ ସବୁ କ୍ରିୟା ସର୍ବ୍ୱାଙ୍ଗ ସୁନ୍ଦର ।



# ଗୋଦାନ ଓ ବୈତରଣୀ ନଦୀ

ଏକ ସମୟରେ ଏକ ଚଷା ଲୋକ ଥିଲା । ତାହାର ଗୋଟିଏ ଭଲ ଗାଈ ଥାଏ, ଦିନକୁ ୪ । ୫ ସେର କ୍ଷୀର ଦିଏ । ଚଷା ଲୋକଟା ସେହି ଗାଈଟି ଦେଇ ଆପଣା ପିଲା କୁଟୁମ୍ବ ବଞ୍ଚାଉଥାଏ । ଚଷାର ପୁରୋହିତ କେବେ କେବେ ଆସିଥାନ୍ତି, ସେହି ଗାଈର କ୍ଷୀର ଖାଉଥାନ୍ତି । ପୁରୋହିତଙ୍କର ସେହି ଗାଈପ୍ରତି ଲୋଭ ଜନ୍ମିଲା । ସେ ମନେ ମନେ ଭାବୁଥାନ୍ତି ଯେ, ଯଦି ଚଷାର ବାପା ବୁଢ଼ା ମରି-ଯାଏ ତେବେ ସେ ସେହି ଗାଈଟିକି ଦାନ କରାଇ ନେଇ ଯାଇ ପାରିବେ । ବୁଢ଼ା ଦେହରେ ରୋଗ ପ୍ରବଳ ହେଲା, ତାହାର ମରଣକାଳ ଉପସ୍ଥିତ ହେଲା । ବନ୍ଧୁ ବାନ୍ଧବ ଇଷ୍ଟମିତ୍ର ଲୋକେ ଆସି ବୁଢ଼ାକୁ ବେଢ଼ି ବସିଥାନ୍ତି । ପୁରୋହିତ ସେତେବେଳେ ଚଷାକୁ କହିଲେ, ଆଜ ଗୃହୁଛ କଣ, ଏହି ସମୟରେ ଯାହା କିଛି ଦାନ ପୁଣ୍ୟ କରାଇ ଦିଅ, ଗାଈଟିଏ ଆଣି ଦାନ କରି ଦିଅ । ଗାଈ ସଙ୍କାଶେ ଚଷା ୫ ୧୦ ଙ୍କା ଅଣି ଦାନ କରିବା ପାଇଁ ବୁଢ଼ା ହାତରେ ଛୁଆଁଇଲା । ପୁରୋହିତ କହିଲେ ୫ ୧୦ ଙ୍କାରେ ତ ଗାଈ ମିଳିବନାହିଁ । ଚଷା ଲୋକଟି ଅଉ ଦଶଟଙ୍କା ମିଶାଇ ୫ ୨୦ ଙ୍କା ଦେଲା । ପୁରୋହିତ କହିଲେ, ବୁଢ଼ା କଣ ଅଉ ନାହିଁ, ଧନ ଜନ, ଘର ଦ୍ୱାର ସବୁ କରି ଯାଇଅଛି, ତୋ ବାପା କଣ ଅଜି ମରିବ ? ଏ ସମୟରେ ଯାହା ଦେଇଥିବୁ, ତୁମ ଘର ଗାଈ ଲାଗି ବୁଢ଼ା ବୈତରଣୀ ନଦୀ ପାର ହେବ । ସେହି ଗାଈର କ୍ଷୀର ଖାଇ ପିଲାପିଲି ବଞ୍ଚିଛନ୍ତି, ଗାଈଟି ଦେଇ ଦେବାକୁ ଚଷାର ମନ ବଳେ ନାହିଁ । ବୁଢ଼ା ହାତେ ସେହି ଗାଈଟି ଦାନ କରାଇ ଦେବା ନିମନ୍ତେ ଉପସ୍ଥିତ ଜ୍ଞାତି ବନ୍ଧୁ ଲୋକଙ୍କୁ ପୁରୋହିତ ପୂର୍ବରୁ କହିଥିଲେ,

ସେତେବେଳେ ମଧ୍ୟ ସେମାନଙ୍କୁ ଟିକିଏ ଠାରି ଦେଲେ । ଜ୍ଞାତି ଓ ବନ୍ଧୁମାନଙ୍କ ଅନୁରୋଧ ଭାଙ୍ଗି ନ ପାରି ଚଷା ବପୁରା ଅଗତ୍ୟା ଗାଈ ବାଛୁରି ଆଣି ବୁଢ଼ା ହାତେ ଦାନ କରାଇଦେଲା । ପୁରୋହିତ ଗାଈ ବାଛୁରି ଧରି ନିଜ ଘରକୁ ଗଲେ ଏଣେ ବୁଢ଼ା ମରିଗଲା । ଗାଈ ବାଛୁରିକି ଘରେ ବାନ୍ଧି ଦେଇ ପୁରୋହିତ ଫେରି ଆସିଲେ, ଶବ ସଙ୍ଗରେ ଶ୍ମଶାନକୁ ଯାଇ ଦାହକ୍ରିୟା କରାଇ ଦେଲେ, ତାପରେ ଦି ୧୨ ନ ପର୍ଯ୍ୟନ୍ତ ନାନାପ୍ରକାର ଭୂତ ପ୍ରେତ କର୍ମ କରାଇ ଗୁଡ଼ିଏ ଚାଉଳ, ଟଙ୍କା ପଇସା, ବସନ ବାସନ ଇତ୍ୟାଦି ଦାନ ଘେନିଲେ । ପ୍ରେତ ବ୍ରାହ୍ମଣମାନଙ୍କୁ ଖଇ ଦହି ଚୁଡ଼ା ଇତ୍ୟାଦି ଦିଆଗଲା । ଏହି ବାରଦିନ ଯାଏ ଚଷା ପିଲାମାନେ ଦୁଧ ଖାଇବାକୁ ନପାଇ ବଡ କଷ୍ଟ ପାଇଲେ । ଚଷା ବପୁରା ଆହୁ ପଡ଼ଶା ଘରୁ ଟିକିଏ ଲେଖାଏଁ ଦୁଧ ମାଗି ଆଣି ବହୁକଷ୍ଟରେ ଚଳାଇଲା । ୧୩ ଦିନ ବଡ ସକାଳୁ ଉଠି ଚଷା ଗଲା ପୁରୋହିତ ଘରକୁ, ଦେଖିଲା ଯେ ପୁରୋହିତେ ଦୁଧ ଦୁହିଁ ସାରି କଳଶି ଧରି ଘରକୁ ଯିବା ଉଦ୍ୟମରେ ଅଛନ୍ତି । ଚଷା ଡାକିଲା, ପୁରୋହିତ ଗୋସାଇଁ, ଏଣେ ଆସ । ପୁରୋହିତ ଉତ୍ତର ଦେଲେ, ଯଜମାନ ଅସିଲ ବସ, କଳଶିଟା ଘରେ ରଖି ଦେଇ ମୁଁ ଆସୁଛି । ଚଷା କହିଲା, ନାହିଁ, ସେହି ଦୁଧ କଳଶି ଧରି ଏଣେ ଆସ । ପୁରୋହିତ ଦୁଧ କଳଶି ଧରି ଆସି ବସିଲାପରେ ଚଷା ପଚାରିଲା, ପୁରୋହିତେ ତୁମେ ବଡ ମିଛୁଆ ଲୋକ, ଗାଈ ଧରି ମୋ ବାପା ବୈତରଣୀ ନଦୀପାରି ହେବେ ବୋଲି କହିଲ, ଗାଈକି ବୈତରଣୀ ନଦୀଠାକୁ ନ ପଠାଇ ଘରେ ବାନ୍ଧି ରଖିଛ, ମୋ ବାପା ବୈତରଣୀ ପାରି ହୋଇ ନ ପାରି କେ ଜାଣିବା କେତେ କଷ୍ଟ ପାଉଥିବେ ? ପୁରୋହିତ ହାବାକା ହୋଇ କହିଲେ ଯେ ଗରୁଡ଼ ପୁରାଣର ଲେଖା ଅନୁସାରେ ଏଠାରେ ଗୋଟିଏ ଗାଈ ଦାନ କଲେ ସେହିରୂପ ଆଉ ଏକ ଗାଈ ସେଠାରେ ଜାତ ହୋଇଯିବ, ଏହି ଗାଈ ସେଠାକୁ ଯିବନାହିଁ । ଚଷା—ଆଚ୍ଛା ବୈତରଣୀ ଏଠାରୁ କେତେଦୂର ? କେଉଁ ଦିଗରେ । ପୁରୋହିତ—ପଚାଶ କୋଟି ଯୋଜନ ଦୂରରେ ନୈଋତ କୋଣରେ । ଚଷା—ତେବେ ତୁମ ପାଖକୁ ଚିଠି ବା ତାର ଆସିଥିବ, ଅମୁକ ଲୋକର ବାପା ଅମୁକ ଲୋକ ଅମୁକ ଗାଈ ଧରି ବୈତରଣୀ ପାର ହୋଇ ଗଲେ ବୋଲି, କାହିଁ ସେ ଚିଠି ବା ତାର ଦେଖାଅ । ପୁରୋହିତ —ନାହିଁ, ସେପରି ଚିଠି ବା ତାର ଆସେ ନାହିଁ, କେବଳ ଗରୁଡ଼ ପୁରାଣହିଁ ତାହାର ପ୍ରମାଣ । ଚଷା ସେହି ଗରୁଡ଼ ପୁରାଣ କିଏ ଲେଖିଥିଲା ? ପୁରୋହିତ—ପୂର୍ବପୁରୁଷ ଲୋକମାନେ । ଚଷା—ଆପଣଙ୍କ ସ୍ୱଭାବରେ ପୁଅରେ ଭାଗ ସେନ୍ତୁ, ତୁମର ଜୀବିକା ନିର୍ବାହ ସକାଶେ

ତୁମ ପୂର୍ବପୁରୁଷ ଲୋକେ ସେହି ଗରୁଡ଼ ପୁରାଣ ଲେଖି ରଖି ଯାଇଥିବେ । ସବୁ ମିଛ କଥା । ମୋ ବାପା ଚିଠି ବା ତାର ଦେଲେ ମୁଁ ଗାଈ ପଠାଇ ତାହାଙ୍କୁ ନଦୀ ପାର କରଦେଇ ଗାଈକି ଫେରାଇ ଆଣିବି । ଆଣ ସେ ଦୁଧ କଳଶି । ଏହା କହି ଚଷାଲୋକ ଦୁଧ କଳଶି ଧରି ପୁରୋହିତ ଘରୁ ଗାଈ ବାଛୁରୀ ଫିଟାଇ ନେଇ ଚାଲିଲା । ପୁରୋହିତ—ଆରେ ଏକ ଅଧର୍ମ, ଦାନ କରିଥିବା ପଦାର୍ଥ ପୁନରପି ନେଇ ଯାଉଛୁ, ଅଲ୍ପାୟୁଷ ହୋଇଯିବୁ । ଚଷା—ଚୁପ୍ ରହ, ନହେଲେ ମୁଁ ଆଜଠାରୁ ବାରଦିନ ହେଲା ଦୁଧ କିଛିଏ ନ ପାଇ ମୋ ପିଲାମାନେ ଯେତେ କଷ୍ଟ ପାଉଛନ୍ତି, ସବୁ ସୁଝାଇ ଦେବି । ବ୍ରାହ୍ମଣ ବାପୁଡ଼ା ହାନମୁଣ୍ଡ ଆଉଁଶି ଘରକୁ ଗଲା, ଏଣେ ଚଷା ଲୋକ ଗାଈ ବାଛୁରୀ ଧରି ଯାଇ ପୂର୍ବପରି ସୁଖରେ ନିଜ କୁଟୁମ୍ବ ବଞ୍ଚାଇଲା ।

ପାଠକେ, ଭଲା ନିରପେକ୍ଷ ଭାବରେ କହନ୍ତୁ, ଚଷା ନାସ୍ତିକ ଚଣ୍ଡାଳ କିମ୍ବା ପୁରୋହିତ ଭଣ୍ଡ ପାଷଣ୍ଡ ।



## ପଞ୍ଜିକା ଦୁର୍ଯୋଗ ।

ଆସନ୍ତା ଜ୍ୟେଷ୍ଠ ମାସଠାରୁ ଦୁଇବର୍ଷ ପର୍ଯ୍ୟନ୍ତ କାଳ ଅଶୁଦ୍ଧ, ବିଭା ବ୍ରତାଦି ଶୁଭକାର୍ଯ୍ୟ କରିବାପାଇଁ ଆଉ ଯୋଗ ନାହିଁ ବୋଲି ପାଞ୍ଜିକାର କହୁଛନ୍ତି । ପୁଅ ଝିଅ ମାନଙ୍କର ତ ବ୍ରତ ବିବାହ ଚଳ କରିପାଇ ପାରିବ ନାହିଁ । ଗାଁ ପୋଡ଼ି ଯାଉ, ଘର ବୁଡ଼ିଯାଉ, ଫସଲ ସବୁ ନଷ୍ଟ ହେଉ, ଧାନ ମୁଗ ଆଦି ଶସ୍ୟ ଘରକୁ କିଛି ନ ଆସୁ, ଝଡ଼ ବର୍ଷା ତୋଫାନ କିମ୍ବା ପ୍ରଚଣ୍ଡ ଖରା, ଅସହ୍ୟ ଗ୍ରୀଷ୍ମ ହେଉ, ଘରେ ସମସ୍ତେ ରୋଗଶଯ୍ୟାରେ ପଡ଼ିଥାନ୍ତୁ, ହାତରେ ପଇସା ନଥାଉ, ବନ୍ଧୁ ବାନ୍ଧବ ପ୍ରିୟଜନ ଓ ପଣ୍ଡିତମାନଙ୍କର ସମାଗମ ହୋଇ ନପାରୁ, ତଥାପି ଝିଅ ପୁଅମାନଙ୍କର ଭିଆ ଚୂଡ଼ା କରି ଦେବାକୁ ହେବ । ବିବାହ ଉପନୟନାଦି ସଂସ୍କାର ସମ୍ପର୍କରେ ସନ୍ତାନର ବୟଃକ୍ରମ ପ୍ରତି ଲକ୍ଷ ନଥାଏ । ପୁତ୍ରର ଉପନୟନ ୧୦ । ୧୫ ପର୍ଯ୍ୟନ୍ତ ହୋଇ ପାରି ନ ଥିଲେ ମଧ୍ୟ କୌଣସି ଶୋଚନା ନାହିଁ, ଯେତହତୁ ଏଥିରେ ଜାତି ଯାଏ ନାହିଁ, ସମାଜଚ୍ୟୁତ ହେବାକୁ ପଡେ ନାହିଁ । କିନ୍ତୁ ୧୦ ବର୍ଷ ବ୍ୟତକ୍ରାନ୍ତ କନ୍ୟାଟା ଅଦ୍ରକ୍ଷ ହୋଇ ପଡେ । କନ୍ୟାଟି ଯେତେ ଅଳ୍ପ ବୟସର ହେଲା ବିବାହଟା ସେତେ ଶୁଭ ଏବଂ ଶୁଦ୍ଧ ହେଲା । ଏହେତୁ ଶିଶୁ କନ୍ୟାର ବିବାହ ସର୍ବାଦୌ ଏକାନ୍ତ କର୍ତ୍ତବ୍ୟ । ଶ୍ରୁତି ସ୍ମୃତି ବ୍ୟବସ୍ଥା, ବେଦ ପାଠ, ଅଗ୍ନିହୋତ୍ର, ପଣ୍ଡିତ ସଭାର ଇତ୍ୟାଦି ବିଷୟ ଧର୍ତ୍ତବ୍ୟ

ନୁହେ । ଏ ସବୁ ବନକୀ ବା ଉପରନୀ କଥା । ହେଲେ ଅଛି, ନହେଲେ ଅଛି ।
ପାଞ୍ଜି ଯୋଗ, ପୁରୋହିତ ଭୃଗ, ଧର୍ମ ଓଲକ ହେବା ପରେ ଚେଉ'ର ମର୍ଯ୍ୟାଦା
ଜଣରବା ସମ୍ବନ୍ଧ, ତା ପରେ ଭୋଜଭାତ—ଏହିସବୁ କେବଳ ବାହାର ଅପରୁ ହାଣ୍ଡି
ଉପାଦାନ ।

ଦୁର୍ଭିକ୍ଷ ଯୁଗରେ ପୁରୋହିତ ବା ଜ୍ୟୋତିଷଙ୍କର ପାଞ୍ଜିଯୋଗ ଉପସ୍ଥିତ ।
ଘୁର ଚଣ୍ଡାଳୀ ଯୋଗ ଘଟିଅଛି । ଏହାକୁହିଁ କହ ଅତ୍ୟନ୍ତ ମହାର୍ଘ ଯୋଗ ବା
ଦୁର୍ଯୋଗ । କରାଳ ଦୁର୍ଭିକ୍ଷ ରାକ୍ଷସୀ ମୁଖ ବ୍ୟାଦାନ କରି ବସିଅଛି, ଜ୍ୱର ବସନ୍ତ
ବସୁଚିକାଦି ବ୍ୟାଧିମାନଙ୍କୁ ସଙ୍ଗେ ଘେନି ଅସିଅଛି । ଲୋକେ ଏହାକୁ ସୁଯୋଗ ମନେ
କର ଅଗ୍ନିରେ ପତଙ୍ଗ ପଡ଼ିଲା ପର ଏଥିରେ ଝାସ ଦେଉଅଛନ୍ତି । ଦେଶ ଦ୍ୱାର
ସୁଭିକ୍ଷ ହେଉ ବା ଦୁର୍ଭିକ୍ଷ ହେଉ ବେଦାଙ୍ଗ୍ୟବସ୍ଥାନୁସାରେ ବିବାହ, ଉପନୟନାଦି
ସମସ୍ତ ସଂସ୍କାର ସୁନ୍ଦର ନିର୍ବାହିତ ହୋଇପାରେ । ଉକ୍ତ ବ୍ୟବସ୍ଥା ଛାଡ଼ି ପାଞ୍ଜିଯୋଗ
ଏବଂ ପାଷଣ୍ଡ ପୁରୋହିତମାନଙ୍କ ଭଣ୍ଡାମିରେ ପଡ଼ିବା ଯୋଗୁଁ ଆଜ ଦେଶରେ
ଦୁର୍ଯୋଗ ଉପସ୍ଥିତ । ଆଉ ଦୁଇବର୍ଷ ପର୍ଯ୍ୟନ୍ତ ଯୋଗ ନାହିଁ ବୋଲି ଲୋକେ
ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ବଢ଼ି ବୁଡ଼ା କର ଯାଉଅଛନ୍ତି । ସତ୍‌ପାତ୍ର ଖୋଜ ଦେଖି
ବାକୁ ଅବକାଶ ନାହିଁ, ପୁତ୍ର କନ୍ୟାର ବୟସ ବୁଝିବାକୁ ତର ନାହିଁ, ନିଜର
ଅବସ୍ଥା ପ୍ରତି ଦୃଷ୍ଟି ଦେବାକୁ ଅବସର ନାହିଁ । ଯେ କୌଣସି ପ୍ରକାର ବାହାଘର,
ବଢ଼ୁ ଚଳି ଗଲେ ହେଲା । ଘରେ ଦାନା କନା ନାହିଁ, ଚତୁର୍ଦ୍ଦିଗରେ ଘୋର ଦୁର୍ଭିକ୍ଷ
ଘୋଟି ଅଛି । ପ୍ରତ୍ୟେକ ପଦାର୍ଥ ଯହାର ମୂଲ୍ୟ ଥିଲା ଏକଟଙ୍କା, ଏବେ ତାହାର ମୂଲ୍ୟ
ପାଞ୍ଚଟଙ୍କା । ତଥାପି ଭୋଜ ଭାତ କରିବାକୁ ହେବ, ବେଭାର ମର୍ଯ୍ୟାଦା ଚଳାଇବାକୁ
ହେବ । ଏଥିପାଇଁ ଟଙ୍କା ଲୋଡ଼ା । ଘର ଦ୍ୱାର ବନ୍ଧ ଭାଙ୍ଗି, ଭୂମି ବାଡ଼ ବନ୍ଧା ଛନ୍ଦା
କରି ଟଙ୍କା କରଜ କର ଅଣିବାକୁ ହୁଏ । ଲୋକେ ଏହିପରି ସର୍ବସ୍ୱାନ୍ତ ହେଲେ ହେଁ
ଦୁଃଖ କଷ୍ଟରେ ଭୋଜ ଭାତ, ମହତ୍ତ୍ୱ ମର୍ଯ୍ୟାଦା କରିବାକୁ ବାଧ୍ୟ ହେଉଛନ୍ତି ।

ଦୁର୍ଭିକ୍ଷ ରାକ୍ଷସୀ ସହିତ ପୁରୋହିତ ପିଶାଚମାନେ ଯୋଗ ଦେଲେ, ଆଉ ଦୁଇ-
ବର୍ଷ ପର୍ଯ୍ୟନ୍ତ ବଡ଼ ବ୍ରତ ଯୋଗ ନାହିଁ ବୋଲି ଲୋକରେ ପ୍ରଚ୍ଚର କଲେ ।
ପୁରୋହିତ ଅତ୍ୟାଚାରରେ ଭାରତବାସୀ ହିନ୍ଦୁ ସାଧାରଣଙ୍କୁ ଧର ମାର ଖାଇଲା ।
ପୁରୋହିତ ଅତ୍ୟାଚାରରୁ ହିନ୍ଦୁ ସାଧାରଣ କେବେ ନିସ୍ତାର ପାଇବେ ଭଗବାନଙ୍କୁ
ଗୋଚର । ଦୁର୍ଭିକ୍ଷ ସଙ୍ଗରେ ଏହି ବଡ଼ା ବ୍ରତ ଯୋଗକୁହିଁ ଖୋଷ ଉପରେ ବଢ଼ା
ବା ବେଙ୍ଗ ଉପରେ କୋରଡ଼ା ବୋଲିବାକୁ ହେବ ।

—୦—

## ଶ୍ରାଦ୍ଧ ।

ଶ୍ରଦ୍ଧାଯୁକ୍ତ ହୋଇ ଯେଉଁ କାର୍ଯ୍ୟ କରାଯାଏ ତାହାକୁ ଶ୍ରାଦ୍ଧ କୁହା-ଯାଏ । ଶ୍ରଦ୍ଧା ସହକାରେ ପିତା ମାତାଦି ଗୁରୁଜନମାନଙ୍କର ସ୍ମୃତି ରକ୍ଷା କରି-ବାକୁ ହୁଏ, ସୁତରାଂ ଏହାକୁ ଶ୍ରାଦ୍ଧ ବୋଲାଯାଏ । ପିତାମାତାଦି ଧାର୍ମିକ, ବିଦ୍ୱାନ୍ ଗୁରୁଜନମାନଙ୍କର ଗୁଣ କର୍ମ ଓ ସ୍ୱଭାବର ସ୍ମରଣ, ମନନ ଓ ଚିନ୍ତନ କଲେ ତଦ୍ଦ୍ୱାରା ଅନୁପ୍ରାଣିତ ହୋଇ ନିଜର ଗୁଣ କର୍ମ ଓ ସ୍ୱଭାବକୁ ତଦନୁଯାୟୀ ସୁଧାରି ନେବାକୁ ପ୍ରବୃତ୍ତ ଜନ୍ମେ । ଜୀବିତ ପିତୃଲୋକମାନଙ୍କର ସେବା ଶୁଶ୍ରୂଷା ସତ୍କାର କରିବାହିଁ ପିତୃଯଜ୍ଞ, ଅର୍ଥାତ୍ ପିତୃ ଶ୍ରାଦ୍ଧ ଓ ପିତୃ ତର୍ପଣ । ପୁଣି ମୃତ ବ୍ୟକ୍ତିମାନଙ୍କର ମଧ୍ୟ ଶ୍ରାଦ୍ଧ କରାଯାଏ, ଅର୍ଥାତ୍ ଉତ୍ସାହ ଆନନ୍ଦ ଓ ଶ୍ରଦ୍ଧା ସହକାରେ ସେମାନଙ୍କର ଗୁଣକର୍ମ ଓ ସ୍ୱଭାବର ସ୍ମରଣ କରିବାକୁ ହୁଏ । ଅତଏବ ଜୀବିତ ବ୍ୟକ୍ତିମାନଙ୍କର ସେବା ସତ୍କାର କରିବାହିଁ ସେମାନଙ୍କର ଶ୍ରାଦ୍ଧ ଏବଂ ମୃତବ୍ୟକ୍ତିମାନଙ୍କର ସ୍ମରଣ କରିବା, ଅର୍ଥାତ୍ ସେମାନଙ୍କର ସ୍ମୃତିରକ୍ଷା କରିବାହିଁ ସେମାନଙ୍କର ଶ୍ରାଦ୍ଧ । ଅତଏବ ଶ୍ରାଦ୍ଧର ଅର୍ଥ ସେବା ଏବଂ ସ୍ମୃତିରକ୍ଷା ।

ଶ୍ରାଦ୍ଧ କ୍ରିୟାଦ୍ୱାରା ମୃତ ବ୍ୟକ୍ତିର କୌଣସି ଉପକାର ହୁଏ ନାହିଁ । କେବଳ ଶ୍ରାଦ୍ଧ କର୍ତ୍ତାର କିଛି ଉପକାର ହୋଇପାରେ । କିନ୍ତୁ ଜୀବିତ ବ୍ୟକ୍ତି ପକ୍ଷରେ ଶ୍ରାଦ୍ଧକର୍ତ୍ତା ଏବଂ ଶ୍ରଦ୍ଧେୟ ଉଭୟ ବ୍ୟକ୍ତିର ବହୁ ଉପକାର ହୁଏ । ମୃତବ୍ୟକ୍ତି ସମ୍ବନ୍ଧରେ ଆଜି ହିନ୍ଦୁ ସମାଜରେ ଯେଉଁ ଶ୍ରାଦ୍ଧବିଧି ପ୍ରଚଳିତ ଅଛି ତହିଁରେ ମୃତବ୍ୟକ୍ତିମାନଙ୍କ ପାଇଁ ଏକ ଏକ ପିଣ୍ଡ କଳ୍ପନା କରାଯାଏ । ଉକ୍ତ ପିଣ୍ଡୋପରି ବସ୍ତ୍ର, ଅଳଙ୍କାର, ଧୂପ ଦୀପ, ନୈବେଦ୍ୟ ଇତ୍ୟାଦି ଦିଆଯାଏ । ଲୋକ ସାଧାରଣ ଶ୍ରାଦ୍ଧର ଅର୍ଥ ଏବଂ ଉଦ୍ଦେଶ୍ୟ ବୁଝନ୍ତି ନାହିଁ, କେହି କେହି ପିଣ୍ଡକୁ ମୃତ ବ୍ୟକ୍ତିର ବିଗ୍ରହ ଜ୍ଞାନ କରନ୍ତି, ପୁଣି କେହି କେହି ତାହାର ଆହାର ବା ଭୋଜନ ବୋଲି ବୁଝନ୍ତି । ଯେଉଁ ଦିନ ପିତାମାତାଦି ନିଜ ବଂଶର କେହି ବ୍ୟକ୍ତିର ବିୟୋଗ ଘଟିଥାଏ, ସେହି ଦିନ କେବଳ ତାହାର ଶ୍ରାଦ୍ଧ କରା-ଯାଏ, ସାଧାରଣତଃ ଅନ୍ୟ କୌଣସି ଦିନରେ ଶ୍ରାଦ୍ଧ କରାଯାଏ ନାହିଁ । ପୁରୋହିତ-ମାନେ କେବଳ ମାସ ଓ ତିଥିଟା ଲେଖି ରଖିଥାନ୍ତି; ସାଲ୍, ଶକାବ୍ଦ ବା ଖ୍ରୀଷ୍ଟାବ୍ଦ କିଛି ଲେଖି ରଖି ନ ଥାନ୍ତି । ବର୍ଷ ରଖିଥିଲେ ଇତିହାସ ଲେଖା ଯାଇପାରନ୍ତା । ପୁରୋହିତମାନେ କେବଳ ଗୃହସ୍ଥଠାରୁ ଗୁଡ଼ାଏ ପଇସା ସଂଗ୍ରହ କରିବା ନିମନ୍ତେ ତିଥିଟା ମାତ୍ର ମନେ ରଖି-ଥାନ୍ତି । ଗୃହସ୍ଥର ଅସମୟ, ଅଭାବ ଓ ଅସୁବିଧା ଥିଲେହେଁ କେବଳ ମୃତାହ ତିଥିରେ ସେ ଶ୍ରାଦ୍ଧ କରିବାକୁ ବାଧ୍ୟ ହୁଏ । ଲୋକସାଧାରଣର ଧାରଣା ଯେ ପିତୃଲୋକ ନାମରେ ଏକସ୍ଥାନ ଅଛି ତହିଁରେ ମୃତବ୍ୟକ୍ତିମାନେ ରହନ୍ତି । ପୁଣି ପୁତ୍ର ପୌତ୍ରାଦି ବଂଶଧର-

ମାନେ ବର୍ଷରେ ଥରେ ଯେଉଁ ପିଣ୍ଡ ଦଅନ୍ତି ତାହାହିଁ ସେମାନେ ଖାଆନ୍ତି ଏବଂ ପିଣ୍ଡ ନ ପାଇଲେ ସେମାନେ ଭୋକେ ଉପାସେ ପରେ ମରିବେ । ଏହି ଅନ୍ଧ ଧାରଣାର ବଶବର୍ତ୍ତୀ ହୋଇ ଅପୁତ୍ରକ ଲୋକେ ପୋଷ୍ୟପୁତ୍ର କରନ୍ତି ବା ଦତ୍ତକପୁତ୍ର ଗ୍ରହଣ କରନ୍ତି ଏବଂ ଅପାତ୍ରରେ ସମର୍ପଣ କରି ଅନେକ ଚରାଚର ସମ୍ପତ୍ତିର ଅପବ୍ୟୟ କରି ଦଅନ୍ତି ।

ଶ୍ରାଦ୍ଧବିଧାନ ଦ୍ୱାରା ସମାଜର ଉପକାର ଅପେକ୍ଷା ବେଶି କ୍ଷତି ହୁଏ । ଶାସ୍ତ୍ରରେ ପିଣ୍ଡର ପ୍ରୟୋଜନ ଏବଂ ପିଣ୍ଡ ପ୍ରଦାନ ସକାଶେ ବହୁବାର ବିବାହ କରିବାକୁ ହୁଏ । ବାର୍ଦ୍ଧକ୍ୟରେ ବିବାହ କରି ବାଳବିଧବା ସଂଖ୍ୟା ବୃଦ୍ଧି କରିବାକୁ ହୁଏ । ନତୁବା ପୁତ୍ର ଅଭାବରେ ଦତ୍ତକପୁତ୍ର ଗ୍ରହଣ କରି ପିତାର୍ଜ୍ଜିତ ସ୍ୱାର୍ଜ୍ଜିତ ସମସ୍ତ ସମ୍ପତ୍ତି ଅନେକ ସମୟରେ ନଷ୍ଟ ଭ୍ରଷ୍ଟ କରିଦେବାକୁ ହୁଏ । ଶ୍ରାଦ୍ଧ ଦିନ ସନ୍ନ୍ୟାସିମାନଙ୍କ ସତ୍କାର କରାଯାଏ ନାହିଁ । ଶୁଦ୍ଧ, ଶ୍ରାଦ୍ଧ, ପିଣ୍ଡ, ପୋଷ୍ୟପୁତ୍ର ଇତ୍ୟାଦି ଦୁର୍ବ୍ୟବସ୍ଥା ଓ ବ୍ୟପଦେଶହେତୁ ସମାଜରୁ ସନ୍ନ୍ୟାସାଶ୍ରମ ଲୁପ୍ତ ହୋଇ ଯାଉଅଛି । ମନରେ କୌଣସି ଶ୍ରଦ୍ଧା ନ ଥିଲେହେଁ ବାଧ୍ୟ ହୋଇ ଶ୍ରାଦ୍ଧ କରିବାକୁ ହୁଏ । ମୂର୍ଖ, ଅଧାର୍ମିକ, ଦୁରାଗ୍ରହୀ ହେଲେ ମଧ୍ୟ କେବଳ ଜୁଆଇଁ ଭଣଜା ଇତ୍ୟାଦି ଆତ୍ମୀୟ ଲୋକମାନଙ୍କୁ ଶ୍ରାଦ୍ଧ ଅନ୍ନ ଭୋଜନ ଦିଆଯାଏ । କୌଣସି ପଣ୍ଡିତ ବିଦ୍ୱାନ ବ୍ରହ୍ମଚାରୀ ବା ସନ୍ନ୍ୟାସିମାନଙ୍କୁ ନିମନ୍ତ୍ରଣ କରି ଆଣି ଭୋଜନ ଦିଆଯାଏ ନାହିଁ ।

ଶ୍ରାଦ୍ଧର ଶ୍ରେୟଃ ଏତିକି ମାତ୍ର ଯେ, ଶ୍ରାଦ୍ଧଦିନ ଅନ୍ନବସ୍ତ୍ରାଦି କିଛି ସାମଗ୍ରୀ ଅନ୍ୟଲୋକଙ୍କୁ ଦିଆଯାଏ । ଶ୍ରଦ୍ଧାରେ ହେଉ, ଅଶ୍ରଦ୍ଧାରେ ହେଉ, ଲଜ୍ଜାରୁ ହେଉ ବା ଭୟରୁ ହେଉ, ଦେବାଟା କିଛି ନ୍ୟୁନ ନୁହେ । ଶ୍ରାଦ୍ଧଦିନ ଘର ଦ୍ୱାର ଲିପା ପୋଛା, ହାଣ୍ଡି କୁଣ୍ଡି ଧୁଆ ସଜଡ଼ା ଇତ୍ୟାଦି କରି ସବୁ ନିର୍ମଳ ପରିଷ୍କାର ସୁସଜ୍ଜିତ ରଖାଯାଏ । ଶ୍ରାଦ୍ଧ ବୋଲି କଥା ନ ଥିଲେ ଘର ଦ୍ୱାର, ବସନ, ବାସନ ଇତ୍ୟାଦି ଧୁଆ ସଜଡ଼ା ହୁଅନ୍ତା ନାହିଁ । ରନ୍ଧାଶାଳର ଭଙ୍ଗାରୁଜା ହାଣ୍ଡି କୁଣ୍ଡି ମଧ୍ୟ ଯଥାସମୟରେ ବାହାରନ୍ତା ନାହିଁ, ସାହି ପଡ଼ିଶାକୁ ବା ଦୋଧା ଭିକାରୀଙ୍କି ଅନ୍ନ ମୁଠେ ମିଳନ୍ତା ନାହିଁ । ପିତା ପିତାମହାଦି କେତେକ ପୂର୍ବପୁରୁଷ ସହଜରେ ମନେ ପଡନ୍ତେ ନାହିଁ । ଏଥିଦ୍ୱାରା ପିତା ମାତାଦି ପୂଜ୍ୟଜନମାନଙ୍କୁ ସ୍ମରଣ କରିବାକୁ ହୁଏ । ଏବଂ ସେମାନଙ୍କ ଉତ୍ତମ ଗୁଣ କର୍ମାଦି ଦ୍ୱାରା ନିଜେ ଅନୁପ୍ରାଣିତ ଓ ପ୍ରଭାବିତ ହେବାକୁ ପଡ଼େ । ପବିତ୍ରାତ୍ମାମାନଙ୍କ ଦ୍ୱାରା ପବିତ୍ର ଭାବରେ ମୃତବ୍ୟକ୍ତିମାନଙ୍କର ସ୍ମରଣ, ମନନ ଏବଂ ଚିନ୍ତନ କରାଗଲେ କେଜାଣି ବା ସେହି ପରଲୋକପ୍ରାପ୍ତ ଆତ୍ମାର କୌଣସି ସଦ୍ଗତି ହୋଇ ପାରେ ।

ଅତଏବ ଯଦି ଶ୍ରାଦ୍ଧ କରିବାକୁ ହେବ, ତେବେ କିପରି କରିବାକୁ ହେବ ତାହା ଆମ୍ଭମାନଙ୍କର ବକ୍ତବ୍ୟ ବିଷୟ ।

ମୃତାହ ବା କୌଣସି ତିଥି ନିର୍ବିଶେଷରେ ଶ୍ରାଦ୍ଧ କରିବା ଉଚିତ । ଯେଉଁ ଦିନ ପ୍ରୟୋଜନୀୟ ସକଳ ପଦାର୍ଥ ପାର୍ଶ୍ୱେ ଥିବ, କୌଣସି ଅଭାବ ନ ଥିବ, କେତେ ପଣ୍ଡିତ, ବିଦ୍ୱାନ୍, ଧାର୍ମିକ ବ୍ରହ୍ମଚାରୀ ବା ସନ୍ୟାସୀ ଏବଂ ଆତ୍ମୀୟ ବନ୍ଧୁବର୍ଗ ଉପସ୍ଥିତ ଥିବେ, ନତୁବା ସେମାନଙ୍କୁ ନିମନ୍ତ୍ରଣ କରି ଅଣାଯାଇ ପାରୁଥିବ ପୁଣି ଗୃହସ୍ଥ ସ୍ୱଚ୍ଛନ୍ଦ ଏବଂ ପ୍ରସନ୍ନ ଥିବେ, ସେହିଦିନ କେବଳ ଶ୍ରାଦ୍ଧର ଉପଯୁକ୍ତ ସମୟ । ସେହି ଦିନ ଶ୍ରାଦ୍ଧ କରିବାକୁ ହେବ, ଅର୍ଥାତ୍ ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କର ଏବଂ ବନ୍ଧୁ ବାନ୍ଧବ ଓ ପ୍ରିୟଜନମାନଙ୍କର ସେବା ଶୁଶ୍ରୂଷା ଓ ସତ୍କାର କରିବାକୁ ହେବ । ଯାହାର ଯେଉଁ ପ୍ରୟୋଜନାନୁସାରେ ସେମାନଙ୍କୁ ଅନ୍ନବ୍ୟଞ୍ଜନ, ବସନ, ଭୂଷଣ ଇତ୍ୟାଦି ଦେଇ ସନ୍ତୁଷ୍ଟ କରିବାକୁ ହେବ । ସେତେବେଳେ ପିତା ମାତା ଆତ୍ମୀୟାଦି ପଣ୍ଡିତ ଧାର୍ମିକ ଏବଂ ପରୋପକାରୀ ପୂର୍ବପୁରୁଷମାନଙ୍କର ଗୁଣକର୍ମାଦିର ସ୍ମରଣ ଓ ଚିନ୍ତନ ପୂର୍ବକ ସମାଲୋଚନା କରିବାକୁ ହେବ । ଯେଉଁ କୌଣସି ବିଶିଷ୍ଟବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କରିବାକୁ ହୁଏ, ବିଶେଷ ଭାବରେ ତାହାଙ୍କର ସ୍ମରଣ ଓ ଗୁଣ କୀର୍ତ୍ତନ କରିବାକୁ ହେବ । ଏହାହିଁ ଶ୍ରାଦ୍ଧ ।

——o——

## ଯାଚକ ବ୍ରାହ୍ମଣ ।

ସମସ୍ତ ଜୀବ ମଧ୍ୟରେ ମାନବ ଅଟେ ଶ୍ରେଷ୍ଠଜୀବ । କେବଳ ଜ୍ଞାନ ଦ୍ୱାରା ମାନବ ଏହି ଶ୍ରେଷ୍ଠତ୍ୱ ଲାଭ କରିଅଛି । ଆହାର ନିଦ୍ରା ମୈଥୁନ ଏହି ନିତ୍ୟ ପ୍ରକୃତି ସକଳ ଜୀବର ସ୍ୱାଭାବିକ ଧର୍ମ, ଏ ବାହାରେ ଜ୍ଞାନ ଓ ବିବେକ ମନୁଷ୍ୟର ପାର୍ଥକ୍ୟ । ମନୁଷ୍ୟ ଯେତେବେଳେ ଶାସ୍ତ୍ରାଧ୍ୟୟନ ବିହୀନ ହୁଏ, ଜ୍ଞାନ ବିଜ୍ଞାନରୁ ବଞ୍ଚିତ ହୁଏ, ସେତେବେଳେ ଅନ୍ଧକାରର ଚକ୍ରଠାରେ ଏକାନ୍ତ ବଶୀଭୂତ ହୁଏ । ଯେଉଁମାନେ ବେଦାଦି ସଚ୍ଛାସ୍ତ୍ର ପଢ଼ନ୍ତି, ଜ୍ଞାନ ବିଜ୍ଞାନ ପ୍ରଚାର କରନ୍ତି, ସେମାନେ ହୁଅନ୍ତି ବ୍ରାହ୍ମଣ । ଏହି ବ୍ରାହ୍ମଣମାନେ ଜ୍ଞାନ ବଳରେ ଦେଶରେ, ଜାତିରେ, ସମାଜରେ, ଆଧିପତ୍ୟ ବିସ୍ତାର କରୁଥିଲେ । ଯେତେବେଳେ କାଳକ୍ରମେ ଏହି ବ୍ରାହ୍ମଣମାନେ ବ୍ରାହ୍ମଣୋଚିତ ଗୁଣ ଭ୍ରଷ୍ଟ, କର୍ମ ଭ୍ରଷ୍ଟ କେବଳ ନାମରେ

ମାତ୍ର ବ୍ରାହ୍ମଣ ରହିଲେ ସେତେବେଳେ ଆପଣାର ପୂର୍ବ ପ୍ରତିଷ୍ଠିତ ଆଧିପତ୍ୟ ଛାଡ଼ି ନପାରି ଆହାର ବିଷୟରେ ଏକାଧିପତ୍ୟ ସ୍ଥାପନ କରିବାକୁ ପ୍ରୟାସ କଲେ। ଉଦରମ୍ଭରୀ ବ୍ରାହ୍ମଣମାନେ ଖାଇବାଠାକୁ ମୂଳ କଲେ। ଏହି ଉଦରମ୍ଭରୀ ବ୍ରାହ୍ମଣମାନେ ପ୍ରଥମେ ଖାଇଲେ, ଭଲ ଭଲ ପଦାର୍ଥ ଖାଇଲେ, ଅବଶିଷ୍ଟ ଉଚ୍ଛିଷ୍ଟ ଇତର ଲୋକଙ୍କୁ ଦେଲେ। ଏଥିପାଇଁ ରନ୍ଧନ ଓ ପରିବେଷଣ କାର୍ଯ୍ୟଟାକୁ ନିଜର କରିନେଲେ। ଆଉ କାହାରକି ରାନ୍ଧି ଦେବାକୁ ଦେଲେ ନାହିଁ, ଅନ୍ୟ ଲୋକଙ୍କ ପାଇଁ ରାନ୍ଧି ବାଢ଼ି ଦେବାକୁ ପଡ଼ିଲେହେଁ ରନ୍ଧନ କାର୍ଯ୍ୟଟା ନିଜ ହାତରେ ରଖିଲେ। ଯେଉଁମାନେ ବିଦ୍ୟା ଦେଇ, ଜ୍ଞାନ ଦେଇ ଲୋକଙ୍କୁ ବଶୀଭୂତ କରିଥିଲେ ଏବେ ସେମାନେ ଇତର ଲୋକଙ୍କୁ ଅନ୍ନ ମୁଠେ ଦେଇ ବା ଗଣ୍ଡେ ବାଢ଼ି ଦେଇ ଆପଣାର ଆୟତ୍ତ କରିବାକୁ ବସିଲେ, କେବଳ ବ୍ରାହ୍ମଣ ଦେବା ଅନ୍ନ ବା ବ୍ରାହ୍ମଣ ଘରେ ରନ୍ଧା ହେବା ଅନ୍ନ ଏକା ପବିତ୍ର ପୁଣି କେହି ଲୋକ ଅନ୍ୟ କାହା ହାତରୁ ଖାଇଲେ ତାହାର ଜାତି ଯିବ—ଏହିପରି ବିବିଧ ବ୍ୟବସ୍ଥା ବାହାର କଲେ। କେବଳ ବ୍ରାହ୍ମଣ ଲୋକ ହାତରୁ ଅନ୍ୟ ସମସ୍ତ ଲୋକ ଖାଇ ପାରନ୍ତି ବୋଲି ବ୍ରାହ୍ମଣମାନେ ଆପଣାକୁ ସବୁଠୁଁ ବଡ଼ ବୋଲି ମନରେ ଭାବି ଅଭିମାନ କଲେ। ପୁଣି ଇତର ଲୋକେ ମଧ୍ୟ ବ୍ରାହ୍ମଣମାନଙ୍କୁ ପାଚକ ରୂପେ ଗ୍ରହଣ କଲେ। ବର୍ତ୍ତମାନ ଦେଖାଯାଉଛି ଯେ ଗଉଡ଼, ଓଡ଼ିଆ, କେଳା, କୁମୁଟି, କେଉଟ, କଣ୍ଡରା ଇତ୍ୟାଦି ଲୋକର ବ୍ରାହ୍ମଣମାନେ ହୁଅନ୍ତି ପାଚକ ସେବକ।

ଉଚ୍ଚଜାତୀୟ ଲୋକେ ଅର୍ଥାତ୍ ବ୍ରାହ୍ମଣମାନେ ଯେତେବେଳେ ପାଚକତାକୁ ନିଜର ବ୍ୟବସାୟ କଲେ ସେତେବେଳେ ଜାତି ବିଭାଗଟା ଅନ୍ନଗତ ହେବାକୁ ଲାଗିଲା। ଅନ୍ନ ହେଲା ଜାତିର ଏକ ନିୟାମକ ଅର୍ଥାତ୍ ଅନ୍ନ ଯୋଗେ ଜାତିର ଉଚ୍ଚନୀଚ ଭେଦ କରାଗଲା। ଯେଉଁ ଜାତିର ହାତରୁ ଅନ୍ୟ ଜାତିର ଲୋକେ ଖାଇଲେ, ସେହିଜାତି ହେଲା ଉଚ୍ଚଜାତି ଏବଂ ଖାଇବା ଲୋକେ ହେଲେ ଉକ୍ତ ଜାତିଠାରୁ ନୀଚ। ପାଚକତା ଯାହାକି ଶୂଦ୍ର ଜାତୀୟ ସେବକତା ଥିଲା ଏବେ ହେଲା ବ୍ରାହ୍ମଣର ନିଜସ୍ୱ। ବହୁ ଜାତି ମଧ୍ୟରେ ରନ୍ଧନ ଓ ପରିବେଷଣ କାର୍ଯ୍ୟରେ କେବଳ ବ୍ରାହ୍ମଣମାନେ ନିଯୁକ୍ତ ହେଲେ। ବ୍ରାହ୍ମଣମାନେ ଡୁଣ୍ଡା ଭାଣ୍ଡୁଆ, ଚୁଟିଧରା ଇତ୍ୟାଦି ପୃଥକ ନାମରେ ଆଖ୍ୟାତ ହୁଅନ୍ତି। ବନ୍ଧୁଲୋକ ଏପରି ହେଲାବେଳେ ଜଣେ ବ୍ରାହ୍ମଣକୁ ଲୋଡ଼ି ଆଣନ୍ତି କାହିଁକି ? ସେ ସଦୁପଦେଶ ଦେବେ ଜ୍ଞାନ ଶିଖାଇବେ, ବୁଦ୍ଧି ବଢ଼ାଇବେ ବୋଲି। ଏପରି କଥା କିଛି ଆଉ ନାହିଁ, କେବଳ ସେହି ବ୍ରାହ୍ମଣ ଏହିସବୁ ଲୋକଙ୍କ ପାଇଁ ରାନ୍ଧି ବାଢ଼ି-

ଦେବ ବୋଲି । ବ୍ରାହ୍ମଣମାନଙ୍କୁ ଆଜି ଏକ ପ୍ରକାର ପାଚକ ବା ରାନ୍ଧୁଣିଆ ଜାତି କହିଲେ ଚଳେ । ବ୍ରାହ୍ମଣମାନେ ହୋଟେଲ ଭଳି ଭାତ ବିକନ୍ତି, ଅନ୍ନ ବିକି ଖାଇବା ବ୍ରାହ୍ମଣ ପ୍ରତି ନିଷେଧ ଥିଲେହେଁ ।

ଆହାର ଅନୁସାରେ ବୁଦ୍ଧି, ବଳ, ବପୁ, ଧୈର୍ଯ୍ୟ, ବୀର୍ଯ୍ୟ ଇତ୍ୟାଦି ଜାତହୁଏ । ଆହାରର ଗୁଣ ଉପରେ ମନୁଷ୍ୟର ଗୁଣ କର୍ମ ନିର୍ଭର କରେ । ତାମସିକ ଅହାରରେ ତମଗୁଣ ଜାତହୁଏ ଏବଂ ସାତ୍ତ୍ୱିକ ଅହାରରେ ସାତ୍ତ୍ୱିକ ଗୁଣ ଜାତ ହୁଏ । ବ୍ରାହ୍ମଣମାନେ ରାନ୍ଧି ଦେଲେ ଯେ ପରିଶୁଦ୍ଧ ପବିତ୍ର ସାତ୍ତ୍ୱିକ ଅହାର ଦିଅନ୍ତି ତାହାନୁହେ, ମତ୍ସ୍ୟ ମାଂସ ଇତ୍ୟାଦି ରାନ୍ଧି ପରସନ୍ତି, ଏମନ୍ତ କି ସ୍ଥାନେ ସ୍ଥାନେ କୁକ୍କୁଟ ଶୂକରାଦି ମାଂସ ରାନ୍ଧି ଦେଇଥାନ୍ତି । ବ୍ରାହ୍ମଣ ରନ୍ଧା ବୋଲି ଯଦି ନିରାମିଷ ଆହାର ହେଉଥାନ୍ତା, ତାହାହେଲେ ବ୍ରାହ୍ମଣ ରାନ୍ଧଣାରେ କିଛି ବିଶେଷତ୍ୱ ଥାଆନ୍ତା । ବ୍ରାହ୍ମଣ ରାନ୍ଧୁଛି, ମାଂସ ମାଛ ସବୁ ଅଟେଗ ଖାଇ ଦେବ ପରା ବୋଲି ଅନ୍ୟ ଜାତିସ୍ଥ ଲୋକ ଜଗିଥାନ୍ତି, ରନ୍ଧାବ୍ରାହ୍ମଣଙ୍କୁ ମଧ୍ୟ ବରାଡ଼ି କୁକ୍କୁର ପରି ପ୍ରହାର କରିଥାନ୍ତି । ତଥାପି ବ୍ରାହ୍ମଣମାନେ ରନ୍ଧନ କାର୍ଯ୍ୟକୁ ଶବୃତ୍ତି ନ କହି ସ୍ୱବୃତ୍ତି ବୋଲି ଗ୍ରହଣ କରିଥାନ୍ତି ।

ପାଚକ ବ୍ରାହ୍ମଣମାନେ ପୂଜାରୀ ନାମରେ ଅଭିହିତ ହୁଅନ୍ତି । ଆମ୍ଭେମାନେ ଯେପରି ଫଳ ମୂଳ, ଅନ୍ନ ତରକାରି, ପିଠା ଖଜା ଇତ୍ୟାଦି ଖାଉ, ଆମ୍ଭମାନଙ୍କର ପ୍ରତିମା ଦେବତା ବା ଠାକୁର ମାନଙ୍କୁ ସେହିପରି ଖାଇବାକୁ ଦିଆଯାଏ । ଦେବତାମାନଙ୍କର ଖାଇବାକୁ ଆମ ଦେଶୀ ଭାଷାରେ ପୂଜା କହନ୍ତି । ବ୍ରାହ୍ମଣମାନେ କେବଳ ଦେବତା ମାନଙ୍କୁ ପୂଜା କରନ୍ତି ବା ଖୁଆଇ ଦିଅନ୍ତି । ଏହେତୁ ଏମାନଙ୍କୁ ପୂଜାରୀ କହନ୍ତି । ପିତୁଳା ଦେବତାମାନଙ୍କର ମଧ୍ୟ ଜାତି ଅଛି । ବ୍ରାହ୍ମଣ ଛଡ଼ା ଅନ୍ୟ କାହାରି ରନ୍ଧା ଅନ୍ନ ଏମାନେ ଭୋଜନ କରି ପାରିବେ ନାହିଁ, ପୁଣି ପାକ ସିଦ୍ଧ ନହେବା କଞ୍ଚା ଫଳ ମୂଳ ସୁଦ୍ଧା ବ୍ରାହ୍ମଣମାନେ କେବଳ ଏମାନଙ୍କୁ ଖୁଆଇ ଦେବେ, ଅନ୍ୟ କେହି ବ୍ୟକ୍ତି ଫଳ ମୂଳ ଦେଲେ ସୁଦ୍ଧା ବ୍ରାହ୍ମଣ କେବଳ ପୂଜା କରିବେ ବା ଖୁଆଇ ଦେବେ । ଅନ୍ୟ ଲୋକ ହାତରୁ ଖାଇ ଦେଲେ ସ୍ଥିର ମନୁଷ୍ୟ କଥା ଛାଡ଼, ଦିଅଁ ଦେବତା ମାନଙ୍କର ମଧ୍ୟ ଜାତି ଯାଏ । ଈଶ୍ୱର ସକଳ ପଦାର୍ଥ ସୃଷ୍ଟି କରିଛନ୍ତି, ଜୀବମାନଙ୍କ ପାଇଁ ନାନାବିଧ ଖାଦ୍ୟ ପଦାର୍ଥ ଯୋଗାଇ ଦେଇଛନ୍ତି । ଅତଏବ ଆମମାନଙ୍କର ଉଚିତ ଯେ ଈଶ୍ୱରଙ୍କ ନିକଟରେ କୃତଜ୍ଞତା ଜଣାଇବା ନିମନ୍ତେ ଆମ୍ଭମାନଙ୍କ ଖାଦ୍ୟ ପଦାର୍ଥ ତାହାଙ୍କ ନାମରେ ସମର୍ପଣ କରିବା ଅର୍ଥାତ୍ ଭୋଜନ ପୂର୍ବରେ ଭକ୍ତି ଭାବରେ ତାହାଙ୍କ ନାମ ସ୍ମରଣ କରିବା । କେବେ ଏହି ଭକ୍ତିଭାବ ଏବଂ କୃତଜ୍ଞତା ଦେଖାଇବା

ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ଏଥିପାଇଁ ମଧ୍ୟବର୍ତ୍ତୀ ବ୍ରାହ୍ମଣର ପ୍ରୟୋଜନ ନାହିଁ । ଦେବତାମାନେ ଯେପରି ଖାଆନ୍ତି, ବ୍ରାହ୍ମଣମାନେ ସେହିପରି ପୂଜାଧାରୀ ହୁଅନ୍ତି । ଏହି ସବୁ ପୂଜା ବିଧାନ କଳ୍ପନା କେବଳ ପେଟପାଇଁ । ପୂଜାରୀ ବ୍ରାହ୍ମଣମାନେ ଦେବ ପୂଜକ ନୁହନ୍ତି, ଅଟନ୍ତି କେବଳ ଉଦର ପୂଜକ ବା ପୂଜକ । ଏମାନେ ନିଜର ଉଦରର ଷୋଡଶୋପଚାର ପୂଜା କରିବା ନିମନ୍ତେ ଇତର ଲୋକମାନଙ୍କ ପାଚକତା ଦ୍ୱାରା ପଞ୍ଚୋପଚାର ପୂଜା କରିଥାନ୍ତି ।

ଶରୀର ତତ୍ତ୍ୱ ଓ ସ୍ୱାସ୍ଥ୍ୟ ସାଧନ ନିୟମାନୁସାରେ ପାକ ପ୍ରଣାଳୀ ହେବା ଉଚିତ । ପାକପ୍ରଣାଳୀ ଜାଣିବା ସକାଶେ ଜ୍ଞାନ ବିଜ୍ଞାନ ଦରକାର । ବ୍ରାହ୍ମଣମାନେ ବେଦ ଶାସ୍ତ୍ରାଧ୍ୟୟନ କରି ପାକ ପ୍ରଣାଳୀର ବିଜ୍ଞାନ ଜାଣନ୍ତି । ଏମାନେ ଅନ୍ୟାନ୍ୟ ବୈଷୟିକ ଓ ଅଧ୍ୟାତ୍ମିକ ଶିକ୍ଷା ସଙ୍ଗେ ସଙ୍ଗେ ପାକ ପ୍ରଣାଳୀର ମଧ୍ୟ ଶିକ୍ଷା ଦିଅନ୍ତି ଏବଂ ଇତର ସାଧାରଣ ଲୋକମାନେ ଦୈହିକ ପରିଶ୍ରମ ପୂର୍ବକ ରନ୍ଧନ କାର୍ଯ୍ୟରେ ଲାଗନ୍ତି । ବର୍ତ୍ତମାନ ଯୁଗରେ ଏହାର ଠିକ ବିପରୀତ ଦେଖାଯାଉଅଛି । ବ୍ରାହ୍ମଣ ନାମାମାନେ ହୁଅନ୍ତି ପାଚକ, ଇତର ଜାତିର ଲୋକେ ହୁଅନ୍ତି ଏମାନଙ୍କର ଶିକ୍ଷକ । କିଣ ରାନ୍ଧିବାକୁ ହେବ, କିପରି ରାନ୍ଧିବାକୁ ହେବ, କିପରି ଯୋଗ ଦିଆଯାଇ କରିବାକୁ ହେବ ଇତ୍ୟାଦି ବିଷୟ ଇତର ଜାତୀୟ ମାଲିକ ବ୍ୟକ୍ତି ବତାଇ ଦେବେ, ବ୍ରାହ୍ମଣ ବିଚରା ପାଣି ଅଣିବା, କାଠ ଆଣିବା, ପନିବା କାଟିବା, ମସଲା ବାଟିବା, ଚୁଲିଜଳାଧୂଆ, ଭାତରନ୍ଧା ଇତ୍ୟାଦି କାର୍ଯ୍ୟକରିବ । ଏହିପରି ବ୍ରାହ୍ମଣ ଜାତି ଆଜି ପାଚକ ଜାତିରେ ପରିଣତ ହୋଇଅଛି ।

---

## ମୃତବତ୍ସା ଦୋଷର ପ୍ରତିକାର ।

ଭୁବନେଶ୍ୱର ତୀର୍ଥ କୁଣ୍ଡର ଜଳ ଅବଶ୍ୟ ରୋଗ ନିବାରକ ଏବଂ ଆରୋଗ୍ୟ ପ୍ରଦ, କିନ୍ତୁ ମରୀଚିକୁଣ୍ଡ, ଦୁଉଡ଼ୁ କୁଣ୍ଡ ଜଳରେ ସ୍ନାନ କଲେ ଏବଂ ପଣ୍ଡାମାନଙ୍କର ବ୍ୟବସ୍ଥା ପାଳନ କଲେ ଯେ, ସ୍ତ୍ରୀ ମାନଙ୍କର ବନ୍ଧ୍ୟା ଓ ମୃତବତ୍ସା ଦୋଷ ନିବାରିତ ହେବ, ଏହାର କୌଣସି ଶାସ୍ତ୍ରୀୟ ବିଧି କିମ୍ବା ବୈଜ୍ଞାନିକ ପ୍ରମାଣ ଅଭାବରେ ଏହାକୁ କୁସଂସ୍କାର ବା ଅନ୍ଧ ବିଶ୍ୱାସ ବୋଲାଯିବ । ସେ ଯାହା ହେଉ ଭାବ ଦେଖିଲେ ଜଣା-ଯାଏ ଯେ ମୃତବତ୍ସା ଦୋଷ ନିବାରଣର ଅନ୍ୟ ଉପାୟ ଅଛି ।

କୌଣସି ଭୂମିରେ ଯଦି ଶସ୍ୟ ଉତ୍ପନ୍ନ ହୁଏ ନାହିଁ, କିମ୍ବା ହେଲେ ମଧ୍ୟ ଯଥା ପରିମାଣରେ ଭଲ ଫସଲ ଆଦାୟ ହୁଏ ନାହିଁ, ତେବେ ଉକ୍ତ ଜମିରେ ବର୍ଷେ-

କେବେ କୌଣସି ଫସଲ ଲଗାଇ ଛାଡ଼ି ଦେବାକୁ ହୁଏ, ନଚେତ୍ ଅନ୍ୟ କୌଣସି ବୀଜ ରୋପଣ କରିବାକୁ ହୁଏ । ଏପରି କରିବା ଦ୍ୱାରା ଭୂମିର ଉତ୍ପାଦିକା ଶକ୍ତି ବଢ଼େ ଏବଂ ତହିଁରେ ଯଥେଷ୍ଟ ପରିମାଣରେ ଶସ୍ୟ ଉତ୍ପନ୍ନ ହୁଏ । ସେହିପରି କ୍ଷେତ୍ର ଓ ବୀଜ ପ୍ରତି ଏହି ନିୟମ । ରଜ ହେଉଛି କ୍ଷେତ୍ର ଏବଂ ବୀର୍ଯ୍ୟ ହେଉଛି ବୀଜ, ତେବେ ସ୍ତ୍ରୀ ଓ ପୁରୁଷ ପ୍ରତି ଏହି ନିୟମ କାହିଁକି ବା ଖଟି ନପାରେ । ରଜ ବା ବୀର୍ଯ୍ୟ ଦୋଷରୁ ବନ୍ଧ୍ୟା ବା ମୃତବତ୍ସା ଦୋଷ ଜନ୍ମେ । ଏହି ଦୋଷ ନିବାରଣ ସକାଶେ କିଛିକାଳ ସ୍ତ୍ରୀ ସେବା ପରିତ୍ୟାଗ କରିବାକୁ ହେବ । କେବଳ ଋତୁକାଳେ ଋତୁଦାନ କରିବାକୁ ହେବ । ଗର୍ଭବତୀ ସ୍ତ୍ରୀ ସହିତ ଆଉ କୌଣସି ମୈଥୁନ ସମ୍ପର୍କ ରଖିବାକୁ ହେବନାହିଁ । ନଚେତ୍ ବୀର୍ଯ୍ୟର ଯଥା ସମ୍ଭବ ପରିବର୍ତ୍ତନ କରିବାକୁ ହେବ । ପୂର୍ବ କାଳରେ ସନ୍ତାନ ସକାଶେ ଭର୍ତ୍ତା ନିଜଭାର୍ଯ୍ୟାକୁ ଅନ୍ୟ ପୁରୁଷ ସମ୍ପର୍କ ଅନୁମତି ଦେଉଥିଲେ । ସତୀ ସାଧ୍ୱୀ ସ୍ତ୍ରୀମାନେ ମଧ୍ୟ କେବଳ ସନ୍ତାନ ସକାଶେ ଅନ୍ୟ ପୁରୁଷ ସଂସର୍ଗ କରୁଥିଲେ ପୁଣି ଋତୁ ନାମରେ ବୀର୍ଯ୍ୟ ଆଣି ଅସ୍ୱୀକାର କରୁଥିଲେ । ଏହା ସବୁ ପୁରାଣର କଥା । ପୁରାଣବାଦୀମାନେ ଏହା କଦାପି ଅସ୍ୱୀକାର କରି ପାରିବେ ନାହିଁ । ତେବେ ଏହି ପୁରାତନ ସନାତନ ବ୍ୟବସ୍ଥା ଆଜି କାହିଁକି ପାଳିତ ହେବନାହିଁ ?

ଆଜି ଏକ କଥା । ଅନେକ ଯୁବକ ଯୁବତୀ ବା ନବ ଦମ୍ପତି ରତି କ୍ରୀଡ଼ାରେ ଅତିରିକ୍ତ ଆସକ୍ତ । ଏମାନଙ୍କର ସାଧାରଣତଃ ଦିନ ରାତି, ଋତୁ ଅଋତୁ, ବିଧି ନିଷେଧ କିଛି ବିଚାର ନଥାଏ, ସନ୍ତାନ ଉତ୍ପାଦନ ଇଚ୍ଛା ପ୍ରବଳ ନଥାଏ, କେବଳ ଇନ୍ଦ୍ରିୟ ସୁଖାଭିଳାଷ ପୂରଣ ପ୍ରବୃତ୍ତି ପ୍ରାୟ ପୋଷଣ ଥାଏ । ଏହିସବୁ ଅତ୍ୟାଚାର ବା ଦୁରାଚାରର ଖବର ବୁଝୁଛି କିଏ ? ଏ ବିଷୟରେ ଲେଖିବା, ପଢ଼ିବା, କହିବା, ପଚାରିବା ସବୁ ଅଶ୍ଳୀଳ, ଅଶିକ୍ଷାଚାର । ଝିଅ ପୁଅଙ୍କୁ ବାହା ଚୂଡ଼ା କରିଦେବା ବାପା ମାଆଙ୍କର ପ୍ରଧାନ ଦେଶାଚାର, ମାତ୍ର ଏ ସବୁ ବିଷୟ ବୁଝିବା ତାଙ୍କର ନାଚାର ।

ଶେଷ କଥା, ମାତ୍ର ସାରକଥା ଏବଂ ସବୁ ରୋଗର ଏକମାତ୍ର ମହୌଷଧ ଏହି ଯେ, ବାଳକ ବାଳିକା ଏବଂ ଯୁବକ ଯୁବତୀମାନଙ୍କୁ ସର୍ବାଦୌ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ହେବ ।

"ବ୍ରହ୍ମଚର୍ଯ୍ୟ ମହିମା ବଳେ          ମରଣ ଜିଣିପାର ହେଳେ ।"

ଋଷି ମୁନିମାନେ ବ୍ରହ୍ମଚର୍ଯ୍ୟ ବଳରେ ଦୀର୍ଘଜୀବୀ ସୁସନ୍ତାନ ଉତ୍ପାଦନ କରି ପାରୁ ଅଛନ୍ତି । ଅଭିଭାବକମାନେ ଶତ ଶୁଭକାମନା କଲେହେଁ ପଣ୍ଡାମାନଙ୍କ ଭଣ୍ଡାମିରେ ପଡ଼ି ରାମକୁଣ୍ଡ, ସୀତାକୁଣ୍ଡ, ମରଣି କୁଣ୍ଡ, ଦୁଗ୍ଧ କୁଣ୍ଡ ଇତ୍ୟାଦିରେ ମୁଣ୍ଡ ବୁଡ଼ାଉଛନ୍ତି

ପରଶ୍ରମ ସବୁ ପଣ୍ଡ । ବାଲ୍ୟ ବବାହ ପରତ୍ୟାଗ କର । ବ୍ରହ୍ମଚର୍ଯ୍ୟ ଅବଲମ୍ବନ କର । ବନ୍ଧ୍ୟା ଦୋଷ, ମୃତବତ୍ସା ଦୋଷ ସବୁ ଖଣ୍ଡନ ହେବ ଏବଂ ଦୀର୍ଘ ଜୀବନ ଲାଭ କରିବ ।

—o—

## ବ୍ରାହ୍ମଣ ଭୋଜନ ।

ଶ୍ରଦ୍ଧା ପୂର୍ବକ ଯେଉଁ କାର୍ଯ୍ୟ କରଯାଏ ତାହାକୁ ଶ୍ରାଦ୍ଧ କହନ୍ତି । ଆଙ୍କ କୌଣସି ବଶେଷ ଘଟନାର ସ୍ମରଣ ଉପଲକ୍ଷେ ମୁଁ କେତେଜଣ ଲୋକଙ୍କୁ ଭୋଜନ ଦେବାର ଆୟୋଜନ କଲି । ଏମାନଙ୍କ ମଧ୍ୟରେ ବହୁ ସଂଖ୍ୟକ ବ୍ରାହ୍ମଣମାନେ ଥିବାରୁ ଏହି ଭୋଜନକୁ ବ୍ରାହ୍ମଣ ଭୋଜନ କହାଯାଏ । ଯେଉଁ ଦନ ମୁଁ ଏ ବ୍ରାହ୍ମଣ ଭୋଜନ ଦେବା ସ୍ଥିର କରଥିଲି ତତ୍ପୂର୍ବଦନ ମୋହର କୌଣସି ଭାଇଙ୍କର ଗୋଟିଏ ଝିଅ ଜନ୍ମ ହୋଇଥିଲା । ଅମ୍ଭେମାନେ ସୂତକାଶୌଚ ହୋଇଗଲୁ ବୋଲ ବ୍ରାହ୍ମଣ ଭୋଜନାଦ କୌଣସି ବଧାନ କରବାପାଇଁ ଅନେକ ଲୋକ ନଷେଧ କଲେ । ମୁଁ ବୁଝି ପାରଥିଲି ଯେ ଏପରି କୌଣସି ଘଟନା ଯୋଗୁ କେହି ବ୍ରାହ୍ମଣ ଅଶୁଚି ହୋଇ ପାରେ ନାହିଁ । ଷଟ୍‌କର୍ମୀ ନିରତ ବ୍ରାହ୍ମଣକୁ ଏହି ଦୋଷ ସ୍ପର୍ଶ କର ପାରେ ନାହିଁ । ମୁଁ ଯଥାସାଧ୍ୟ ଓ ଯଥାସମ୍ଭବ ବ୍ରାହ୍ମଣର ପଞ୍ଚ ମହାଯଜ୍ଞ ବଧାନ ପାଳନ କରୁଥିଲେ ହେଁ ମୋ ଭାଇଘରେ ଝିଅ ଜନ୍ମ ହେଲା ବୋଲି ଲୋକେ ମୋତେ ଅଶୌଚ ଦୋଷରେ ଦୋଷୀ କରୁଥିଲେ । ଏହି ଦୋଷାରୋପ ପ୍ରତି ଭ୍ରୂକ୍ଷେପ ନକରି ମୁଁ ଉକ୍ତ ବ୍ରାହ୍ମଣ ଭୋଜନର ଅୟୋଜନ କଲି । ଆଜକାଲର ବ୍ରାହ୍ମଣମାନେତ ବଶେଷତଃ ଶାସନୀ ବ୍ରାହ୍ମଣମାନେ ଜହ୍ଵାଲାଳସା ବା ପୋଡାପେଟ ପାଇଁ ହାଣ୍ଡିଦ୍ୱାର ଶୁଙ୍ଘି ପିଣ୍ଡା ବୁଲୁଛନ୍ତି । ମୋହର ଭୋଜନ ଦେବା ଶୁଣି ଆହୂତ ଅନାହୂତ ଅନେକ ବ୍ୟକ୍ତି ଆସିଗଲେ । ୬୦ ଲୋକ ପାଇଁ ସାମଗ୍ରୀ ହୋଇଥିଲା କନ୍ତୁ ପ୍ରାୟ ଦେଢଶତ ଲୋକ ଉପସ୍ଥିତ ହେଲେ । ୬୦ ଲୋକ ନମନ୍ତ୍ରିତ ହୋଇଥିଲେହେଁ ପୁରା ଏକଶତ ଲୋକପାଇଁ ଖଇ ଦହି, ପାନୁଅ ଭାକରା ଇତ୍ୟାଦ ପ୍ରସ୍ତୁତ ହୋଇଥିଲା । ଘରପିଛା ଗୋଟିଏ ଲୋକଙ୍କୁ ନିମନ୍ତ୍ରଣ କର ଥିଲା ବେଳେ ଅନେକଲୋକ ପୁଅ ନାତ ଭାଇମାନଙ୍କୁ ଧରି ଜଣକେ ଚାରି ପାଞ୍ଚଜଣ ଲେଖାରେ ଆସିଲେ । ଆଜି ଏ ଦେଶରେ ଏହି ଗୃଳ ପଡଅଛି ଯେ ଜଣକୁ ଡାକଲେ ଖାଇବା ଆଶାରେ ପାଞ୍ଚଜଣ ଆସୁଛନ୍ତି । ଅନାହୂତ ହୋଇ ଆସିବା ଉଚିତ ନୁହେ, ଏହି ଶିକ୍ଷା ଦେବାହିଁ ମୋହର ଏହି ବ୍ରାହ୍ମଣ ଭୋଜନ ଆୟୋଜନର କାରପଣ ଉଦ୍ଦେଶ୍ୟ ଥିଲା । ନମନ୍ତ୍ରଣ ତାଲିକା ଅନୁସାରେ ମୁଁ ପ୍ରଥମେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ବାଛି ଗୋଟିଏ ଏକତ୍ରିତ କଲି । ଅନାହୂତ ଲୋକମାନଙ୍କୁ ପରେ ଦଅଯିବ ବୋଲି କହି

ହୋଇ ପ୍ରଥମେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ଚର୍ଚ୍ଚା କରାଗଲା । ବହୁଲୋକ ଭୋଜନ କଲାବେଳେ ବିଶେଷତଃ ଏଭଳି ବ୍ରାହ୍ମଣ ଭୋଜନରେ ବ୍ରାହ୍ମଣମାନଙ୍କୁ ଆସନ ଦିଆ ଯାଏନାହିଁ । ଏମାନଙ୍କୁ ଆସନ ଦେବା ଉଚିତ ମନେକରି ମୁଁ ଏକ ଖଳିବସ୍ତା କିଣିଲି ପ୍ରତ୍ୟେକ ବ୍ରାହ୍ମଣ ନିମନ୍ତେ ଖଣ୍ଡିଏ ଲେଖେ ପତ୍ରାସନ ଦିଆଗଲା । ଭୋଜନବେଳେ ଦେଖାଗଲା ଯେ ଅନେକେ ଖାଦ୍ୟ ସାମଗ୍ରୀ ମାଗି ରଖୁଛନ୍ତି, କିନ୍ତୁ ଖାଇ ପାରୁନାହାନ୍ତି । ବୁଝାଗଲା ଯେ ଅନେକ ଲୋକ ନିଜଘରେ ଖାଇ ଆସିଛନ୍ତି ପୁଣି ଅନ୍ୟ କେତେ ଲୋକ ଅନ୍ୟତ୍ର କୌଣସି ବ୍ରାହ୍ମଣ ଭୋଜନରେ ଯୋଗଦେଇ ସାରି ଆସିଛନ୍ତି । ଏମାନେ ଖାଇ ନପାରିଲେ ହେଁ ଜିହ୍ୱା ଲାଳସା ଛାଡି ନପାରି ସାମଗ୍ରୀ ଗ୍ରହଣ କରନ୍ତି କିମ୍ବା ଲୋଭ ପରବଶ ହୋଇ ଭୋଜନ ଦାତା ବା ପରିବେଷଣକାରୀ ମାନଙ୍କ ବିନାଦୃଷ୍ଟିରେ ପତ୍ରରୁ ଉଚ୍ଛିଷ୍ଟ ପଦାର୍ଥ ଉଠାଇ ନେଇ ଅନ୍ୟ କୌଣସି ପାତ୍ରରେ ପାର୍ଶ୍ୱଦେଶରେ ଲୁଚାଇ ରଖିଦେଇ ପାଳୁଅ ଅଣ, କାକରା ଅଣ ବୋଲି ରଡ଼ି ଛାଡ଼ୁଥାନ୍ତି । ଏ ସମୟରେ ଡାକରା ନହେବା ଲୋକେ ଚତୁର୍ଦ୍ଦିଗରେ ବେଢ଼ି ଭୋଜନ ଦିଅ ଯାଉବୋଲି ରଡ଼ି ପାଡୁଥାନ୍ତି । ଅନେକ ବ୍ରାହ୍ମଣ ଠେଲି ଠେଲି ଦ୍ୱାରଭାଙ୍ଗି ଘରେ ପ୍ରବେଶ କରି ଗୃହସ୍ଥ ବା ଯଜମାନ ଉପରେ ରାଗନ୍ତି ପୁଣି ଏତେଦୂର ବିରକ୍ତ କରି ଦିଅନ୍ତି ଯେ ଏମାନଙ୍କୁ ଗାଳିଦେଇ ଧକାମାରି ବାହାର କରିଦେବାକୁ ହୁଏ । ଆଜି ବ୍ରାହ୍ମଣ ଭୋଜନ ଦେଲି ବୋଲି ମୋହର ଯେତେଦୂର ସନ୍ତୋଷ ହେଉଥାନ୍ତା ଅନେକ ବ୍ରାହ୍ମଣ ପ୍ରତି କ୍ରୋଧାନ୍ୱିତ ହୋଇ ଧକାଦେଇ ଘଉଡ଼ାଇ ଦେଇଅଛି ବୋଲି ତତୋଽଧିକ ଅନୁତାପ ଭୋଗ କରୁଅଛି । ଏମାନେ ଯଦି କିଛି ଠିକିଏ ସମୟ ଅପେକ୍ଷା କରିଥାନ୍ତେ, ଅନାହୂତ ହୋଇଥିଲେହେଁ ଅବଶ୍ୟ ଭୋଜନ ପାଇଥାନ୍ତେ । ଏମାନଙ୍କ ପାଇଁ ଯଥେଷ୍ଟ ସାମଗ୍ରୀ ରଖା ଯାଇଥିଲା ।

ତାହାସବୁ ପରେ ଅନ୍ୟାନ୍ୟ ଅନେକ ଇତର ଲୋକଙ୍କୁ ଡାକି ଦେବାକୁ ହେଲା । ଭୋଜନ ଦେବାପାଇଁ ଆଜି କୁଳପୁରୋହିତଙ୍କୁ ନିମନ୍ତ୍ରଣ କରାଯାଇ ଥିଲା । ପୁରୋହିତଙ୍କର ଗୁରୁଜଣ ଭାଇଙ୍କୁ ମଧ୍ୟ ଡକା ଯାଇଥିଲା । ପୁରୋହିତ ମହାଶୟ ଆପଣାର ଭାଇ ଭଗାରି ମାନଙ୍କୁ ଧରି ଆସି ପୂର୍ଣ୍ଣଗ୍ରାସ ଖାଇ ଦେଇ ସାରି ନିଜ ଘରକୁ ନେବେ ବୋଲି ପୁରୋହିତ ପାଉଣା ନାମରେ ଆଉ ସାମଗ୍ରୀ ମାଗନ୍ତି । ଯଜମାନର ମଙ୍ଗଳ ବାଞ୍ଛା କରି ସମସ୍ତ ଅନୁଷ୍ଠାନରେ ପରାମର୍ଶ ଦେବା ଓ ସାହାଯ୍ୟ କରିବାହିଁ ପୁରୋହିତର କର୍ତ୍ତବ୍ୟ । ଉପଯୁକ୍ତ ବ୍ୟକ୍ତିମାନେ ନିମନ୍ତ୍ରଣ ପାଇଲେକି ନାହିଁ, ନିମନ୍ତ୍ରିତ ଲୋକମାନଙ୍କର ଯଥାବିଧି ସେବାଶୁଶ୍ରୂଷା ହେଲାକି ନାହିଁ, ସାମଗ୍ରୀ ସବୁ ଠିକ ହେଲାକି ନାହିଁ, କାହାର କୌଣସି ଅଭାବ ଅଭିଯୋଗ

ରହି ଗଲାଣି; ଏହି ସକଳ ବିଷୟ ବୁଝିବା ପୁରୋହିତଙ୍କର କର୍ତ୍ତବ୍ୟ । କିନ୍ତୁ ଅର୍ଥଲୋଭୀ ପୁରୋହିତ ଏହି ସବୁ ବିଷୟ କିଛି ନବୁଝି ଗ୍ରାସେ ଖାଇ ଆଉକିଛି ସାମଗ୍ରୀ ସଂଗ୍ରହ କରି ଚାଲି ଯିବାକୁ ଉଦ୍‌ଗ୍ର । ଏହି ପୁରୋହିତମାନେ ଯଜମାନର ଅନୁଗ୍ରହ କେବଳ । ପୁଣି ଏହି ବ୍ରାହ୍ମଣ ଭୋଜନ ଦେବା ଗୃହସ୍ଥ ପକ୍ଷରେ ମହା ପାପ କର୍ମ ବୋଲିବାକୁ ହେବ । ପୂର୍ବକାଳେ ବ୍ରାହ୍ମଣ ଥିଲେ । ଏମାନଙ୍କୁ ଭୋଜନ ଦେବା ପୁଣ୍ୟକର୍ମ ଥିଲା । ଏବେ ସେ ବ୍ରାହ୍ମଣ ନାହାନ୍ତି । ଯେଉଁ ବ୍ରାହ୍ମଣ-ନାମାମାନେ ଭୋଜନ ଅନ୍ୱେଷଣରେ ବୁଲନ୍ତି, ଏମାନେତ ବ୍ରାହ୍ମଣ ନୁହନ୍ତି, ଏମାନେହିଁ ବ୍ରାହ୍ମଣ ଚଣ୍ଡାଳ । ଏମାନଙ୍କୁ ଭୋଜନଦେଇ କୌଣସି ଗୃହସ୍ଥ ଇହକାଳରେ ଆତ୍ମତୃପ୍ତି ବା ପ୍ରଶଂସା ପାଏନାହିଁ କିବା ପରଲୋକରେ ସଦ୍‌ଗତି ପାଇ ପାରେନାହିଁ ।

ଏହି ବ୍ରାହ୍ମଣ ଭୋଜନକୁ ଲୋକେ ଯେତେବେଳେ ପୁଣ୍ୟ କର୍ମ ଜ୍ଞାନକଲେ ସୂତ୍ରଗୁଚ୍ଛଧାରୀ ବ୍ରାହ୍ମଣନାମିମାନେ ଭୋଜନକୁହିଁ ଆପଣାର ପ୍ରଧାନ କର୍ତ୍ତବ୍ୟ ଜ୍ଞାନକଲେ । ବ୍ରାହ୍ମଣମାନେ ଅବିଦ୍ୟ, ଅଜ୍ଞାନ ହେବା ଯୋଗୁଁ ଯଜନ, ଯାଜନ ଅଧ୍ୟୟନ, ଅଧ୍ୟାପନ ଛାଡି ଆପଣାର ଭୋଜନକୁହିଁ ମୂଳକଲେ ଏବଂ ଯଜମାନ ପକ୍ଷରେ ବ୍ରାହ୍ମଣମାନଙ୍କୁ ଭୋଜନଦେବାହିଁ ପ୍ରଧାନ ଧର୍ମ କର୍ମବୋଲି ଲୋକରେ ପ୍ରଚାର କଲେ । ଏହାର ଫଳ ଏହା ହେଲା ଯେ ଲୋକସାଧାରଣ ଅଜ୍ଞାନ ଅବିଦ୍ୟ ରହିଲେ ଏବଂ ବ୍ରାହ୍ମଣମାନେ ଶିଶ୍ନୋଦର ପରାୟଣ ହେଲେ । ଅତଏବ ଦକ୍ଷିଣାସ୍ୱରୂପ କେବଳ ବିଦ୍ୱାନ ବ୍ୟକ୍ତିମାନଙ୍କୁ ଅନ୍ନ ବସ୍ତ୍ରାଦି ଦେଇ ସତ୍କାର କରିବା ବ୍ୟତୀତ ଆଜିକାଲିର ବ୍ରାହ୍ମଣ ଭୋଜନ ନିରର୍ଥକ । ଅବେଦ ହୁଏ ଭୋଜନଦ୍ୱାରା ଦାତା ଓ ଗ୍ରହୀତାର ଅମଙ୍ଗଳ ଓ ଅବନତି ସୁନିଶ୍ଚିତ ବୋଲିବାକୁ ହେବ । ମୁଁ ଆଜଠାରୁ ଏହା ନିଶ୍ଚୟ କଲି ଯେ ଆଉ କେବେ ଏପରି ବ୍ରାହ୍ମଣ ଭୋଜନ ଦେବନାହିଁ । ଆପଣମାନେ କହିପାରନ୍ତି ଯେ, ତୁମେ ନଦେଲେ କଣ ବ୍ରାହ୍ମଣ ଭୋଜନଟା ସମାଜରୁ ଉଠିଯିବ ? ତୁମଠାରୁ ବଳି ଲକ୍ଷ ଲକ୍ଷ ଲୋକ ବ୍ରାହ୍ମଣ ଭୋଜନ ଦେବେ, ତୁମେ ଦେଲନାହିଁ ବୋଲି ବ୍ରାହ୍ମଣମାନେ ଖାଇବାକୁ ନପାଇ ମରି ଯିବେନାହିଁ । ସତ୍ୟ, କିନ୍ତୁ ଚିନ୍ତାଶୀଳ, ପରିଣାମଦର୍ଶୀ, ହୃଦୟବାନ୍, ହିତାକାଂକ୍ଷୀ ବ୍ୟକ୍ତିମାନେ କଦାପି ଏହି ବ୍ରାହ୍ମଣ ଭୋଜନର ପ୍ରଶ୍ରୟ ଦେଇ ପାରିବେ ନାହିଁ । ଭୋଜନ ଦାନ ଅପେକ୍ଷା ବ୍ରହ୍ମଦାନ ଅର୍ଥାତ୍ ବିଦ୍ୟାଦାନ ପରମ ଶ୍ରେୟସ୍କର । ବିଦ୍ୟାଦାନ ଓ ଶିକ୍ଷା ପ୍ରଚାର ନିମନ୍ତେ ଧନ ବ୍ୟୟ କରିବା ପ୍ରତ୍ୟେକ ଧନୀ ଲୋକର କର୍ତ୍ତବ୍ୟ ଏବଂ ବିଦ୍ୱାନ ବ୍ୟକ୍ତିର ବିଦ୍ୟାଦାନହିଁ

ପ୍ରଧାନ ଧର୍ମ । ଲୋକମାନେ ବରଂ ବିଦ୍ୟାଶିକ୍ଷା କଲେ ଜୀବିକା ନିର୍ବାହ କରି ସ୍ୱୀୟ ସ୍ୱାଚ୍ଛନ୍ଦ୍ୟ ଲାଭ କରି ପାରିବେ, ଭୋଜନ ଅନ୍ୱେଷଣରେ ଦ୍ୱାର ଦ୍ୱାର ବୁଲି ଅପମାନିତ ହେବେନାହିଁ । ବିଦ୍ୱାନ ଲୋକ ସର୍ବତ୍ର ସେବା ପୂଜା ପାଆନ୍ତି । ସେମାନଙ୍କର କୌଣସି ଅଭାବ ରହେନାହିଁ ।

ଆଉ ଏକ କଥା ଭୋଜନରେ ଲୋକ ତୃପ୍ତି ଲାଭ କଲେହେଁ ଅର୍ଥାତ୍ କୌଣସି ନିର୍ଦ୍ଦିଷ୍ଟ ପରିମାଣରେ ଉଦର ପୂରିଲେହେଁ ଏହି ସନ୍ତୋଷ କେବଳ କ୍ଷଣସ୍ଥାୟୀ, ଯେହେତୁ ଅପର କ୍ଷଣରେ ଉଦରସ୍ଥ ଅନ୍ନ ଜୀର୍ଣ୍ଣହୋଇ ପୁରୀଷରେ ପରିଣତ ହୁଏ ଏବଂ ପରେ ସେହି କ୍ଷୁଧା ତୃଷା ଯନ୍ତ୍ରଣା ଭୋଗ କରିବାକୁ ପଡ଼େ । ପୁଣି ଏହି ଭୋଜନ ବ୍ୟବସ୍ଥା ଦ୍ୱାରା ବହୁଲୋକଙ୍କର କିମ୍ବା ବହୁ କାଳ ପାଇଁ ଅନ୍ନ ସଂସ୍ଥାନ କରାଯାଇପାରେ ନାହିଁ । ଅତଏବ ଅନ୍ନଦାନ ଅପେକ୍ଷା ବିଦ୍ୟାଦାନ କିମ୍ବା ଜୀବିକାର ଆୟୋଜନ ଶ୍ରେଷ୍ଠତର । ଅନ୍ନଦାନ ବା ଭୋଜନ ବ୍ୟବସ୍ଥା ନିଷ୍ପ୍ରୟୋଜନ । ଦେଶକାଳପାତ୍ର ବିବେଚନାରେ ଏହାର ଫଳାଫଳ ନିରୂପିତ ହୁଏ । ଯାହାହେଉ ଅଯୋଗ୍ୟ ପାତ୍ରରେ ଦାନକଲେ କୁଫଳ ଉତ୍ପନ୍ନ ହୁଏ ପୁଣି ସତ୍‌ପାତ୍ରରେ ସଫଳ ହୁଏ । ସଂଗତି ସମ୍ପନ୍ନ କିମ୍ବା ଆଳସ୍ୟ ପରାୟଣ, ନାମଧାରୀ ବ୍ରାହ୍ମଣମାନଙ୍କୁ ଭୋଜନ ଦେବାଦ୍ୱାରା କେବଳ ସେମାନଙ୍କର ଅକର୍ମଣ୍ୟତା, ଆଳସ୍ୟ ଓ ପରମୁଖାପେକ୍ଷୀ ଭାବର ବର୍ଦ୍ଧନ କରିବାକୁ ପଡୁଅଛି । ଭୋଜନ ଦେବାକୁ ହେଲେ ଦୀନ ଦରିଦ୍ର, ଦୁଃଖୀ ରଙ୍କି, କ୍ଷୁଧାର୍ତ୍ତ ଏମାନଙ୍କୁ ଦେବା ଉଚିତ । ଏମାନେ ନିର୍ଲଜ୍ଜ, ନିର୍ଭୀକ, ଦୁର୍ଜନ ବ୍ରାହ୍ମଣ ପରି ଧର୍ଷଣ କିମ୍ବା ଅତ୍ୟାଗ୍ରହ କରି ପାରନ୍ତି ନାହିଁ, ପାଇଲେ ଖାଆନ୍ତି, ନମିଳିଲେ ଭୋକେ ଉପାସେ ମରନ୍ତି । ଅତଏବ ଯେଉଁମାନେ ନପାଇଲେ ବା ନଖାଇଲେ ଜୀବନ ଧାରଣ କରି ପାରିବେ ନାହିଁ ସେହିମାନଙ୍କୁହିଁ ସର୍ବାଦୌ ଅନ୍ନ ବସ୍ତ୍ରାଦି ପଦାର୍ଥ ଦାନ କରିବା ଉଚିତ ।

ଅତପାସ୍ତ୍ୱନଧୀୟାନଃ ପ୍ରତିଗ୍ରହ ରୁଚିର୍ଦ୍ୱିଜଃ ।
ଅମ୍ଭସ୍ୟ ସ୍ପ୍ଲବେନେବ ସହତେନୈବ ମଜ୍ଜତି । ମନୁ ।

——୦——

# ସମୟ୍ଯାଚାରିତ ।

"ଯୋ ଠେଁ ଯୋ କଥା ନକହିଲେ ଚଳି ପାରିବ ନାହିଁ ।"— ଜଣେ ଛାତ୍ର ଏକ ଦିନ ଏହିକଥା କହିଥିଲେ । ଏହି ଛାତ୍ର ଦିନେ ଆପଣା ସ୍କୁଲର ନୀତି ଓ ନିୟମାବଳୀ କହୁଥିଲା ବେଳେ କହିଲା ଯେ ସେମାନେ ପରୋପକାର କରିବା ଶିଖନ୍ତି, ବାପାପିତା ଭକ୍ତ, ଶୁଚିବନ୍ତ ହେବା ଶିଖନ୍ତି, ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି ଇତ୍ୟାଦି । ଏହି ଛାତ୍ରକୁ ଜଣେ ଲୋକ ପଚାରିଲା, "ଆଚ୍ଛା ତୁମ୍ଭେମାନେ ଖାଇଲାବେଳେ ଲୁଗା ବଦଳାଅ କି ? ପୁଣି ବ୍ରାହ୍ମଣ, ଶୁଦ୍ର ଓ ଇତର ଜାତିମାନେ ପୃଥକ୍ ପୃଥକ୍ ହୋଇ ବସି ଖାନ୍ତି ଠିକ ?" ଛାତ୍ର କହିଲେ "ହଁ ବଦଳାଉଁ, ପୃଥକ ହୋଇ ଖାଉଁ" । ଖାଇଲାବେଳେ ଲୁଗା ନପାଲଟିଲେ ଅର୍ଥାତ୍ ମଠା ବା ଗାମୁଛା ଖଣ୍ଡେ ନପିନ୍ଧିଲେ ଚଉଦ ବର୍ଷର ତପସ୍ୟା ଶୁଖୁଆ ପୋଡାରେ ଯାଏ । ଲୋକେ ଏହି କଥା ଭାବି ଛାତ୍ରମାନଙ୍କୁ ଘୃଣା କରିବେ ପୁଣି ଶିକ୍ଷାରୁ ସେମାନଙ୍କୁ ବଞ୍ଚିତ ରଖିବେ । ଏହି କଥା ଛାତ୍ର ବଟୁରା ଜାଣିପାରି କହିଲା ଯେ "ଯୋ ଠେଁ ଯୋ କଥା ନକହିଲେ ଚଳି ପାରିବ ନାହିଁ" । ସମୟ୍ଯାଚାରିତା, ଶଠତା ବା କୁଟିଳତାର ନାମାନ୍ତର ମାତ୍ର । କେତେବେଳେ କାହାର ପକ୍ଷେ ଏହା ସୁସଙ୍ଗତ ଓ ସମୁଚିତ ହୋଇ ନପାରେ, ଛାତ୍ର ପକ୍ଷରେ ଓ ଛାତ୍ରାବସ୍ଥାରେ ଏହାର ବିଷମୟ ଫଳ ବର୍ଣ୍ଣିବା ବାହୁଲ୍ୟ ମାତ୍ର । ଯୋ ଠେଁ ଯୋ କଥା କୁହା ଯାଇପାରେ, କିନ୍ତୁ ସବୁ ଠେଁ ସତ୍ୟ କହିବାକୁ ହେବ । ଅମଙ୍ଗଳ ଆଶଙ୍କାରେ କୌଣସି ସ୍ଥଳରେ କୌଣସି କଥା କୁହାଯାଇ ନପାରେ କିନ୍ତୁ କହିବାକୁ ହେଲେ ସର୍ବଦା ସର୍ବତ୍ର ସତ୍ୟ କହିବାକୁ ହେବ । ଅପ୍ରିୟ ହେଉ ବା କ୍ଷତିଜନକ ହେଉ ସତ୍ୟ କହିବାହିଁ ପ୍ରାଣିମାନଙ୍କର ମୂଳ କର୍ତ୍ତବ୍ୟ ।

ସତ୍ୟରୁ ସମସ୍ତ ଉତ୍ପତ୍ତି, ସତ୍ୟ ଉପରେ ସଂସାରର ପ୍ରତିଷ୍ଠା । ସତ୍ୟ ଯୋଗୁଁ ଏହି ବିଶ୍ୱ ଚରାଚର ଅବସ୍ଥିତ ପୁଣି ପରିଣାମରେ ସତ୍ୟରେ ବିଲୟ ପ୍ରାପ୍ତ ହୁଏ । ସତ୍ୟଭାଷଣରୁ ବାସ୍ତବିକ କେବେ ଅମଙ୍ଗଳ ହୁଏ ନାହିଁ । ସଂକୀର୍ଣ୍ଣ ସ୍ୱାର୍ଥାନ୍ୱେଷୀ ଭୀରୁମାନେ କେବଳ ଅମଙ୍ଗଳ ଆଶଙ୍କା କରନ୍ତି । ସ୍କୁଲ୍ ଭାଙ୍ଗିଯାଉ, ଜଗତ ଧ୍ୱଂସ ହୋଇଯାଉ, ସତ୍ୟ କହିବାହିଁ ଛାତ୍ରମାନଙ୍କର ଛାତ୍ରତ୍ୱ ।

---

# ବେଦପାଠ ।

" ବେଦକୁ ନ କହି ସାକ୍ଷାତେ, ଦେଖାଇ ଘର ଦ୍ୱାର ପଥେ "

ବେଦର ଅର୍ଥ ଜ୍ଞାନ । ଜ୍ଞାନ ହିଁ ବେଦ, ଅପୌରୁଷେୟ । ହିନ୍ଦୁମାନଙ୍କର

ଋକ୍‌ବେଦ, ଖ୍ରୀଷ୍ଟିୟାନ ମାନଙ୍କର ବାଇବଲ୍, ମୁସଲମାନ ମାନଙ୍କର କୋରାନ୍ ଇତ୍ୟାଦି ବେଦ ନୁହେଁ । ବିଷୟାସକ୍ତ ଲୋକ ସାଧାରଣ ପ୍ରକୃତ ଜ୍ଞାନକୁ ଧରିପାରନ୍ତି ନାହିଁ । ପ୍ରକୃତ ଜ୍ଞାନ ଏମାନଙ୍କ ପ୍ରତି ଶୁଷ୍କ, ନୀରସ କଠୋର ଏବଂ ଅଗମ୍ୟ ବୋଧ ହୁଏ । ସୁତରାଂ ଏମାନଙ୍କୁ ସାକ୍ଷାତ ବେଦ କୁହାଯାଏ ନାହିଁ । ଏମାନଙ୍କ ପ୍ରତି ଘର ଦ୍ୱାର ପଥରେ ବେଦ କୁହା ଯାଇ ଅଛି । ନାନାବିଧ ଲୌକିକ ଘଟଣାକୁ ଘେନି ପୁଣି ଗଳ୍ପ ଛଳନା କରି ନାନାବିଧ ବେଦ କୁହାଯାଇ ଥାଏ । କୌଣସି ମୂଳସୂତ୍ର ସହଜରେ ସାଧାରଣ ବୁଦ୍ଧିଦ୍ୱାରା ବୋଧଗମ୍ୟ ହୋଇ ପାରେ ନାହିଁ । କିନ୍ତୁ ଉଦାହରଣ ଦ୍ୱାରା ତାହା ବିଶଦ କରାଯାଏ । ଜ୍ଞାନକାଣ୍ଡ, କର୍ମକାଣ୍ଡ ଏପରି ଦୁଇଭାଗ ଦେଖାଯାଏ । ଜ୍ଞାନ-କାଣ୍ଡକୁ ବିଶଦ କରିବା ନିମନ୍ତେ କର୍ମକାଣ୍ଡର ଉତ୍ପତ୍ତି । କିନ୍ତୁ ଲୋକ ସାଧାରଣ ଜ୍ଞାନ ଆଡକୁ ଯାଇ ନ ପାରି କେବଳ କର୍ମକାଣ୍ଡରେ ଲିପ୍ତ ରହନ୍ତି । ଏହି ସଙ୍କୀର୍ଣ୍ଣ ସୀମାରେ ଆବଦ୍ଧ ରହିବା ହେତୁ ଏମାନେ ଅନେକ ସମୟରେ କୁ କର୍ମ କରନ୍ତି ବା ଅଧର୍ମୀ ହୋଇ ଦିନ କାଟନ୍ତି । ପ୍ରକୃତ ଜ୍ଞାନ ସମ୍ପାଦନ ନ କଲେ ବେଦ ପୋଥି ପାଠରେ କିଛି ଫଳ ହୁଏ ନାହିଁ । ଅନେକ ବେଦ ବେଦାଙ୍ଗ ପାଠିମାନେ ନିତାନ୍ତ ଅଜ୍ଞାନ ପରି କାର୍ଯ୍ୟ କରନ୍ତି । ଏମାନେ କେଉଟ, କଣ୍ଡରା, ହାଡି, ବାଉରି ବୋଲିକହି ଜାତିମାନଙ୍କୁ ଅସ୍ପୃଶ୍ୟ ଜ୍ଞାନ କରନ୍ତି; ଶୂଦ୍ର ନାମରେ ଜାତି ଗଢ଼ି ଏମାନଙ୍କୁ ବେଦାଧ୍ୟୟନରୁ ଆଜୀବନ ବଞ୍ଚିତ ରଖନ୍ତି, ଏହିପରି ଅନେକ ଅମନୁଷ୍ୟ କାର୍ଯ୍ୟ କରନ୍ତି । ତଥାପି ନାନାସ୍ଥାନରେ ବେଦ ପାଠଶାଳମାନ ସ୍ଥାପିତ ହୋଇଅଛି । ଏହା ଅପେକ୍ଷା ଇଂରାଜୀସ୍କୁଲ୍ ସ୍ଥାପନ ଶ୍ରେୟସ୍କର ନହୁବା ସଂସ୍କୃତ ପାଣ୍ଡିତ୍ୟ ଲାଭ କରିଥିବା ଇଂରାଜୀ ଲୋକଠାରୁ ବେଦ ପଠନ କରିବା ଉଚିତ । ବେଦ ଗୁଡ଼ିକୁ ନିଜମାତୃ ଭାଷାରେ ଅନୁବାଦ କରି ପଢିଲେ ମଧ୍ୟ ସୁଫଳ ଫଳିବା ସମ୍ଭାବନା ।

—o—

# କବିପାଇଁ ଆସନ କଜିଆ ।

ଆଜକାଲି ଉତ୍କଳରେ କବି ଯୁଗ ଉପସ୍ଥିତ । ଅନେକ ଲୋକ ଆପଣାକୁ କବି-ବୋଲି ପରିଚୟ ଦେବାକୁ ପ୍ରୟାସ କରନ୍ତି । କବିର କାମ ଯା ଇଚ୍ଛା ତା ହେଉ, କବି ବୋଲି ନାମଟେ ପାଇଲେ ହେଲା । କବିମାନଙ୍କ ମଧ୍ୟରେ ନାନାପ୍ରକାର କବି ଦେଖା ଯାଆନ୍ତି – ପଢ଼ାଶୁଣା କବି, ଦେଖାଶିଖା କବି, ଚୋର କବି, ଉଧାରି କବି, କାଲି ବାସୀ କବି, ନଗଦ କବି, ଉଣତି କବି, ଗଣତି କବି ଇତ୍ୟାଦି କବିଙ୍କର କାବୁ କାବୁ ରାବରେ ଉତ୍କଳର କଳଧ୍ୱନି ଚତୁର୍ଦ୍ଦିଗରେ ନିନାଦିତ ହେଲାଣି ।

ତେବେ ଓଡ଼ିଆ ସାହିତ୍ୟର ଜଗତରେ ଆଜି କି ପ୍ରତିବନ୍ଧକ ଅଛି ? ପାରିଷଦଠାରୁ ପା ଟଳିଆ ପର୍ଯ୍ୟନ୍ତ, ଘାସ କାଟିଠାରୁ ଘୋଡା ଚଢ଼ା ପର୍ଯ୍ୟନ୍ତ, ଜମିଦାରଠାରୁ ମଜୁରି-ଦାର ପର୍ଯ୍ୟନ୍ତ, ଚପ୍ରାଶି ଠାରୁ ହାକିମ ପର୍ଯ୍ୟନ୍ତ ସମସ୍ତେ ହେଲେଣି କବି । ସଭିଁର ହାତରେ କଲମ, କାହାକୁ କହିବ ସଲାମ ? କିଏ କେଉଁ ଜାତିର କବି ବାଛିନେବା ଦୁଷ୍କର ହେଲା । ସେଦିନ ଜଣେ "ଭାବୁକ" କହୁଥିଲେ ବୃତ୍ତି ବା ବ୍ୟବସାୟ ଭେଦରେ କବି-ମାନଙ୍କୁ ଅଖ୍ୟାତ କରିବାକୁ ହେବ, ଯଥା ରାଜ କବି, ପ୍ରଜା କବି, ପାରିଷଦ କବି, ପା ଟଳିଆ କବି, ଓକିଲ କବି, ମକ୍କେଲ କବି, ଡାକ୍ତର କବି, ପୋଲିସ କବି ଇତ୍ୟାଦି । କିନ୍ତୁ ଦୁଃଖର ବିଷୟ କବିମାନଙ୍କ ମଧ୍ୟରେ ଆସନାଭାବର ପ୍ରାଦୁର୍ଭାବ ଘଟିଅଛି । କବିମାନଙ୍କ ସଂଖ୍ୟା ଅନୁପାତରେ ଆସନ ଗଢ଼ା ହୋଇ ପାରୁନାହିଁ । ଏହି କବିମାନେ କବିତା ରାଜ୍ୟରେ ଯେ ଯାହାର ଆସନ ପ୍ରତିଷ୍ଠା କରନ୍ତି ନାହିଁ, ସ୍ୱର୍ଗୀୟ କବିମାନଙ୍କର ଆସନ ଆକ୍ରମଣ କରିବାକୁ ବସି ଅଛନ୍ତି । କବିମାନେ ଅସନ ପାଇଁ ଏକାନ୍ତ ଉତ୍କଣ୍ଠିତ ନଥିଲେ ହେଁ ଏମାନଙ୍କର ପୋଷକ, ଆଶ୍ରିତ, ସଙ୍ଗୀ ଏବଂ ସହଚରମାନେ ଏମାନଙ୍କ ନିମନ୍ତେ ଆସନ ପାଇଁ କଜିଆ ଲଗାଇ ଅଛନ୍ତି । ଏମାନେ ଭାବନ୍ତି ପରା ଯେ କବିପାଇଁ ଆସନ ଖଣ୍ଡିଏ ଯୋଗାଇ ଦେଇପାରିଲେ କବିପ୍ରତି ଏମାନଙ୍କର କର୍ତ୍ତବ୍ୟ ପାଳିତ ହେଲା । ପୁଣି ଏହାହିଁ ସେମାନଙ୍କର କବିତ୍ୱ ଗ୍ରାହକତା ଓ କବି ପ୍ରତି ଉତ୍ସାହଦାନ । ଗୋଟିଏ ଲୋକ ଆଉ ଏକ ଲୋକକୁ କବି କରି ଦେଇ ନପାରେ । ପାରିଷଦ ବା ଆଶ୍ରିତ ବ୍ୟକ୍ତିଙ୍କ କବିତାକୁ ନେଇ କେହି ରାଜା ବା ଜମିଦାର କି ରାଜକବି ହୋଇପାରନ୍ତି ? ମୋର ଜଣେ ଗୁମାସ୍ତା ପଦ୍ୟ ଲେଖିପାରନ୍ତି, ତେବେ ତାହାଙ୍କର ପଦ୍ୟକୁ ନେଇ ମୁଁ ବି ଜଣେ ବେଜଷ୍ଟାର କବି ହୋଇପାରେ ? ସେହିପରି କୌଣସି କବିପାଇଁ କେହି ଗୋଟିଏ ଅସନ ତିଆରି କରିଦେଇ ନପାରେ । ସାହିତ୍ୟ ହେଉ, ସମାଜ ହେଉ, ରାଜନୀତି ହେଉ ବା ଶିଳ୍ପାଦି ବ୍ୟବସାୟ ହେଉ ପ୍ରତ୍ୟେକ ବିଭାଗରେ ଯେଝା ଗୁଣ କର୍ମାନୁସାରେ ଯେ ଯାହାର ପ୍ରତିଷ୍ଠା ସୌଧ ନିର୍ମାଣ କରନ୍ତି । ସେଦିନ ଜଣେ ଲେଖକ କହୁଥିଲେ "କବି ଆସନ କେବେ ଶୂନ୍ୟ ରହେ ନାହିଁ"। ଏହା ପ୍ରକୃତ କଥା, ଯେହେତୁ କବିମାନେ ଆପଣାର ସତ୍‌କବିତା ହେତୁ ଅମରତ୍ୱ ଲାଭ କରିଥାନ୍ତି । କବିଙ୍କର କବିତା-ବଳୀ ସଞ୍ଚିତ ଥିବା ପର୍ଯ୍ୟନ୍ତ, ତଦ୍ୱାରା ଲୋକେ ଅନୁପ୍ରାଣିତ ହେଉଥିବା ପର୍ଯ୍ୟନ୍ତ କବି-ଙ୍କର ସ୍ଥାନ କେବେହେଁ ଅପୂର୍ଣ୍ଣ ରହେନାହିଁ । କବିଙ୍କର ଆସନଟା ରତ୍ନଖଚିତ, ସ୍ୱର୍ଣ୍ଣମୟ ଆସନ ନୁହେ ଯେ, କବି ପାର୍ଥିବ ଶରୀର ତ୍ୟାଗ କଲାମାତ୍ରେ, ରାଜାଗଲେ ଯେପରି ରାଜଗାଦି ଖାଲି ରହେ, ସେହିପରି କବିଙ୍କ ଆସନଟା ଶୂନ୍ୟ ରହିବ । ଅକ୍ଷର ସଂବଦ୍ଧକୀର୍ତ୍ତି ଯେପରି ଅକ୍ଷୟ, କବିଙ୍କର ଅସନ ତଦ୍ରୂପ କଦାପି ଶୂନ୍ୟ ହୁଏ ନାହିଁ । ସାହିତ୍ୟ ଜଗତରେ କବି ଗୋଟିକେ ଅସନ ଗୋଟିଏ ଲେଖେ । ତାହାରି ଆସନ ଅନ୍ୟ

କେହି ଗ୍ରହଣ କରିପାରନ୍ତିନାହିଁ । ଯେ ଯାହାର ଆସନ ନିର୍ମାଣ କରନ୍ତି । ବଳରାମ କେବେ ଜଗନ୍ନାଥ ହୋଇନାହାନ୍ତି, ସାରଳା କେବେ ଦୀନକୃଷ୍ଣ ହୋଇନାହାନ୍ତି । ସେହିପରି ଚନ୍ଦ୍ରାମଣି କେବେ ରାଧାନାଥ ହୋଇପାରିବେ ନାହିଁ, କିବା ମେଘଦୂତ ମଧୁସୂଦନ ହୋଇପାରିବେ ନାହିଁ, କିଅବା ସୁଲଙ୍ଗୀ କେବେ ବାମଣ୍ଡା ହୋଇପାରିବେ ନାହିଁ । ଚିନ୍ତାମଣି "ସୁଚନ୍ଦ୍ରାର ଖଣି" ହୋଇପାରନ୍ତି ତାହାଙ୍କର ଚିନ୍ତା ଯୋଗରେ ସେ ରାଧାନାଥଙ୍କ ଠାରୁ ବଡିଆ ହୋଇ ପାରନ୍ତି । ତାହାଙ୍କର ଉଚ୍ଚତର ଆସନ ସେ ନିର୍ମାଣ କରିବେ, ଅମ୍ଭେମାନେ ତାହାଙ୍କର ଲେଖନୀ ନିସୃତ କବିତାମୃତ ପାନକରି କୃତାର୍ଥ ହେବୁଁ ।

କୌଣସି ପାର୍ଥିବ ସମ୍ପଦ ସକାଶେ ଏକବ୍ୟକ୍ତି ସ୍ଥାନରେ ଅନ୍ୟ ବ୍ୟକ୍ତି ନିଯୁକ୍ତ ହୁଅନ୍ତି, ଯଥା ଏକ ହଡପରତ୍ନ ସ୍ଥାନରେ ଅନ୍ୟ ହଡପରତ୍ନ, ଏକ ରାଜଗୁରୁ ସ୍ଥାନରେ ଅନ୍ୟ ରାଜଗୁରୁ, କିନ୍ତୁ ଲୋକ ସମାଜରେ କବିଙ୍କର ଯେଉଁ ଆସନ ପ୍ରତିଷ୍ଠିତ ଥାଏ ତାହା ପାର୍ଥିବ ନୁହେ, ରାଜକବିଙ୍କର ସ୍ଥାନ ସମ୍ରାଟଙ୍କ ସିଂହାସନ ଅପେକ୍ଷା ଉଚ୍ଚତର । ପୂର୍ବ କବିମାନଙ୍କ ପାଇଁ କେବେହେଁ ଆସନ ଦଳଅ ଲାଗିଥିବା ଶୁଣାଯାଇ ନାହିଁ । କବିଙ୍କ ପାଇଁ କୌଣସି ଆସନ ଦାବି ହେବା ଦ୍ୱାରା କବି ଉକ୍ତ ଆସନର ଭାଜନ ନଥିବା ପ୍ରତିପାଦିତ ହୁଏ ଏବଂ ପ୍ରସ୍ତାବକ ଓ ସମର୍ଥକଙ୍କର ସଂକୀର୍ଣ୍ଣତାର ପରିଚୟ ମିଳେ ।

——୪୦୪——

## ଶାସ୍ତ୍ର ବାଦୀ ।

ବହୁଲୋକଙ୍କ ମୁଖରୁ ଶାସ୍ତ୍ରବାଦ ଶୁଣାଯାଏ, କିନ୍ତୁ ତଦନୁଯାୟୀ ଆଚାର କିଛି ଦେଖାଯାଏ ନାହିଁ । ସଂସ୍କୃତ ପଢ଼ାଳ ବା ସଂସ୍କୃତ ପଣ୍ଡିତମାନଙ୍କ ମୁଖରୁ ବହୁତ ଶାସ୍ତ୍ର-ବାଦ ଶୁଣାଯାଏ । ଏମାନେ ବେଦ ଦୋହଦେଇ ବ୍ରାହ୍ମଣାଦି ଜାତି ଭେଦର ଅସ୍ଥାଳନ କରନ୍ତି, କିନ୍ତୁ ଏମାନଙ୍କ ମଧ୍ୟରୁ ଜଣେ ଅଧେ ହେଲେ ପ୍ରକୃତ ବ୍ରାହ୍ମଣ ବା ଶୂଦ୍ର ମଧ୍ୟ ନୁହନ୍ତି । ଗୀତା, ସ୍ମୃତି, ପୁରାଣ ଇତ୍ୟାଦିରୁ ବାକ୍ୟମାନ ଉଦ୍ଧୃତ କରି ବର୍ଣ୍ଣ, ଆଶ୍ରମ, ସଂଯମ, ଅହିଂସା, ଆଚାର, ସତ୍ୟ, ସେବା ଇତ୍ୟାଦିର ବ୍ୟାଖ୍ୟା କରାଯାଏ । ଏହାସବୁ କେବଳ ବାଗାଡମ୍ବର ବିଶେଷ, କାର୍ଯ୍ୟ ବେଳକୁ ଏହାର ଠିକ ବିପରୀତ ଆଚରଣ କରାଯାଏ । ଶାସ୍ତ୍ରବାଦୀମାନେ ବାହ୍ୟାଡମ୍ବର ପ୍ରିୟ । ବାଗ୍‌ବିତଣ୍ଡା ଏବଂ ବାହ୍ୟାଡମ୍ବର ଏମାନଙ୍କର ପ୍ରଧାନ ସମ୍ବଳ । ବର୍ଣ୍ଣାଶ୍ରମ ଥିଲା ଗୁଣ-କର୍ମଗତ । କିନ୍ତୁ ଏହା ଆଜି ଜନ୍ମ-ଗତ, ବଂଶଗତ, କିବା ବାହ୍ୟବେଶଭୂଷା ସମ୍ବଳିତ । ପ୍ରକୃତ ବ୍ରାହ୍ମଣୋଚିତ ଗୁଣ

କର୍ମ ଓ ସ୍ୱଭାବ ନଥାଉ ପଛେ ବ୍ରାହ୍ମଣ ବଂଶଜାତ, ଟିକା, ପଇତା, ମାଳଝୁଲି, ମଠା, ଗାମୁଛା ଇତ୍ୟାଦି ବେଶଭୂଷା ଯୁକ୍ତ, ସ୍ୱାର୍ଥପରାୟଣ, ପରାନ୍ନଭୋଜୀ, ଭିକ୍ଷୋପଜୀବୀ ହେଲେ ଯେକୌଣସି ବ୍ୟକ୍ତି ବ୍ରାହ୍ମଣ ହେଲା । ଆନ୍ତରିକ ପବିତ୍ରତା ନଥାଉ ପଛେ ତାହାକୁ ହିଁ ନଛୁଇଁଲେ, ଖଟରା ଡେଇଁ ଡେଇଁ ଚାଲିଲେ ହେଲା ଶୁଚି । ଜୀବରେ ଦୟା, ସମଦର୍ଶିତା, ଅହିଂସା ପରମୋଧର୍ମ ଇତ୍ୟାଦି କଥା ସଭାସମିତିରେ, ବାଟରେ, ହାଟରେ, ଗୃହଲୋକ ଆଗରେ କହି ବୁଲିଲେ ହେଲା । ଏଣେ ଘରଭିତରେ ପଞ୍ଚୋପଚାର ମକାର ପୂଜା ଚାଲିଥାଉ ଚିନ୍ତା ନାହିଁ । ନିତ୍ୟମାଛ ମରାହେଉ, ଶୁଖୁଆରେ ଘର ଗନ୍ଧିଯାଉ ମାଇପୀ ଲୋକଙ୍କ ପାଇଁ ବୋଲି କହିଦେଲେ ଆଉ ଆମିଷ ଦୋଷ ଲାଗେନାହିଁ । ବାକ୍ୟରେ "ନାର୍ଯ୍ୟାଂ ଯତ୍ର ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ" । କିନ୍ତୁ କାର୍ଯ୍ୟତଃ ମାଇକିନିଅଁଟା ପାଟିଫିଟାଇ କଥା କହିଦେଲେ ଜାତିରୁ, ପତିରୁ, ମାତିରୁ, ଭଗକୁଳରୁ ଗଲା । ପିତାମାତାଙ୍କ ମୃତ୍ୟୁପରେ କେତେ ବୃଥା ଶ୍ରାଦ୍ଧ ତର୍ପଣ କିନ୍ତୁ ଜୀବନରେ ତିରସ୍କାର ବା ମାରଣ । "ବିଦ୍ୟା ବିବାଦାୟ" ଏହି ଶାସ୍ତ୍ର ବାକ୍ୟ ଗୁଡିକ ଶୁଷ୍କ ବିବାଦ ନିମନ୍ତେ କର୍ମରେ ଆସେ । ସର୍ପ ଯେପରି କ୍ଷୀର ପାନ କଲେହେଁ ବିଷ ଉଦ୍ଗାରଣ କରେ ସେହିପରି ଈର୍ଷଣଶୀଳ, ସଂସ୍କାର ବିମୁଖ, ଚରିତ୍ରହୀନ ବ୍ୟକ୍ତିମାନେ ଅନେକ ଶାସ୍ତ୍ର ଅଧ୍ୟୟନ କଲେହେଁ ନାନାବିଧ ଶାସ୍ତ୍ରୋକ୍ତ ବାକ୍ୟ ମୁଖସ୍ଥ କଲେହେଁ ତାହା ସବୁ ବିତଣ୍ଡାବାଦ ଓ କୁଟ ତର୍କରେ ପ୍ରୟୋଗ କରନ୍ତି, ତାହାର ମର୍ମାର୍ଥ ବୁଝନ୍ତି ନାହିଁ କିମ୍ବା ବୁଝିଥିଲେହେଁ କାର୍ଯ୍ୟବେଳକୁ ଠିକ ବିପରୀତ ଆଚରଣ କରନ୍ତି । ଅନେକ ସନ୍ତିକଦାର ମାନେ ଅତ୍ୟନ୍ତ ଧର୍ମଭୀରୁ ଥିବା ଦେଖାଯାନ୍ତି ପୁଣି ଅନେକ ସାକ୍ଷର, ସପାଠ, ସବିଦ୍ୟ, ଶାସ୍ତ୍ରୀ ଓ ତ୍ରିପାଠୀମାନେ ଜାଲ ସ୍ୱାକ୍ଷରକାରୀ ପରାପକାରୀ ଓ କୁଟିଳ କୁସଂସ୍କାରୀ ଥିବା ଦେଖାଯାନ୍ତି । ଅନୁଷ୍ଠାନ ହୀନ ଶାସ୍ତ୍ରପାଠ କେବଳ ବୃଥା । ବରଂ ଅଶାସ୍ତ୍ରାଚାର ଶ୍ରେୟସ୍କର । ଯୁକ୍ତିହୀନ ବିଚାରରେ ଯେପରି ଧର୍ମହାନି ହୁଏ ଅନୁଷ୍ଠାନ ହୀନ ଶାସ୍ତ୍ରବାଦ ତଦ୍ରୂପ ଅସାର ବାଚାଳତା ବିଶେଷ । ଏହି ଶାସ୍ତ୍ରବାଦି ମାନଙ୍କୁ ଦୂରରୁ ଜୁହାର ।

— —

# ଉଚ୍ଚ ଶିକ୍ଷା ଓ ଦେଶ ସେବା ।

ପୂର୍ବ କାଳରେ ପ୍ରତି ଗ୍ରାମରେ ଚାଟଶାଳୀ ଥାଏ, ପୁଣି ସ୍ଥାନେ ସ୍ଥାନେ ଟୋଲପାଠୀ ଥାଏ । ସର୍ବ ସାଧାରଣ ପିଲାମାନେ ଏଥିରେ ପଢ଼ାଶୁଣା କରନ୍ତି । ସାଧାରଣତଃ ତାଳ ପାଠ, ଅଙ୍କ ପାଠ ଓ ଗୀତ ଗାଇବା ଅର୍ଥାତ୍ ପୁରାଣ ପଢିବା ଜାଣିଲେ

ଲୋକେ ସପଠ ବୋଲନ୍ତି । ଯେଉଁ କାର୍ଯ୍ୟ କ୍ଷେତ୍ରରେ ପ୍ରବେଶ କରନ୍ତୁ, ଏମାନେ ଏହି ପ୍ରଣାଳୀରେ ଯେତେ ପଢ଼ାଶୁଣା କଲେହେଁ ନିଜର ପୈତୃକ ବ୍ୟବସାୟ ପ୍ରତି ଏମାନଙ୍କର ମାୟା ମମତା ଛାଡେ ନାହିଁ ପୁଣି ଏମାନେ ଅନ୍ୟ କୌଣସି ନୂତନ ଶିଳ୍ପ ବାଣିଜ୍ୟାଦ ବ୍ୟବସାୟ ନକରି ସ୍ୱୋପାର୍ଜିତ ସ୍ୱଳ୍ପ ଧନରେ ପରିତୃପ୍ତି ଲାଭ କରନ୍ତି । କିନ୍ତୁ ସବୁକାଳେ ସବୁକଥା ସମାନ ଚାଲିଯାଏ ନାହିଁ । ଯୁଗ ଭେଦରେ ଦେଶ କାଳ ପାତ୍ର ଭେଦରେ ଶିକ୍ଷା, ସଭ୍ୟତା, ରୀତି, ନୀତି, ରୁଚି, ବ୍ୟବସାୟ ସବୁ ବଦଳି ଯାଏ । ଆଜି ଦେଶରେ ଏଲିମେଣ୍ଟାରି, ପ୍ରାଇମେରି, ସେକେଣ୍ଡରି ଏବଂ କଲେଜ ଇତ୍ୟାଦି ଶିକ୍ଷା ପ୍ରଣାଳୀ ପ୍ରଚଳିତ । ଏହାକୁ ଲୋକେ ଦେଶୀୟ ଶିକ୍ଷା କହନ୍ତି ନାହିଁ । ଏହାକୁ ସରକାରୀ ଶିକ୍ଷା ପ୍ରଣାଳୀ ବୋଲନ୍ତି । ପ୍ରକୃତରେ ଏହା ଦେଶୀୟ ନୁହେ । ଏହାକୁ ସରକାରୀ କହିବା ଅସଙ୍ଗତ ନୁହେ । ଏହି ଆଧୁନିକ ବା ସରକାରୀ ଶିକ୍ଷା ଲାଭକରି ଲୋକେ ଆପଣାର ପୈତୃକ ବ୍ୟବସାୟ ପ୍ରତି ମାୟା ମମତା ତ୍ୟାଗ କରନ୍ତି, କୃଷି, ଶିଳ୍ପ, ବ୍ୟବସାୟକୁ ଘୃଣା କରନ୍ତି । ଇଂରାଜି ଶିକ୍ଷିତ ବ୍ୟକ୍ତିମାନେ କେବଳ ସରକାରୀ ଚାକିରି ପାଇଁ ପ୍ରସ୍ତୁତ ହୁଅନ୍ତି । ଧନୀ ଦରିଦ୍ର ସମସ୍ତେ ଏହି ଚାକିରି ପାଇଁ ଲାଳାୟିତ । ସରକାରୀ ଚାକିରି ଦ୍ୱାରା କେବଳ ଧନ ନୁହେ ସୁଖ ସୁବିଧା, ମାନ ମର୍ଯ୍ୟାଦା ଓ ଗୌରବ ସଙ୍ଗେ ସଙ୍ଗେ କ୍ଷମତା ଏବଂ ଅଧି-କାର ମିଳେ ବୋଲି ଲୋକଙ୍କର ଧାରଣା । ପରାଧୀନତାରେ ବା କି ସୁଖଥାଏ ? ପୁଣି କ୍ଷମତା ଓ ଅଧିକାର, ପ୍ରଭୁ ସେବକ, ରାଜା ପ୍ରଜା ସମସ୍ତଙ୍କର ଅଛି । କ୍ଷମତା ଏବଂ ଅଧିକାର ନଥିଲେ କୌଣସି କର୍ମ କରାଯାଇ ପାରେ ନାହିଁ । କର୍ମର ପ୍ରକାର ଓ ପରିମିତ ଭେଦରେ କ୍ଷମତା ଓ ଅଧିକାରର ଭେଦ ମାତ୍ର ।

ସେ ଯାହା ହେଉ, ଯେଉଁମାନେ ଇଂରେଜି ଶିକ୍ଷା ପ୍ରାପ୍ତ ହୁଅନ୍ତି, ସେମାନେ ସରକାରୀ ଚାକିରି ପାଇଁ ସର୍ବଦା ପ୍ରସ୍ତୁତ ରହନ୍ତି । ଚାକିରି ଉଦ୍ଦେଶ୍ୟରେ ପଢ଼ାଶୁଣା କରନ୍ତି ଏବଂ ପଢ଼ା ଶେଷରେ ଚାକିରି ଅନ୍ୱେଷଣରେ ବୁଲନ୍ତି । ଧନୀ ଦରିଦ୍ର ସମସ୍ତେ ଚାକିରି ଚାହାନ୍ତି । ଧନୀ ଲୋକମାନେ ବା ଉଚ୍ଚ ଶିକ୍ଷିତ ଲୋକେ ବଡ଼ ଚାକିରି ଖୋଜନ୍ତି । ଗରିବ ବା ଅଳ୍ପ ଶିକ୍ଷିତମାନେ ଛୋଟ ଚାକିରି ଚାହାନ୍ତି । ଚାକିରି ଲାଳସାରୁ କେହି ମୁକ୍ତ ନୁହନ୍ତି । ଏମାନେ ନିଜ ପଲ୍ଲୀ ଗ୍ରାମ ଛାଡ଼ି ସହର ସ୍ଥାନ ମାନଙ୍କରେ ରହନ୍ତି, ଗ୍ରାମ ସାଧାରଣଙ୍କଠାରୁ ପୃଥକ ରହନ୍ତି , ସେମାନଙ୍କୁ ଘୃଣା କରନ୍ତି ଏବଂ ସେମାନଙ୍କ କାର୍ଯ୍ୟରେ ସାହାଯ୍ୟ ସହାନୁଭୂତି କରନ୍ତି ନାହିଁ । ଗ୍ରାମର ଯଦି କେହି ଇଂରେଜି ଶିକ୍ଷିତ ହେଲା ସେ ଗ୍ରାମରୁ ଗଲା ବୋଲି ବାକୁ ହେବ । ପୁଣି ସେ ତାହାର ପୈତୃକ ବ୍ୟବସାୟରେ ଜଳାଞ୍ଜଳି ଦେଇ ଚାଲିଯାଏ । ଏମାନଙ୍କ

ଲାଗି ଦେଶର କୌଣସି ଉନ୍ନତି ସାଧିତ ହୁଏ ଜଣା ଯାଏନାହିଁ । ଯାହାର ଶିକ୍ଷା ଯେତେ ଉଚ୍ଚ ହେଲା ସେହି ଲୋକ ସ୍ୱଜାତୀୟ, ସ୍ୱଦେଶୀୟ ଲୋକଙ୍କଠାରୁ ସେତେ ପୃଥକ ହୋଇ ରହିଲା । ଶିକ୍ଷା ଯେତେ ଉଚ୍ଚ ହେଲା ଚାକିରି ସେତେ ସୁନିଶ୍ଚିତ ହେଲା । ଅର୍ଦ୍ଧ ଶିକ୍ଷିତ ଲୋକଠାରୁ ଗ୍ରାମ ସାଧାରଣ କିଛି ଆଶା କରି ପାରନ୍ତି, କିନ୍ତୁ ଉଚ୍ଚ ଶିକ୍ଷିତ ଲୋକଠାରେ କୌଣସି ଆଶା ନାହିଁ । ପୁଣି ବି, ଏ; ବି, ଏଲ୍; ପ୍ରଭୃତି ଉଚ୍ଚ ଉପାଧି ପ୍ରାପ୍ତ ସମସ୍ତ ଶିକ୍ଷିତ ଲୋକେ ଯେ ବିବିଧ ଜ୍ଞାନ ବିଜ୍ଞାନ ବିଭାଗରେ ବହୁଦର୍ଶୀ ବା ପାରଦର୍ଶୀ ହେଉଛନ୍ତି ଏହା ମଧ୍ୟ ବୋଲି ଯାଇ ପାରେ ନାହିଁ, ଯେହେତୁ ସମସ୍ତେ ପ୍ରାୟ ଉପାଧି ଏବଂ ଚାକିରି ଆଶାରେ ବିଦ୍ୟା ଶିକ୍ଷା କରନ୍ତି । ବି, ଏ; ବି, ଏଲ୍; କିମ୍ବା ଏମ୍, ଏ; ଉପାଧି ବାଲାମାନଙ୍କ ମଧ୍ୟରେ କେତେ ଜଣ ଅବା ରାସାୟନିକ, ବୈଜ୍ଞାନିକ, ଐତିହାସିକ, ଗାଣିତିକ ବା ବୈଦାନ୍ତିକ ତତ୍ତ୍ୱ ଅନୁସନ୍ଧାନରେ ପ୍ରବୃତ୍ତ ହୁଅନ୍ତି ? ଏମାନଙ୍କ ସଂଖ୍ୟା ମୁଷ୍ଟିମେୟ ବା କିଛି ନୁହେଁ କହିଲେ ଚଳେ । ହୁଏତ, ଏମାନେ ହାଇକୋର୍ଟ ଓକିଲ ହୁଅନ୍ତି, ବାରିଷ୍ଟର ହୁଅନ୍ତି କିମ୍ବା ଉଚ୍ଚ ଅଧିକାର ପ୍ରାପ୍ତ ହୁଅନ୍ତି, ଯଥା ଡେପୁଟି ମାଜିଷ୍ଟ୍ରେଟ, କଲେକ୍ଟର ବା କମିଶନର ହୁଅନ୍ତି । ଏମାନଙ୍କ ଦ୍ୱାରା ଜାତିର, ଦେଶର ଶିକ୍ଷା ଓ ସଭ୍ୟତାର, କୃଷି ଶିଳ୍ପ ବାଣିଜ୍ୟାଦି ବ୍ୟବସାୟର, ଧର୍ମ ଧାରଣାର କିମ୍ବା କର୍ମାନୁଷ୍ଠାନର କି ଉନ୍ନତି ସାଧିତ ହେଉଅଛି ? ମହାତ୍ମା ଗାନ୍ଧି ବା ଭାରତ ସେବକ ତିଳକ ଓ ଗୋଖେଲଙ୍କ ପରି କେତେଜଣ ବାହାରନ୍ତି ? ଯାହାର ଧର୍ମ ଧାରଣା, କର୍ମାନୁଷ୍ଠାନ ପୁଣି ଗୁଣ ଚରିତ୍ର ଓ ସ୍ୱଭାବ ଉତ୍ତମ, ସେହି ଜ୍ଞାନୀ କର୍ମୀ ପୁରୁଷସିଂହ ସ୍ୱଳ୍ପ ଶିକ୍ଷିତ ହୋଇଥାନ୍ତୁ, ଉଚ୍ଚ ଉପାଧି ପାଇ ନଥାନ୍ତୁ, ଯେ କୌଣସି ଅବସ୍ଥାରେ ଥାନ୍ତୁ, ଅବଶ୍ୟ ପୁରୁଷାର୍ଥ ପ୍ରକାଶ କରନ୍ତି, ଲୋକର ଉପକାର କରନ୍ତି ଏବଂ ଦେଶର ଉନ୍ନତି ସାଧନ କରି ପାରନ୍ତି ।

ଶିକ୍ଷିତ ଲୋକମାନଙ୍କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରା ଯାଇପାରେ । ପ୍ରାଥମିକ, ମଧ୍ୟମ ଓ ଉଚ୍ଚତମ । ସାଧାରଣ ପକ୍ଷରେ ପ୍ରାଥମିକ ଶିକ୍ଷା ଅର୍ଥାତ୍ ଲେଖାପଢ଼ା ଓ ଗଣିତ ଜାଣିବା, ବିନା ବ୍ୟୟରେ ବାଧ୍ୟତାମୂଳକ ହେବା ଉଚିତ, ମଧ୍ୟମଶ୍ରେଣୀ ପକ୍ଷରେ ସ୍କୁଲ ଶେଷ ପରୀକ୍ଷା ବା ମେଟ୍ରିକୁଲେସନ ପର୍ଯ୍ୟନ୍ତ ଯିବା ଯଥେଷ୍ଟ, ଏବଂ ଉଚ୍ଚଶ୍ରେଣୀର ଲୋକେ ଉଚ୍ଚରୁ ଉଚ୍ଚତର ଶିକ୍ଷା ପାଇବା ଉଚିତ । ଗରିବ ଛାତ୍ରମାନେ ଉଚ୍ଚ ଚାକିରି କରିବା ନିମନ୍ତେ ଉଚ୍ଚ ଶିକ୍ଷା ପାଇବାକୁ ପ୍ରୟାସ କରନ୍ତି । ଏଥିପାଇଁ ଏମାନେ ଆପଣାର ଜମି ବାଡ଼ି ତଳ ବନ୍ଧକ ଦେଇ ବନ୍ଧାଛନ୍ଦା କରି ଋଣଗ୍ରସ୍ତ ହୁଅନ୍ତି, ମାଗି ଯାଚି ଅର୍ଥ ସଂଗ୍ରହ କରନ୍ତି,

ନଚୁବା କନ୍ୟା ସୁନା, ବର ଶୁଳ୍କ ଇତ୍ୟାଦି ଗ୍ରହଣ କରି ଶିକ୍ଷା ବ୍ୟୟ ନିର୍ବାହ କରନ୍ତି । ପରିଶେଷରେ ଦେଖାଯାଏ ଯେ ଏଭଳି ଅନେକ ଶିକ୍ଷିତ ଲୋକ ମିଛ କହି ଲାଞ୍ଚ ନେଇ ଋଣରୁ ମୁକ୍ତ ହୁଅନ୍ତି, ବା କ୍ଷତିପୂରଣ କରନ୍ତି । ଏମାନେ କେବଳ ଦେଶର ଓ ସମାଜର ଗଳଗ୍ରହ ସ୍ୱରୂପ, ଏମାନଙ୍କଦ୍ୱାରା ଦେଶର କୌଣସି ଉପକାର ସାଧିତ ହୁଏନାହିଁ । ପୁଣି ବହୁସଂଖ୍ୟକ ଲୋକ ବ, ଏ, ଏମ୍, ଏ; ପ୍ରଭୃତି ଉଚ୍ଚ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିବା ଦେଖି କ୍ଷୁଦ୍ର ଗୃହକର୍ମ ନିମନ୍ତେ ମଧ୍ୟ ଉଚ୍ଚ ଉପାଧିବାଲାମାନଙ୍କୁ ନିଯୁକ୍ତ କରା ଯାଉଅଛି । ଯେଉଁମାନେ ସ୍କୁଲ୍ ଶେଷ ପରୀକ୍ଷା ପର୍ଯ୍ୟନ୍ତ ପଢି ରହନ୍ତି, ସେମାନଙ୍କର ଗୃହକର୍ମ ପାଇବା ସମ୍ଭାବନା କମ୍, ସୁତରାଂ ସେମାନେ ବାଧ୍ୟ ହୋଇ କୃଷି ଶିଳ୍ପ ବାଣିଜ୍ୟାଦି ପୈତୃକ ବ୍ୟବସାୟ କରି ସ୍ୱାଧୀନ ଭାବରେ କାଳଯାପନ କରନ୍ତି, ଏବଂ ତଦ୍ଦ୍ୱାରା ଦେଶର ଉପକାର ହୁଏ । ମଧ୍ୟବର୍ତ୍ତୀ ଶ୍ରେଣୀର ଲୋକ ପକ୍ଷରେ ସ୍କୁଲ୍ ଶେଷ ପରୀକ୍ଷା ଅର୍ଥାତ୍ ବ୍ୟବସାୟୋପଯୋଗୀ ଶିକ୍ଷା ଯଥେଷ୍ଟ, ପୁଣି ଯେଉଁମାନେ ଧନୀ ଓ ବିଭବଶାଳୀ ସେମାନଙ୍କ ପକ୍ଷରେ ବହୁବ୍ୟୟ ସାପେକ୍ଷ ଉଚ୍ଚଶିକ୍ଷା ଆବଶ୍ୟକ ହୋଇପାରେ । ଧନୀ ଲୋକମାନେ ଉଚ୍ଚଶିକ୍ଷା ପ୍ରାପ୍ତ ହେଲେ ସେମାନେ ସାଧାରଣତଃ ଗୃହକର୍ମ ଲାଳସୀ ହୁଅନ୍ତି ନାହିଁ । ତେବେ କାର୍ଯ୍ୟ ପ୍ରାର୍ଥିମାନଙ୍କର ପରୀକ୍ଷା, ଯୋଗ୍ୟତାର ପରିମାଣ ଅବଶ୍ୟ ଜଣା ଧରାଯିବ । ଏଫ୍, ଏ; ବ, ଏ; ଏମ୍, ଏ; ଡିଗ୍ରୀଧାରୀ ସଂଖ୍ୟା ବେଶି ହେବାରୁ ସାମାନ୍ୟ ଗୃହକର୍ମ ସକାଶେ ବ, ଏ; ଉପାଧିବାଲା ଅବଶ୍ୟକ ହୁଏ । ଗରିବ ମେଟ୍ରିକ୍ୟୁଲେଟମାନଙ୍କୁ କାମ ମିଳୁ ନାହିଁ । ଉଚ୍ଚ ଉପାଧିଧାରୀମାନେ ଗୃହକର୍ମ ନ କଲେହେଁ ଅର୍ଥାଶାରେ ଓକିଲାତି କରିବାକୁ ଚାହାନ୍ତି । ଓକିଲମାନଙ୍କଦ୍ୱାରା ଦେଶର ଯେଉଁ ଉପକାର ହେଉଅଛି, ତଦପେକ୍ଷା ସମାଜର ବହୁ କ୍ଷତି ସାଧିତ ହେଉଅଛି । ମାଲି ମୋକଦ୍ଦମା ଜାଲରେ ପଡି ବହୁଲୋକ ସର୍ବସ୍ୱାନ୍ତ ହେଉଛନ୍ତି ଏବଂ ଆପଣା ମଧ୍ୟରେ ବିବାଦ ବିଗ୍ରହରେ ମାତି ସୁଖ ଶାନ୍ତି ହରାଇ ବସନ୍ତି । ଏହିପରି ଦେଖା ଯାଉଅଛି ଯେ ସଙ୍ଗତିସମ୍ପନ୍ନ, ଚରିତ୍ରବାନ, ପରୋପକାରୀ, ଦେଶହିତୈଷୀ, ଜ୍ଞାନପିପାସୁ ବ୍ୟକ୍ତି ବ୍ୟତୀତ ଗରିବ ସାଧାରଣ ପକ୍ଷରେ ଉଚ୍ଚଶିକ୍ଷା ଅନେକ ସ୍ଥାନରେ ହିତକାରୀ ହୋଇ ପାରୁ ନାହିଁ । ଉଚ୍ଚଶିକ୍ଷା ପ୍ରାପ୍ତ ହେଲେ ଯେ, ଲୋକେ ଚରିତ୍ରବାନ, ତ୍ୟାଗୀ ବା ପରୋପକାରୀ ହେଉଛନ୍ତି, ଏହା କୋଲାଯାଇ ନ ପାରେ । ଯାହାର ସ୍ୱଭାବ ମନ୍ଦ, ତାହାକୁ କେତେ ମାଠିରୁ ମାଠ, ସେ ସେହି ଦରପୋଡ଼ା କାଠ ।

ଅତଏବ ଆର୍ଥିକ ଅବସ୍ଥା କିମ୍ବା ଗୁଣ ଓ ଚରିତ୍ର ନିର୍ବିଶେଷରେ ସମସ୍ତଙ୍କର ଉଚ୍ଚଶିକ୍ଷା ହ୍ରାସ ଏବଂ ସେମାନଙ୍କ ପାଇଁ ଉଚ୍ଚ ଶିକ୍ଷାର ଯୋଗାଡ଼

ସମୁଚିତ ବୋଧ ହୁଏ ନାହିଁ । ପରନ୍ତୁ ପ୍ରାୟ ସମସ୍ତ ବା ବହୁସଂଖ୍ୟକ ଲୋକ ସ୍କୁଲ ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଉଚିତ । ପରିଶେଷରେ ଏହି କଥା ମନେ ରଖିବାକୁ ହେବ ଯେ, ବ୍ରହ୍ମଚର୍ଯ୍ୟ ବିହୀନ ଧନ ଲାଳସୀ ଏବଂ ଭୋଗବିଳାସୀ ହୋଇ ଉଚ୍ଚଶିକ୍ଷା ପାଇବା ଅପେକ୍ଷା ବ୍ରହ୍ମଚର୍ଯ୍ୟ ପୂର୍ବକ ସାମାନ୍ୟ ଶିକ୍ଷାପ୍ରାପ୍ତ ହୋଇ ସ୍ୱଚ୍ଛ, ସ୍ୱଚ୍ଛନ୍ଦ, ସରଳ, ନିରାଡ଼ମ୍ବର ଜୀବନ ଯାପନ କରିବା ଶ୍ରେୟସ୍କର ।



# ପୁସ୍ତକ ପ୍ରକାଶ ।

କେହି କେହି ସୁଲେଖକମାନେ ଏକ ଏକ ଉପାଦେୟ ବିଷୟ ନେଇ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକ ଗୁଡ଼ିଏ ପ୍ରଣୟନ ବା ସଂକଳନ କରନ୍ତି । ଏମାନେ ଏଥିଦ୍ୱାରା ସାହିତ୍ୟର କଳେବର ବୃଦ୍ଧି ସଙ୍ଗେ ସଙ୍ଗେ ଲୋକ ସାଧାରଣଙ୍କର ଅନେକ ଉପକାର କରନ୍ତି । ଏହି ଲୋକ ହିତକର କାର୍ଯ୍ୟ କରି ଏମାନେ ଲୋକରେ ଧନ୍ୟବାଦର ପାତ୍ର ହୁଅନ୍ତି । କିନ୍ତୁ ଦୁଃଖର ବିଷୟ, ଏହି ପ୍ରଣୟନରେ ମଧ୍ୟ ପ୍ରତାରଣା ଜଡ଼ିତ ଥାଏ । କେହି କେହି ଲେଖକମାନେ ନିଜେ ଖଣ୍ଡିଏ ଲେଖେ ପୁସ୍ତକ ଲେଖି ତାହା ଅନ୍ୟ କର୍ତ୍ତୃକ ପ୍ରଣୀତ ବା ସଂକଳିତ ବୋଲି ଲୋକରେ ପରିଚୟ ଦିଅନ୍ତି । ଏଥିରେ ଯେ ଲେଖକଙ୍କର ନିଃସ୍ୱାର୍ଥପରତା ବା ଉଦାରତା ବୁଝାଯାଏ ତାହା ନୁହେଁ । ଏହା କେବଳ ଲେଖକଙ୍କର ଅଣ୍ଡିତ ବତ୍ସଳତା । ଯଦି ଲେଖକଙ୍କର କୌଣସି ଭାଇ, ଶଳା, ପୂଜାରୀ ବା ଚାକର ତାହାଙ୍କର ଅନୁସରଣ କରିଥାନ୍ତି ତେବେ ସେ ଖଣ୍ଡିଏ ଲେଖେ ପୁସ୍ତକ ନିଜେ ସଂକଳନ କରି ତାହା ଉକ୍ତ ଭାଇ, ଶଳା ବା ଚାକର କର୍ତ୍ତୃକ ସଂକଳିତ ବା ପ୍ରଣୀତ ବୋଲି ଲୋକରେ ପ୍ରଚାର କରନ୍ତି । ଯଦି ସେହି ପୂଜାରୀ ବା ଚାକର ନିଜେ ଉକ୍ତ ପୁସ୍ତକ ଲେଖିବାକୁ ସମର୍ଥ ଥାଆନ୍ତେ ତାହାହେଲେ ଏହିପରି ପ୍ରଚାର ଦ୍ୱାରା ବିଶେଷ କ୍ଷତିର ସମ୍ଭାବନା ନଥିଲା । କିନ୍ତୁ ପ୍ରକୃତ କଥା କହିବାକୁ ହେଲେ ସେମାନେ କୌଣସି ପୁସ୍ତକ ଲେଖିବାକୁ ଏକାନ୍ତ ଅସମର୍ଥ । ଯେଉଁ ଲୋକ କୌଣସି କାର୍ଯ୍ୟର ଗୁରୁତ୍ୱ ବା ଦାୟିତ୍ୱ ବୁଝି ପାରେ ନାହିଁ ତାହା ଉପରେ ସେହି କାର୍ଯ୍ୟଭାର ଅର୍ପଣ କରିବା କେଡ଼େ ଅବିଚାରର କଥା ପାଠକେ ବିଚାର କରି ବୁଝନ୍ତୁ । ପୁଣି ଏହି ମିଥ୍ୟା ପ୍ରଚାର ଦ୍ୱାରା ସର୍ବସାଧାରଣ ପ୍ରତାରିତ ହୋଇ କେତେ ଦୂର କ୍ଷତିଗ୍ରସ୍ତ ହୁଅନ୍ତି ତାହା ଚିନ୍ତାଶୀଳ ବ୍ୟକ୍ତିମାନେ ସହଜରେ ବୁଝି ପାରିବେ । ପାର୍ଥିବ ଧନ ପ୍ରଦତ୍ତ ହୋଇପାରେ, ଆହୃତ ହୋଇପାରେ, ତଥାପି ପର ଧନରେ କେହି ଧନୀ ବୋଲାଇ ପାରେ

ନାହିଁ । ତେବେ କେହି ମୂର୍ଖ ଯେ, ଅଙ୍କ ବିଦ୍ୟାରେ ଆପଣାକୁ ବିଦ୍ୱାନ ବୋଲି ପରିଚୟ ଦେବେ, ଏହା କିପରି ବିଡମ୍ବନାର ବିଷୟ ଅଟେ, ପାଠକେ ବିଚାର କରନ୍ତୁ । ଏହି ମିଥ୍ୟା ପ୍ରଚାର ଦ୍ୱାରା ପ୍ରଣେତା ବା ସଂକଳନକାରୀ ବୋଲି ପରିଚିତ ହେବା ଲୋକର ଗୌରବ ବଢେ ନାହିଁ, କିନ୍ତୁ ସେ, ପରିଣାମରେ ଯେତେବେଳେ ପ୍ରକୃତ କଥାଟା ପଦାରେ ପଡ଼ିଯାଏ, କେବଳ ହାସ୍ୟାସ୍ପଦ ହୁଅନ୍ତି । ଅନେକ ସମୟରେ କେହି କେହି ନଗଣ୍ୟ ଲେଖକ ଆପଣା ରଚନାର ଗୌରବ ବଢ଼ାଇବା ନିମନ୍ତେ ଆପଣା ଲେଖାକୁ କୌଣସି ସୁବିଖ୍ୟାତ ସୁଲେଖକଙ୍କ ରଚନା ବୋଲି ପରିଚୟ ଦେଇଥାନ୍ତି । ଏହି କାରଣରୁ ଅନେକ ସ୍ଥାନରେ ଜଗତ ବିଖ୍ୟାତ ସୁଲେଖକଙ୍କ ଲେଖାରେ ଅସାମଞ୍ଜସ୍ୟ ଦେଖାଯାଏ । ସେହିପରି ଏହି ଲେଖକମାନେ ଅନ୍ୟର ଖ୍ୟାତି ସମ୍ପାଦନ କରିବାକୁ ଯାଇ ପରିଣାମରେ ତାହାର କ୍ଷତି ସାଧନ କରିଥାନ୍ତି ।

ବିଚାର କରନ୍ତୁ, କୌଣସି ବ୍ୟକ୍ତି 'ଗୁଆ' କଣ ଜାଣନ୍ତି ନାହିଁ, ତାହା ଏକ ବୃକ୍ଷର ମୂଳ, ଡାଳ, କିବା ପତ୍ର, କିବା କାଠ ବା ପାଉଁଶ କିଛି ବୁଝି ନଥାନ୍ତି, ତାହା ରନ୍ଧନ କରି ଖାଆନ୍ତି କିମ୍ବା ବାଟିକରି ଦେହରେ ଲେପ ଦଅନ୍ତି, କିଛି ଜାଣନ୍ତି ନାହିଁ, ତଥାପି ସେହି ବ୍ୟକ୍ତିଙ୍କର ରଚନା ବୋଲି 'ଗୁଆ'ର ଉତ୍ପତ୍ତି, ପରିଣାମ, ଉପକାରିତା ଏବଂ ଅପକାରିତା ବିଷୟରେ ଗୋଟିଏ କ୍ଷୁଦ୍ର ପୁସ୍ତିକା ବାହାରେ । ପୁଣି ଯେଉଁ ଲୋକ ଦୁଇଗୋଟି ବାକ୍ୟ ଯୋଜନା କରି ଜାଣେ ନାହିଁ ସେହିଲୋକ ଯଦି ଗୋଟିଏ ସୁନ୍ଦର, ସୁମଧୁର, ସାଧୁ ଭାଷାରେ ଲିଖିତ ପୁସ୍ତକର ରଚୟିତା ବୋଲି ଲୋକରେ ବିଦିତ ହୁଏ, ତେବେ ଏହି ପ୍ରତାରଣାରେ କେତେ ସରଳ ପ୍ରକୃତିର ଲୋକ କ୍ଷତିଗ୍ରସ୍ତ ନ ହେବେ ?



## ସାହିତ୍ୟ ଭଣ୍ଡାର ।

ଜାତୀୟ ସାହିତ୍ୟହିଁ ଜାତୀୟ ସମ୍ପତ୍ତି । ସାହିତ୍ୟ ଦ୍ୱାରା ଜାତୀୟ ଉନ୍ନତି ଏବଂ ଅବନତିର ପରିଚୟ ମିଳେ । ଜାତିର ଉନ୍ନତିକ୍ରମେ ସାହିତ୍ୟ ବୃଦ୍ଧିଲାଭ କରେ । ସାହିତ୍ୟର ବୃଦ୍ଧି ସଙ୍ଗେ ସଙ୍ଗେ ତାହାର ରକ୍ଷଣାବେକ୍ଷଣ ଆବଶ୍ୟକ, ଯେପରି ତାହା କାଳକ୍ରମେ ନଷ୍ଟ ଭ୍ରଷ୍ଟ ନହୋଇ ଚିରକାଳ ସକାଶେ ସ୍ଥାୟୀ ରୂପେ ରହେ । ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଚିନ୍ତାଶୀଳ ଲୋକେ ଆପଣା ରୁଚି ଅନୁସାରେ ନାନାବିଧ ସାହିତ୍ୟ ଲେଖିଯାଇ ଥାନ୍ତି । ଏପରି ଅନେକ

ସାହିତ୍ୟ ସୁରକ୍ଷିତ ହୋଇ ନପାର କାଳକ୍ରମେ ନଷ୍ଟ ହୋଇଯାଇ ଥାଏ ପୁଣି ତହିଁରୁ କେତେ ମଧ୍ୟ ଲୋକଙ୍କ ସ୍ମରଣରେ ନଥାଏ । ଏହି ଲୁପ୍ତ ସାହିତ୍ୟ ପୁନରପି ପ୍ରକାଶ ପାଏନାହିଁ । କିମ୍ବା ତାହାର ଆଦର୍ଶରେ ଅନ୍ୟାନ୍ୟ ପୁସ୍ତକ ଲେଖାହେବା ସହଜ ନୁହେ । ସାହିତ୍ୟର ଏହିପରି ଦୁରବସ୍ଥାରୁ ଲୋକେ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟକାରୀ ହେଇ ପାରନ୍ତି ନାହିଁ । ଜାତୀୟ ସାହିତ୍ୟ ଆଦର୍ଶ ଅଭାବରେ ଅନ୍ୟ ଜାତୀୟ ସାହିତ୍ୟର ଅନୁକରଣ କରିବାକୁ ବାଧ୍ୟ ହେବାକୁ ହୁଏ । ଏହି ଅନୁକରଣରୁ ପ୍ରାଚୀନ ଜାତୀୟ ରୀତିନୀତି ଓ ଭାଷାର ପ୍ରଣାଳୀ ବିଲୁପ୍ତ ହୋଇ ସାହିତ୍ୟ କଦାକାର ଧାରଣକରେ । ଜାତୀୟ ସାହିତ୍ୟ—ଜ୍ଞାନାଭାବରୁ ଲୋକେ ଆପଣାର ପ୍ରାଚୀନ ଅବସ୍ଥାର ଗୌରବ ଜାଣି ନପାରି ଆପଣାକୁ ହୀନ ଜ୍ଞାନକରି କର୍ମକ୍ଷେତ୍ରରେ ମାନବୋଚିତ କାର୍ଯ୍ୟ କରିବାକୁ ଅଗ୍ରସର ହୋଇ ପାରନ୍ତି ନାହିଁ । ଅତଏବ ସହିତ୍ୟ ସର୍ବଦା ସଂରକ୍ଷଣୀୟ ।

ସକଳ ପ୍ରକାର ସାହିତ୍ୟ ଅଗ୍ରହର ସହିତ ରକ୍ଷଣୀୟ । ଉଚ୍ଚ ନୀଚ, ସରସ ନୀରସ ଭେଦ ନରଖି ସକଳ ପ୍ରକାର ସାହିତ୍ୟ ରଖାଯିବା ଉଚିତ । ଯେହେତୁ ପ୍ରାଚୀନ ସାହିତ୍ୟ ଜ୍ଞାନ ଦ୍ୱାରା ଜାତିର ପ୍ରାଚୀନ ଅବସ୍ଥାକ୍ରମ ଜଣାଯାଏ । କେତେବେଳେ ଏହାର ପତନ ଥାଏ, କେତେବେଳେ ଉତ୍ଥାନ ଥାଏ, କେତେବେଳେ ଲୋକେ ଭକ୍ତିରସରେ ଅପ୍ଲୁତ ହୋଇଥାନ୍ତି, ନତୁବା ଭୟାନକ ବିବସ୍ତ୍ରରେ ଜର୍ଜ୍ଜରୀଭୂତ ହୋଇଥାନ୍ତି, କେତେବେଳେ ଶିଳ୍ପ ବାଣିଜ୍ୟ କୁଶଳହୋଇ ଭାଗ୍ୟବାନ ହୋଇ-ଥାନ୍ତି, ଅବା ପରମୁଖାପେକ୍ଷୀ ଭିକ୍ଷୁ ହୋଇଥାନ୍ତି, କେତେବେଳେ ଧନ ଲୋଲୁପ ଗୃଧ୍ନୁ, କେତେବେଳେ ମୁକ୍ତହସ୍ତ ହୋଇଥାନ୍ତି—ଏହି ଇତିହାସ ଜ୍ଞାନରୁ ଲୋକେ ଆପଣାର ଭାବୀ ଉନ୍ନତି ପ୍ରତି ଯତ୍ନଶୀଳ ହୋଇ କ୍ରମୋନ୍ନତି ଲାଭ କରନ୍ତି । କେତେକ ଗଦ୍ୟ, ପଦ୍ୟ, କାହାଣୀ ବା ପଦରୁ ମଧ୍ୟ ପ୍ରାଚୀନ ଅବସ୍ଥାର ପରିଚୟ ମିଳିଥାଏ । ଯଥା 'ହସ୍ତୀ' ପଦ ଦ୍ୱାରା ଗୋଟିଏ ସୁନ୍ଦର ପ୍ରାଚୀନ ରୀତି ଜଣାଯାଉଅଛି । ଏହିପରି ପ୍ରସ୍ଥାନ, ଉତ୍ସର୍ଗ, ବିତରଣ, ମଣ୍ଡପ ଇତ୍ୟାଦି ।

ଅତଏବ ଆମ୍ଭମାନଙ୍କ କର୍ତ୍ତବ୍ୟ ଏହିଯେ ଅମ୍ଭମାନଙ୍କ ଉତ୍କଳ ସାହିତ୍ୟର ସଂରକ୍ଷଣ ଚେଷ୍ଟା କରାଯାଉ ।

ଗୋଟିଏ ସାହିତ୍ୟ ଭଣ୍ଡାର ସ୍ଥାପିତ ହେଉ, ଏହି ଭଣ୍ଡାରରେ ପ୍ରାଚୀନ, ଆଧୁନିକ ସକଳ ସାହିତ୍ୟରୁ ଖଣ୍ଡେ ଲେଖେ ରଖାଯାଉ । ରଚୟିତା ମାନଙ୍କୁ ଏହି ଭଣ୍ଡାରକୁ ଅପଣା ଅପଣା ପୁସ୍ତକରୁ ଖଣ୍ଡେ ଲେଖେଁ ପଠାଇବାକୁ ହେବ ।

ଏହି ଭଣ୍ଡାରର ଅନ୍ୟତମ ନାମ "ଉତ୍କଳ ପାଠାଗାର" ହେଉ, ଏହା ଉତ୍କଳ ସାହିତ୍ୟ ସମାଜର ଅଙ୍ଗୀଭୂତ ହୋଇ ରଖାଯାଉ । ନୂତନ ପୁରାତନ ଯାହା କିଛି ସାହିତ୍ୟ ଅଛି ତାହାସବୁ ସଂଗ୍ରହ କରାଯିବ, ପୁଣି ଖଣ୍ଡେ ଖଣ୍ଡେ ଅପଣା ପୁସ୍ତକ ଦେବା ସକାଶେ ପ୍ରଣେତା ଓ ସତ୍ତ୍ୱାଧିକାରୀ ମାନଙ୍କୁ ଅନୁରୋଧ କରାଯାଉ । ଏହି ସଦନୁଷ୍ଠାନ ସକାଶେ ଆବଶ୍ୟକୀୟ ଧନ ଚୂନ୍ଦାଦ୍ୱାରା ସଂଗୃହୀତ ହେଉ ପୁଣି ରାଜା ଜମିଦାର ମାନେ ଏହାର ପୃଷ୍ଠପୋଷକ ହୁଅନ୍ତୁ ।

ସାହିତ୍ୟ ସମାଜର ସଭ୍ୟମାନେ ଏହି ବିଷୟରେ ଆଲୋଚନା କରି କର୍ତ୍ତବ୍ୟ ସ୍ଥିର କରିବା ସକାଶେ ଅନୁରୋଧ କରୁଅଛୁଁ । ପ୍ରସ୍ତାବଟି ମନୋନୀତ ହେଲେ ତହିଁର ବିଶେଷ ବିବରଣ ଉପସ୍ଥାପିତ କରାଯିବ ।

—

## ସାଧାରଣ ପାଠାଗାର ।

ଯେଉଁ ସ୍ଥାନରେ ନାନାବିଧ ପାଠ୍ୟ ପୁସ୍ତକ ସଂଗୃହୀତ ହୋଇ ପାଠ କରାଯାଏ ତାହାକୁ ପାଠାଗାର ବୋଲାଯାଏ । ଲୋକ ସମାଜରେ ପାଠାଗାର ଗୋଟିଏ ଗୋଟିଏ ବିଦ୍ୟାଳୟର କାର୍ଯ୍ୟ କରିଥାଏ, ପାଠାଗାର ଓ ବିଦ୍ୟାଳୟ ମଧ୍ୟରେ ପ୍ରଭେଦ ଏହି— ବିଦ୍ୟାଳୟରେ ବାଳକ ବାଳିକାମାନେ ବିଦ୍ୟାଶିକ୍ଷା ଆରମ୍ଭ କରନ୍ତି, କିନ୍ତୁ ପାଠାଗାରରେ ଶିକ୍ଷିତ ଲୋକମାନେ ଉତ୍ତରୋତ୍ତର ଶିକ୍ଷାଲାଭ କରିଥାନ୍ତି । ବିଦ୍ୟାଳୟରେ ଗୁରୁ ଶିକ୍ଷା ଦିଅନ୍ତି, ପାଠାଗାରରେ ପୁସ୍ତକରୁ ଶିକ୍ଷା ପ୍ରାପ୍ତ ହେବାକୁ ହୁଏ । ବିଦ୍ୟାଳୟରେ ଏକମାତ୍ର ଗୁରୁ, କିନ୍ତୁ ପାଠାଗାରରେ ଶତ ସଂଖ୍ୟକ ଗୁରୁ । ବିଦ୍ୟାଳୟରେ ସଜୀବ ଆଦର୍ଶ ମିଳିପାରେ, କିନ୍ତୁ ପାଠାଗାରରେ ପାଠକର ଜ୍ଞାନ ଶକ୍ତି ଓ ରୁଚି ଅନୁସାରେ କଳ୍ପନା ରାଜ୍ୟ ଓ ମାନସ ପଟରେ ଆଦର୍ଶ ଅଙ୍କନ କରିବାକୁ ହୁଏ । ଛାତ୍ର ବା ବିଦ୍ୟାର୍ଥୀ ଅବସ୍ଥାରେ ବିଦ୍ୟାଳୟର ପ୍ରୟୋଜନ ହୁଏ କିନ୍ତୁ ଆଜୀବନ ପାଠାଗାରର ଆବଶ୍ୟକତା ରହେ । ବିଦ୍ୟାଳୟରେ ଯାହା ଶିକ୍ଷା କରାଯାଇଥାଏ ପାଠାଗାର ତାହା ପୂରଣ କରାଇ ଦିଏ । ବିଦ୍ୟାଳୟରେ ଶିକ୍ଷାର ପ୍ରଣାଳୀ ଜାଣିବାକୁ ହୁଏ, ପାଠାଗାରରେ ଶିକ୍ଷାର ଲାଭ ପାଇବାକୁ ହୁଏ । ବିଦ୍ୟାଳୟ କେବଳ ଛାତ୍ର ଛାତ୍ରୀମାନଙ୍କର, କିନ୍ତୁ ପାଠାଗାର ସମସ୍ତ ଶିକ୍ଷିତ ବ୍ୟକ୍ତିମାନଙ୍କର । ଲୋକ ସମାଜରେ ବିଦ୍ୟାଳୟ ଯେରୂପ ପ୍ରୟୋଜନ ଶିକ୍ଷିତ ସମାଜରେ ପାଠାଗାର ତଦ୍ରୂପ ପ୍ରୟୋଜନ । ଅତଏବ ପ୍ରତ୍ୟେକ ଗ୍ରାମରେ ଓ ପ୍ରତ୍ୟେକ ସମାଜରେ ପାଠାଗାର ପ୍ରତିଷ୍ଠିତ ହେବା ଏକାନ୍ତ ଆବଶ୍ୟକ । ପାଠାଗାର ସ୍ଥାପନ ଦ୍ୱାରା ଲୋକଙ୍କର ବିଦ୍ୟା ଶିକ୍ଷା ପ୍ରତି ପ୍ରବୃତ୍ତି ଏବଂ ଅଭିରୁଚି ଜନ୍ମେ । ଧନ ରତ୍ନାଦି

ଯେପରି ଭଣ୍ଡାରରେ ସଂରକ୍ଷିତ ହୁଏ, ବିଦ୍ୟା ସମ୍ପତ୍ତି ତଦ୍ରୂପ ପୁସ୍ତକାବଳୀରେ ସଞ୍ଚିତ-ରହେ, କିନ୍ତୁ ଭଣ୍ଡାରର ଧନ ସମ୍ପତ୍ତି ଭଣ୍ଡାର ରକ୍ଷକ ଅଧୀନରେ ରହେ, ଏବଂ କେବଳ ଧନେଶ୍ୱରଙ୍କ ଭୋଗ ବିଳାସରେ ଲାଗେ, ବିଦ୍ୟା-ସମ୍ପତ୍ତି ସମସ୍ତ ଲୋକଙ୍କଦ୍ୱାରା ବ୍ୟବ-ହୃତ ହୁଏ । ଏହି ପୁସ୍ତକଗତ ବିଦ୍ୟା-ସମ୍ପତ୍ତି ପ୍ରତ୍ୟେକ ବ୍ୟକ୍ତିଙ୍କ ନିକଟରେ ଏକତ୍ର ଠୁଳ ରହିବା ସମ୍ଭବପର ନୁହେଁ, ତାହା ସବୁ ସଂଗ୍ରହ କରି ଏକତ୍ର ରଖିବା ପ୍ରତ୍ୟେକ ବ୍ୟକ୍ତିର ଆର୍ଥିକ ଶକ୍ତିର ଅତୀତ । ଅତଏବ ସେମାନେ ଆପଣା ଦରକାର ବେଳେ ଆପଣା ଅଭିରୁଚି ଅନୁସାରେ ପୁସ୍ତକ ନପାଇ ଉକ୍ତ ପୁସ୍ତକରେ ସଞ୍ଚିତ ଥିବା ଜ୍ଞାନଲାଭରୁ ବଞ୍ଚିତ ହୁଅନ୍ତି । ବିଷୟ ରାଜ୍ୟରେ ବା ବିଦ୍ୟା ଜଗତରେ ହେଉ, ଆବଶ୍ୟକତାର ପ୍ରାଚୁର୍ଯ୍ୟ ସଙ୍ଗେ ସଙ୍ଗେ ଅଭାବର ବୃଦ୍ଧି ହୁଏ । ଯେତେ ପରିମାଣରେ ଅଭାବ ଅନୁଭୂତ ହୁଏ ସେହି ପରିମାଣରେ ପ୍ରୟୋଜନର ସୀମା ବୃଦ୍ଧି ଲାଭ କରେ । ପୁସ୍ତକ ପ୍ରାପ୍ତିର ଅବକାଶ ଥିଲେ ପୁସ୍ତକ ପଢ଼ାର ପ୍ରବୃତ୍ତି ଜନ୍ମେ । ଅତଏବ ପାଠାଗାର ସ୍ଥାପନ ଯୋଗୁଁ ପାଠକ ସଂଖ୍ୟା ବୃଦ୍ଧି ପାଏ । କୌଣସି ବିଷୟରେ କିଛି ଶ ସ୍ଥଳରେ ଲିପିବଦ୍ଧ ହୋଇଅଛି କି ନା ତାହା ଅନେକେ ଜାଣିପାରି ନଥାନ୍ତି, କିନ୍ତୁ ସେମାନେ ପାଠାଗାରକୁ ଯାଇ ତାହା ସହଜରେ ଦେଖି ଜାଣି ପାରନ୍ତି । ପାଠାଗାରକୁ ଗୋଟିଏ ହାଟ ବା ଗୋଟିଏ ପ୍ରଦର୍ଶନୀ କହିଲେ ଚଳିବ । କିନ୍ତୁ ହାଟରେ ପଦାର୍ଥ ବିକ୍ରି ହୁଏ, ପାଠାଗାରରୁ ବିନା ମୂଲ୍ୟରେ ବିଦ୍ୟା ପ୍ରାପ୍ତ ହୁଏ । ପ୍ରଦର୍ଶନୀରେ ଯେପରି ନାନାବିଧ କୃଷିଜାତ ପଦାର୍ଥ, ଶିଳ୍ପ ପ୍ରସ୍ତୁତ ବସ୍ତୁ ବା ନାନାବିଧ ଯନ୍ତ୍ର ଓ କୃଷି ଉପଯୋଗୀ ପଶୁ ଲୋକେ ଦେଖିବାକୁ ପାଆନ୍ତି ସେହିପରି ବିଦ୍ୟାର୍ଥିମାନେ ପାଠାଗାରରେ ନାନାବିଧ ପୁସ୍ତକ ଦେଖି ପାଠକରି ବିଦ୍ୟାଶିକ୍ଷା କରି-ବାକୁ ପାଆନ୍ତି । ପ୍ରତ୍ୟେକ ବ୍ୟକ୍ତି ପକ୍ଷେ ମନୁଷ୍ୟତା ସମ୍ପାଦନ କରିବା ସକାଶେ ତିନି-ଗୋଟି ବିଷୟ ନିତାନ୍ତ ଅବଶ୍ୟକ ଯଥା—ଶିକ୍ଷା, ଆଦର୍ଶ ଓ ଅନୁଭବ । ଏହି ତିନି-ଗୋଟି ଉପକରଣ କିପରି ପରିମାଣରେ ପାଠାଗାରରେ ପ୍ରାପ୍ତ ହୁଏ । ପୁସ୍ତକରୁ ଶିକ୍ଷା କରିବାକୁ ହୁଏ, ଅନ୍ୟାନ୍ୟ ଲୋକଙ୍କର ପଢ଼ାଶୁଣା ଦେଖି ନିଜେ ପଢ଼ାଶୁଣା କରିବାକୁ ପ୍ରବୃତ୍ତି ଜନ୍ମେ, ପୁଣି ସାମୟିକ ବା ଭୂତପୂର୍ବ ଚିନ୍ତାଶୀଳ ଲେଖକମାନଙ୍କ କାର୍ଯ୍ୟକଳାପ ନିଜେ ନିଜେ ଚିନ୍ତା କରିବାକୁ ହୁଏ, ପୁଣି ଉକ୍ତ ଚିନ୍ତା ପ୍ରସୂତ ଭାବ ନିଚୟ ଲିପିବଦ୍ଧକରି ଭାବୀ ବଂଶଧର ମାନଙ୍କ ସକାଶେ ରଖି ଯିବାକୁ ହୁଏ । ଅତଏବ ଯେପରି ବିଦ୍ୟାଦାନ ଅଟେ ମହାପୁଣ୍ୟ, ସେହିପରି ପାଠାଗାର ସ୍ଥାପନ ମହଦାନୁଷ୍ଠାନ ।

ପାଠାଗାରରେ ସକଳପ୍ରକାର ପୁସ୍ତକ ସଂଗ୍ରହ କରି ରଖିବା ଉଚିତ । ଅମୁକ ଶ୍ରେଣୀର ପୁସ୍ତକ ରଖାଯିବ, ଅମୁକ ଶ୍ରେଣୀର ପୁସ୍ତକ ରଖାଯିବ ନାହିଁ, ଏହି ପ୍ରଭେଦ କରାଯିବା ମୋ ମତରେ ଉଚିତ ନୁହେଁ । କୌଣସିହେଲେ ଜାତିର ସମୋନ୍ନତି ଓ

ସଭ୍ୟତାର ପରିଚୟ ଏବଂ ପରମାଣ ତାହାର ସାହିତ୍ୟରୁ ମିଳେ । ଲୋକସାଧାରଣ ଓ ବଶିଷ୍ଟ ବ୍ୟକ୍ତିମାନଙ୍କ କାର୍ଯ୍ୟ କଳାପ ଏବଂ ଭାବ ନିଚୟ ଲିପିବଦ୍ଧହୋଇ ସଂଗୃହୀତହେଲେ ତାହାକୁ ସାହିତ୍ୟ ବୋଲାଯାଏ । ଏହି ସାହିତ୍ୟ ପାଠରୁ ପୂର୍ବ ବଂଶଧରମାନଙ୍କର ରୀତି ନୀତି, ଭାବାଭାବ ଓ କାର୍ଯ୍ୟ କଳାପର ପରିଚୟମିଳେ। ପୁଣି ଏହି ପରିଚୟ ସାହାଯ୍ୟରେ ଭାବୀ ଜନତର ପଥ ନିର୍ଦ୍ଦେଶ କରିବାକୁ ହୁଏ । ଅତଏବ କୌଣସି ପୁସ୍ତକ ପତ୍ରିକା ଓ ରଚନାବଳୀ ଅସାର ପଦାର୍ଥବୋଲି ପରିତ୍ୟକ୍ତ ହେବା ଉଚିତନୁହେ । ଉପନିଷଦ ଓ ଗୀତାଠାରୁ ଦାଣ୍ଡଧୂଆ ଓ ଅଶ୍ଳୀଳପୂର୍ଣ୍ଣ ରଥଗୀତ ପର୍ଯ୍ୟନ୍ତ ସଂଗୃହୀତହୋଇ ସଂରକ୍ଷିତହେବା ଆବଶ୍ୟକ । ଗଭୀର ଭକ୍ତି ରସାମୃତ ଠାରୁ ବୀଭତ୍ସ ଶୃଙ୍ଗାର ରସପୂର୍ଣ୍ଣ ଅଶ୍ଳୀଳ ଗରଳ ପର୍ଯ୍ୟନ୍ତ ସାଦର ଗ୍ରହଣୀୟ ଓ ନିରାପଦ ରକ୍ଷଣୀୟ । ବୈଦ୍ୟ ଯେପରି ରସାୟନ, ବିଷାୟନ, ସକଳପ୍ରକାର ଭେଷଜ ସଂଗ୍ରହକରି ରଖନ୍ତି, କିନ୍ତୁ ବ୍ୟାଧି ଭେଦରେ ବିଭିନ୍ନ ଔଷଧ ପ୍ରୟୋଗ କରିଥାନ୍ତି, ସେହିପରି ପାଠାଗାରରେ ସକଳ-ପ୍ରକାର ପୁସ୍ତକ ସଂଗୃହୀତ ଥିଲେହେଁ ପାଠକମାନଙ୍କର ବୟସ, ଅବସ୍ଥା, ଶିକ୍ଷା ଓ ରୁଚି-ଭେଦରେ ସେମାନଙ୍କ ସକାଶେ ବିଭିନ୍ନ ପୁସ୍ତକ ଅଧ୍ୟୟନର ବ୍ୟବସ୍ଥା କରିବାକୁ ହେବ । କୌଣସି ମୁକ୍ତସ୍ଥାନରେ ଆଲୋକପୂର୍ଣ୍ଣ, ବାୟୁ ଗମନାଗମନର ସୁବିଧାଯୁକ୍ତ, ସୁବିଶାଳ ଗୃହରେ ପାଠାଗାର ସ୍ଥାପିତହେବା ବିଧେୟ । ପୁସ୍ତକ ଗୁଡିକ ଯେପରି ସୁଶ୍ରେଣୀବଦ୍ଧ ରହିବ ସେଥିପ୍ରତି ଖୁବ୍ ଦୃଷ୍ଟି ରଖିବାକୁ ହେବ । ଶୃଙ୍ଖଳାହିଁ ସ୍ୱର୍ଗ ରାଜ୍ୟର ପ୍ରଥମ ଆଇନ ବୋଲି ଇଂରାଜି ଭାଷାରେ ଏକ ପ୍ରବାଦ ଅଛି । ଯେତେ ସୁମହତ୍ କାର୍ଯ୍ୟ ହେଉ, ନିୟମ ଓ ଶୃଙ୍ଖଳାର ସହିତ ପରିଚାଳିତ ନହେଲେ ତାହା ଫଳପ୍ରଦ ହୁଏନାହିଁ । ପୁସ୍ତକ ଗୁଡିକୁ ବିଷୟ ଭେଦରେ ବିଭିନ୍ନ ଶ୍ରେଣୀଭୁକ୍ତ ରଖିବାକୁ ହେବ, ଯଥା ଧର୍ମଶାସ୍ତ୍ର, ବିଜ୍ଞାନ, ଭେଷଜ, ଗଳ୍ପ ଇତ୍ୟାଦି । ଉପନିଷଦ ଗ୍ରନ୍ଥ ସମୂହରେ ଆଳୁ ଚାଷ ପୁସ୍ତକ ଖଣ୍ଡିଏ ଅନ୍ୱେଷଣ କଲେ ବୃଥାରେ ସମୟ ନଷ୍ଟ ହୁଏ ପୁଣି ଅନ୍ୱେଷଣରେ ପାଠକର ସାମୟିକ ଉତ୍ସାହ ଅପସାରିତ ହୋଇ ଯାଇପାରେ । ପାଠକମାନଙ୍କର ସମୟ ଓ ସୁବିଧା ପ୍ରତି ଦୃଷ୍ଟିରଖି ନିରୂପିତ ସମୟରେ ପାଠାଗାର ଖୋଲା ରଖିବାକୁ ହେବ । ଅତଏବ ସୁଦକ୍ଷ କର୍ମଚାରୀ ଉପରେ ଏହାର ପରିଚାଳନ ଭାର ନ୍ୟସ୍ତ କରିବା ଉଚିତ । ପାଠାଗାରର ରକ୍ଷଣାବେକ୍ଷଣ ଓ ପରିଚାଳନ ପ୍ରଣାଳୀ ସମ୍ବନ୍ଧରେ ପରିଶେଷରେ ବକ୍ତବ୍ୟ ଏହିଯେ, କିଛି ସ୍ଥାୟୀ ସମ୍ପତ୍ତି ଭିତ୍ତି ଉପରେ ପାଠାଗାରଟି ସୁଦୃଢ଼ ରୂପେ ସଂରକ୍ଷିତ ହେବା ଉଚିତ, ଯେପରି କାଳକ୍ରମେ ଧନାଭାବରୁ ତାହା ଭିତ୍ତି ନଷ୍ଟ ହୋଇପାରେ ନାହିଁ ।

# ହିନ୍ଦୁମାନଙ୍କର ଧର୍ମଶାସ୍ତ୍ର ।

ସଂସ୍କୃତ ଭାଷା ପ୍ରତି ଲୋକଙ୍କ ଭକ୍ତି ଏବଂ ଆସ୍ଥା ବେଶି ଦେଖାଯାଏ । ଲୋକେ ବୁଝିଥାନ୍ତି ଯେ, ସଂସ୍କୃତ ଦେବଭାଷା ଅଟେ । ତହିଁରେ ଯାହା ଲେଖାଥାଏ ତାହା ବେଦବାଣୀ ବା ଦେବବାଣୀ । ପୁଣି ଯେଉଁମାନେ କଥାର ଭାବାର୍ଥ ଓ ମର୍ମ ବୁଝି ପାରନ୍ତି ନାହିଁ ସେମାନେ କେବଳ ପଦ ବିନ୍ୟାସ ଓ ବାଗାଡମ୍ବରରେ ପ୍ରୀତ ହୋଇଥାନ୍ତି । ଅସାର ଜିନିସ ହେଉ ପଛେ ଦୂର ଦେଶରୁ ଆନୀତ ଏବଂ ବହୁ ମୂଲ୍ୟରେ କ୍ରୀତ ବସ୍ତୁ ଯେପରି ଅଶିକ୍ଷିତା ଅବଳା ମାନଙ୍କ ଦ୍ୱାରା ଆଦୃତ ହୋଇଥାଏ ସେହିପରି ଅସାର ପ୍ରଳାପ ହେଲେହେଁ ସଂସ୍କୃତ ଭାଷାରେ ଲିଖିତ ଥିଲେ ତାହା ବେଦୋକ୍ତ ବା ସ୍ମୃତି ପ୍ରସିଦ୍ଧ ବୋଲି ଗୃହୀତ ହୋଇଥାଏ । ବେଦ ମଧ୍ୟ ପ୍ରାକୃତ ଭାଷାରେ ଅନୁବାଦିତ ହେଲେ ସର୍ବ ସାଧାରଣ ଦୃଷ୍ଟିରେ ତାହାର ମୂଲ୍ୟ ହ୍ରାସ ହୋଇପଡେ । ଏହି ଧାରଣାର ମୂଳ କାରଣ କେବଳ ଶିଶ୍ନୋଦରସ୍ବସ୍ୱ ବ୍ରାହ୍ମଣମାନେ । ଏମାନେ ଦ୍ୱିଜେତର ଲୋକଙ୍କ ସକାଶେ ଶାସ୍ତ୍ର ଓ ଜ୍ଞାନ ଶିକ୍ଷା ନିଷେଧ କରିଦେଲେ । ଶାସ୍ତ୍ରମାନ ସଂସ୍କୃତ ଭାଷାରେ ଲିଖିତ ହେଲା । ତା ପରେ ଉକ୍ତଭାବ ନିଚୟ ଅନ୍ୟାନ୍ୟ ଭାଷାରେ ବର୍ଣ୍ଣିତ ହେଲେ ସୁଦ୍ଧା ତାହା ପାଠ୍ୟ ଏବଂ ପାଳନୀୟ ବୋଲି ହିନ୍ଦୁ ସାଧାରଣ ସମାଜରେ ଗୃହୀତ ହେଲା ନାହିଁ । ଏକ ସମୟରେ କୌଣସି ପଣ୍ଡିତ ଆସି ଦେଖିଲେ ଯେ, କେହି କେହି ବ୍ୟକ୍ତି ବହିର୍ଦ୍ଦେଶରେ ମଳମୂତ୍ର ତ୍ୟାଗ କଲାବେଳେ ଦଣ୍ଡାୟମାନ ହୋଇ ଆପଣା ଉଦରୋପରି କରତାଳ ଧ୍ୱନି କରୁଥାନ୍ତି । ପଣ୍ଡିତ ମହାଶୟଙ୍କୁ ଏହା ଏକ ଅଭିନବ ବ୍ୟାପାର ବୋଧହେଲା । ପେଟକୁ ମାରିବା କାରଣ ଜିଜ୍ଞାସା କରିବାରେ ସେମାନେ କହିଲେ ଯେ ବହିର୍ଗମନ ବେଳେ ପେଟକୁ ହାତରେ ମାରି ଶବ୍ଦ ଜାତ କରିବାକୁ ହେବ ବୋଲି କୌଣସି ଏକ ନିତ୍ୟାଗୃହ ପଦ୍ଧତି ଗ୍ରନ୍ଥରେ ଉଲ୍ଲିଖିତ ଅଛି । ପଣ୍ଡିତ ମହାଶୟ ଏହି କୌତୁକାବହ ଉତ୍ତର ଶୁଣି ନିଜ ଗୃହକୁ ଫେରିଯାଇ ସେଦିନ ରାତ୍ରରେ କେତେଗୋଟି ଶ୍ଳୋକ ରଚନା କଲେ । ଉକ୍ତ ଶ୍ଳୋକାବଳୀର ଅର୍ଥ ଏହିଯେ, ବହିର୍ଦ୍ଦେଶ ବସିବାବେଳେ ପେଟ ଉପରେ ୧୯ ଗୋଟି ଗୁଂପଡ ମାରିବାକୁ ହେବ, ପୃଷ୍ଠଭାଗରେ ୩ ଏବଂ ପଶ୍ଚାଦ୍ଦେଶରେ ୫ ଲେଖାଏ ମଧ କରତାଳ ପ୍ରହାର କରିବାକୁ ହେବ, ପୁଣି ବସିଥିବା ସ୍ଥାନରୁ ୧୯ ପାଦ ଘୁଞ୍ଚିଯାଇ ପ୍ରତ୍ୟେକ ଜଘନ ଉପରେ ପୂର୍ବପରି ଫେର କରତାଳ ପ୍ରହାର କରିବାକୁ ହେବ । ଏହିପରି ଯେ ନ କରେ ସେହି ଲୋକକୁ ଗୋହତ୍ୟା ପାପ ଲାଗେ, ସେ ନରକରେ ପଡି ପୁଣି କୁକ୍କୁର ଯୋନିରେ ଜନ୍ମଗ୍ରହଣ କରେ । ତା'ପର ପଣ୍ଡିତ ମହାଶୟ

ଏହି ଶ୍ଳୋକ ଗୁଡ଼ିକ ଲୋକଙ୍କୁ ପଢ଼ି ଶୁଣାଇ ତାହାର ଅର୍ଥ ବୁଝାଇ ଦେଇ କହିଲେ କି, ଉକ୍ତ ଶ୍ଳୋକ ମଧ୍ୟ ନିତ୍ୟାଗ୍ନିର ପଦ୍ଧତି ଗ୍ରନ୍ଥରେ ଉଲ୍ଲିଖିତ ଅଛି । ସେହି ଦିନାବଧି ସେହି ଲୋକମାନେ ପଣ୍ଡିତଙ୍କର ଏହି କପୋଳ କଳ୍ପିତ କଥାକୁ ଈଶ୍ୱରାଭିପ୍ରେତ ବେଦବାଣୀ ବୋଲି ମାନି ତଦନୁରୂପ କାର୍ଯ୍ୟ କରିବାକୁ ଲାଗିଲେ । ସେଦିନ ଆମ୍ଭେମାନେ ଶୁଣି ପାରିଲୁଁ ଯେ, ଜଣେକ ବ୍ରାହ୍ମଣ ନାସ ଛିଙ୍କେ ପାଇବା ସକାଶେ କହିଥିଲେକ "ନସ୍ୟଦାନଂ ମହାପୁଣ୍ୟଂ" । ଏହିପରି ସଂସ୍କୃତ ରଚନାର ଶାସ୍ତ୍ରୀୟତା ଉପରେ ଲୋକେ ଅନ୍ଧ ବିଶ୍ୱାସ ପୂର୍ବକ ଏକାନ୍ତ ନିର୍ଭର କରିଥାନ୍ତି । ଏହି ଅନ୍ଧ ବିଶ୍ୱାସ ହେତୁ ଏମାନଙ୍କୁ ଶାସ୍ତ୍ରପ୍ରାଣ ହିନ୍ଦୁ କୁହାଯାଇ ଥାଏ । ଏହି ଶାସ୍ତ୍ର ପ୍ରାଣତା ଆଜି ହିନ୍ଦୁ ସମାଜକୁ ଅବନତି ପଙ୍କରେ ନିମଗ୍ନ କରୁଅଛି । କୌଣସି ସଂସ୍କୃତ ବାକ୍ୟର ଧର୍ମ୍ମ ମାତ୍ର ବିଷୟରେ କାହାର ସନ୍ଦେହ କରିବା କ୍ଷମତା ନାହିଁ । ଏହି ବ୍ୟବସ୍ଥା ପାଳନ ସକାଶେ ରକ୍ଷଣଶୀଳ ହିନ୍ଦୁ ସାଧାରଣ ଅନ୍ଧ ପ୍ରାୟ ହୋଇ ମେଣ୍ଢାପରି ଏକ ପଥ ଅନୁସରଣ କରୁଥାନ୍ତି । ବ୍ୟବସ୍ଥାର ଉଦ୍ଦେଶ୍ୟ କେହି ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ହିନ୍ଦୁ ସମାଜରେ ଆଜି ଯେଉଁ ସବୁ କୁତ୍ସିତ, ବୀଭତ୍ସ ଦୃଶ୍ୟ ଓ କଦର୍ଯ୍ୟ ପ୍ରଥା ଦେଖାଯାଏ ତାହାର ମୂଳରେ ଏହି ଅନ୍ଧ ବିଶ୍ୱାସ, ଏହି ଶାସ୍ତ୍ର ପ୍ରାଣତା ନିହିତ ଅଛି ।

ଏହି ଶାସ୍ତ୍ର ପ୍ରାଣ ହିନ୍ଦୁମାନଙ୍କୁ ତିନି ଭାଗରେ ବିଭକ୍ତ କରା ଯାଇ ପାରେ,—ଦୃଢ଼, ମୂଢ଼ ଓ ମଧ୍ୟବର୍ତ୍ତୀ ପନ୍ଥୀ । ଏହି ସକଳ ଶାସ୍ତ୍ରୀୟ ବ୍ୟବସ୍ଥା ପାଳନ କଲେ ଇହରେ ସୁଖ ଏବଂ ପରକାଳେ ମୁକ୍ତି ଲାଭ ହୁଏ ବୋଲି ଏକ ଶ୍ରେଣୀର ଲୋକଙ୍କର ଦୃଢ଼ ଧାରଣା ଜନ୍ମିଥାଏ । ଏମାନେ ଆପଣାର ମନ ପ୍ରାଣ ସମର୍ପଣ କରି ଏହି ବ୍ୟବସ୍ଥା ଗୁଡ଼ିକ ପାଳନ କରିଥାନ୍ତି । ଏହିମାନେହିଁ ଦୃଢ଼ ଶ୍ରେଣୀର ଲୋକ । ଯେଉଁମାନେ କୌଣସି ବ୍ୟବସ୍ଥାର ଅର୍ଥ ହୃଦୟଙ୍ଗମ କରି ପାରୁ ନ ଥାନ୍ତି, ସେମାନେ କେବଳ ଦେଖା ଶିଖା ଗଡ଼ୁଲି ଭଳିଆ ନ୍ୟାୟ ବ୍ୟବସ୍ଥା ପାଳନ କରୁ ଥାନ୍ତି । ବାପ, ଦଦା, କରିଥିଲେ, ସାହି ପଡ଼ିଶା ଲୋକେ କରନ୍ତି, ସୁତରାଂ ଆମ୍ଭମାନଙ୍କୁ ମଧ୍ୟ କରିବାକୁ ହେବ, ଏହିଭାବ ପ୍ରଣୋଦିତ ହୋଇ ମୂଢ଼ ଶ୍ରେଣୀର ଲୋକେ ବ୍ୟବସ୍ଥା ପାଳନ କରିଥାନ୍ତି । ଏମାନେ ନିଜେ ଅଜ୍ଞାନ, ନିଜର ବିବେକର ବ୍ୟବହାର କରି ନଥାନ୍ତି—କେବଳ ପର କଥାରେ ପରିଚାଳିତ ହୋଇ କାଠି କୁଟାର ନ୍ୟାୟ ଚିର ପ୍ରବାହିତ ସ୍ରୋତରେ ଭାସି ଯାଉଅଛନ୍ତି । ତୃତୀୟ ଶ୍ରେଣୀର ଲୋକେ ଦୃଢ଼ ନୁହନ୍ତି କିବା ମୂଢ଼ ନୁହନ୍ତି । ଏମାନେ ଜାଣି ନଜାଣିବା ପରି, ଦେଖି ଶୁଣି ନଦେଖି ନଶୁଣିବା ପରି ରହନ୍ତି । ଏମାନେ ସମୟ ସେବୀ, ଛିଦ୍ରାନ୍ବେଷୀ

ଗରମ ବେଳେବେଳେ ନରମ, କେବେ ରକ୍ଷଣଶୀଳ କେବେ ସଂସ୍କାରକ । ଏମାନଙ୍କର କୌଣସି ଦୃଢ଼ ଧାରଣା ନଥାଏ । ଏମାନେ ବାହାରେ ଏକ ପ୍ରକାର ଅନ୍ତରରେ ଅନ୍ୟ ପ୍ରକାର । କପଟାଚାରହିଁ ଏମାନଙ୍କର ମୂଳ ମନ୍ତ୍ର । ଏମାନେ ଅନ୍ୟର, ଅନୁରୋଧ ଓ ସାମାଜିକତା ରକ୍ଷା ଛଳନାରେ ଆପଣାକୁ ପଦେ ପଦେ ପ୍ରତାରଣା କରିଥାନ୍ତି । ଏମାନଙ୍କର ଭାବି ଅବସ୍ଥା ଅବଶ୍ୟ ଶୋଚନୀୟ । ଏହି "ମଝି ମଝିଆ" ଶ୍ରେଣୀର ଲୋକେ କାଳକ୍ରମେ ବୁଡ଼ି ମରିଥାନ୍ତି'—' ହୁଟେ ଭରନ୍ତି, ମୁଢ଼େ ଉରନ୍ତି ମଝି ମଝିଆ ବୁଡ଼ି ମରନ୍ତି " ।

---

## ସଂସ୍କୃତ ଶିକ୍ଷା ।

ଆର୍ଯ୍ୟଜାତି ଜଗତରେ ପୂଜ୍ୟଜାତି । ଯେଉଁ ଭାଷା ଜଗତରେ ମାତୃଭାଷା ରୂପେ ପରିଗୃହୀତ ହୁଏ, ଆର୍ଯ୍ୟଜାତି ସେହି ଭାଷାର ସୃଷ୍ଟି କରିଥିଲେ । ଏହା ଆର୍ଯ୍ୟ ବା ସଂସ୍କୃତ ଭାଷା ଏକା ନୁହେ, ଏହାହିଁ ଦେବଭାଷା । ସ୍ୱର୍ଗାଦପି ଗରୀୟସୀ ମାତୃଭୂମିର ପବିତ୍ର ଭାଷା ପରିତ୍ୟାଗ କରି ଆଜ ଭାରତ ବାସୀ ହିନ୍ଦୁମାନେ ଅଜ୍ଞପ୍ରାୟ ପଡ଼ି ଅଛନ୍ତି; ଧର୍ମନୀତି, ଅଧ୍ୟାତ୍ମ୍ୟ ଜ୍ଞାନ, ଆତ୍ମ ସମ୍ମାନ, କଳା କୌଶଳ ଇତ୍ୟାଦି ହରାଇ ବସିଛନ୍ତି । ସଂସ୍କୃତ ଭାଷାରେ ଯେଉଁ ବେଦ ବେଦାନ୍ତ ଶାସ୍ତ୍ର, ସ୍ମୃତି, ପଦ୍ଧତି, ନୀତି ସାହିତ୍ୟ ସାଧନା ଥିଲା ତାହାର ସାର ଆଜ ଆର୍ଯ୍ୟ ସନ୍ତାନ ମାନେ ବୁଝି ନାହାନ୍ତି । ୟୁରୋପ, ଆମେରିକା ପ୍ରଭୃତି ବିଦେଶରେ ସଂସ୍କୃତଶାସ୍ତ୍ର ବା ସାହିତ୍ୟର ଯେ ଚର୍ଚ୍ଚା ହୁଏ ଆଜ ଭାରତରେ ତାହା ହେଉନାହିଁ । କାଳକ୍ରମେ ଭାରତ ବାସୀ ଆର୍ଯ୍ୟ ସନ୍ତାନ ମାନେ ଏତେଦୂର ଅନୁଦାର ଓ କୁସଂସ୍କାର ଜଡ଼ିତ ହୋଇ ପଡ଼ି ଅଛନ୍ତି ଯେ, ଏମାନେ ସଂସ୍କୃତ ସାହିତ୍ୟର ଯଥାରୀତି ଅନୁଶୀଳନ କରନ୍ତି ନାହିଁ, ଯଦିବା କରନ୍ତି, ତହିଁରେ ଅନୁପ୍ରାଣିତ ହୁଅନ୍ତି ନାହିଁ, ସାହିତ୍ୟର ସାର ଗୃହୀତ ହୁଏନାହିଁ, ଶାସ୍ତ୍ରର ମର୍ମ୍ମ ହୃଦୟଙ୍ଗମ ହୁଏନାହିଁ, ବିଜ୍ଞାନର ବିଚକ୍ଷଣତା ଉପଲବ୍ଧ ହୁଏନାହିଁ କିବା ଆଚାରର ଉଦ୍ଦେଶ୍ୟ ଧରା ଯାଏନାହିଁ । ଇସ୍କୁଲିଆମାନେ ଯେପରି ଇଂରାଜୀ ଭାଷାର ବାହ୍ୟାଡମ୍ବରରେ ମୁଗ୍ଧ ହୋଇଥାନ୍ତି, ସାହେବୀ ବେଶ ଭୂଷାର ବାହ୍ୟ ଅନୁକରଣ କରିଥାନ୍ତି କିନ୍ତୁ ଇଂରାଜ ଲୋକଙ୍କ ଉତ୍ସାହ, ଅଧ୍ୟବସାୟ, ଧୈର୍ଯ୍ୟ, ସାହସ ଇତ୍ୟାଦି ଗୁଣର ଶିକ୍ଷା କରନ୍ତି ନାହିଁ ପୁଣି ଦେଶୀୟ ରୀତିନୀତି ଆଚାର ବ୍ୟବହାରକୁ ଘୃଣା କରିଥାନ୍ତି, ସେହିପରି ସଂସ୍କୃତ ଟୋଲିଆମାନେ ହୁଅନ୍ତି ଗ୍ରନ୍ଥକୀଟ ବା ପଲ୍ଲବ ଗ୍ରାହୀ ପଣ୍ଡିତ । ଏମାନେ

କଥା କଥାରେ ସ୍ମୃତି ଓ ବେଦ ବେଦାନ୍ତର ଦୋହି ଦେଇଥାନ୍ତି କିନ୍ତୁ ଶାସ୍ତ୍ରର ନିତ୍ୟ ସତ୍ୟକଥା ଗ୍ରହଣ କରି ପାରୁନଥାନ୍ତି । ସ୍ୱଧର୍ମ, ପରଧର୍ମ, ମୁକ୍ତିମାର୍ଗ, ମୋକ୍ଷ ଧର୍ମ, ଅଧ୍ୟାତ୍ମଜ୍ଞାନ, ପାରମାର୍ଥିକ ଜ୍ଞାନ, ତ୍ୟାଗ, ଅହିଂସା, ସଦାଚାର ଇତ୍ୟାଦ ବଡ଼ ବଡ କଥାର ଅସ୍ଫାଳନ ମାତ୍ର କରିଥାନ୍ତି କିନ୍ତୁ ନିଜର ଆଚାର ଓ ଅନୁଷ୍ଠାନରେ ଏକାନ୍ତ ଉଦାସୀନ ଥାଆନ୍ତି । ଯଦ୍ୱାରା ଏମାନେ ଭାବ ଶବ୍ଦରେ ଶବ୍ଦବୋଧ କରନ୍ତି ଅଥଚ କାଣ୍ଡଜ୍ଞାନ ବହୀନ, ଅନୁଷ୍ଠାନ ବମୁଖ ରହନ୍ତି, ବଗ୍ଭର ବହୀନ ଆଚାର ପରାୟଣ ହୁଅନ୍ତି ନତୁବା ସଦାଚାର ପଦ୍ଧତିର ଅକ୍ଷରିକ ବ୍ୟାଖ୍ୟାରେ ଆବଦ୍ଧ ହୋଇ ବହୁବାଡମ୍ବର ପ୍ରଦର୍ଶନରେ ପ୍ରୟାସ କରନ୍ତି ଏବଂ ଅସାର ପରଂପରାର ଅନ୍ଧ ଅନୁକରଣକୁ ସନାତନ ଧର୍ମ ରକ୍ଷା ବୋଲି ଶଳାର କରୁଥାନ୍ତି । କାବ୍ୟ, ସାଂଖ୍ୟ ବେଦାନ୍ତରେ ପ୍ରଥମ ଦ୍ୱିତୀୟ ତୃତୀୟ ଇତ୍ୟାଦ ଉପାଧି ପାଇବା ମାତ୍ରେ ଯେ କେହିବ୍ୟକ୍ତି ପଣ୍ଡିତ ପଦ ପ୍ରତ୍ୟାଶୀ ହୁଅନ୍ତି । ସେଦନ କାଶୀବାସୀ ଜଣେ ପଣ୍ଡିତ କହିଥିଲେ କାବ୍ୟ ଅଟେ ପୋଇଲି ମାଇପର ପାଠ । ଏହି କାବ୍ୟ କଣ୍ଠସ୍ଥ କରି ଆଜ ଅନେକେ ପଣ୍ଡିତ । ଯେଉଁମାନେ ପ୍ରାଣିମାନଙ୍କୁ ଆତ୍ମବତ୍ ଜ୍ଞାନ କରନ୍ତି ସେମାନେ ହେଉଥିଲେ ପଣ୍ଡିତ । ଏବେ ଅଭ୍ରବକା ପଣ୍ଡିତ ନତୁବା କାବ୍ୟ ପଢ଼ା ପଣ୍ଡିତ ।

ଏହି ସଂସ୍କୃତ ପଣ୍ଡିତ ବା ଉପାଧି ପଣ୍ଡିତ ମାନଙ୍କର ଅଧ୍ୟୟନ, ଅଧ୍ୟବସାୟ, ଶିକ୍ଷା, ସଙ୍ଗ ଯାହାହେଉ ପଛେ, ଏମାନଙ୍କର ଆଚରଣ ଅନୁଷ୍ଠାନ ବପରୀତ ଗୁଲି ଅଛି ଦେଖାଯାଉ ।

କେହିବ୍ୟକ୍ତି ଏହିପରି ସଂସ୍କୃତ ପଣ୍ଡିତ ହୋଇଯିବା ପରେ କୌଣସି ରାଜଦ୍ୱାରେ ପ୍ରବେଶ କରି କାବ୍ୟ ନାଟକ ଅଳଙ୍କାରାଦରୁ ଚାରି ଶ୍ଳୋକ ଆବୃତ୍ତି କରନ୍ତି ନତୁବା ରାଜା ଜମିଦାର ମାନଙ୍କର ଅଯଥା ସ୍ତୁତି ଗର୍ଭକ ଶ୍ଳୋକ ରଚନା କରି କିଛି ବଦାକ ପାନ୍ତି ନତୁବା କଲେଜ, ସ୍କୁଲ, ଟୋଲ ଇତ୍ୟାଦରେ ପଣ୍ଡିତରୂପେ ନିଯୁକ୍ତ ହୁଅନ୍ତି । ଏହାଛଡା କୌଣସି ସାଧାରଣ ସଦନୁଷ୍ଠାନରେ ଏମାନଙ୍କର ହସ୍ତ ଥିବା ଶୁଣା ଯାଏ ନାହିଁ । ପାଠକମାନେ ଶୁଣିଥିବେ ଏହି ଶ୍ରେଣୀର କୌଣସି ପଣ୍ଡିତ ଏକାଡେମି ଦ୍ୱିଚ୍ଛ ଦର୍ପଣର ଅର୍ଥ ଛାତ୍ରମାନଙ୍କୁ ବୁଝାଇ କହିଥିଲେ ଯେ, କଲିକତା ବଜାରରେ ଏକାଡେମି ନାମକ ଏକ ଦର୍ପଣ ବକି ହୁଏ । ପୁଣି ଅନ୍ୟ କେହି ପଣ୍ଡିତ ରୋମନ୍ଥକୁ ରୁମ ମନ୍ଥିବା ବୋଲି ବୁଝାଇ ଦେଇଥିଲେ । ଏମାନେ ସଂସ୍କୃତ ଭାଷାରେ ଯେତେ ଅଭିଜ୍ଞ ହୁଅନ୍ତୁ ପଛେ, ଏହାହିଁ ସେମାନଙ୍କର

ଓ ଢ ଆଭିଷାରେ ପାରଦର୍ଶିତା । ଲବଙ୍ଗଟା କି ପଦାର୍ଥ, କେଉଁ ଦେଶରୁ ଆସେ, କିପରି ଆଦାୟ ହୁଏ ? ପଣ୍ଡିତମାନେ କହିବେ ଯେ, ବଦ୍ରିକାଶ୍ରମ ମାନବର ଅଗମ୍ୟ ସ୍ଥାନ, ଏଠାକୁ ସ୍ୱର୍ଗର ଦେବତାମାନେ ଆସନ୍ତି, ସ୍ୱର୍ଗରୁ ଫୁଲ ଆଣିଥାନ୍ତି, ତହିଁରେ ଶିବଙ୍କୁ ଆରାଧନା କରନ୍ତି । ସେହି ଫୁଲ ଶୁଖି ଯାଇ ନଦୀରେ ଭାସି ଆସି ଆମ ଦେଶରେ ଲବଙ୍ଗ ହୁଏ । ଅନେକ ପଣ୍ଡିତଙ୍କର ଅନ୍ୟାନ୍ୟ ବଚନ ଧାରଣା ଓ ବିଶ୍ୱାସ ଗୁଡ଼ିକ ଅତ୍ୟନ୍ତ କୌତୁକାବହ ଯଥା, ଜଗତଟା ନବଖଣ୍ଡ ମେଦିନୀ, ଦଧି, ମଧୁ, ଲବଣାଦି ସମୁଦ୍ର ପରିବେଷ୍ଟିତ । ସ୍ୱର୍ଣ୍ଣମୟ ଲଙ୍କାରେ ଅସୁରମାନେ ନିବାସ କରନ୍ତି । ବିଭୀଷଣ ତହିଁରେ ଅଦ୍ୟାପି ରାଜତ୍ୱ କରୁଛନ୍ତି । ନନ୍ଦଙ୍କଠାରୁ କ୍ଷତ୍ରିୟବଂଶ ଧ୍ୱଂସପ୍ରାପ୍ତ ହୋଇଲାଣି ଇତ୍ୟାଦି ।

ଜଣେ ଉପାଧି ପଣ୍ଡିତ ସେଦିନ ପରୀକ୍ଷା ଦେଇ ପୁରୀରୁ ଫେରୁଥିଲେ । ଯାହାଠାରୁ ହେଲେ କିଛିମାଗି ନେଇ ଯିବା ବ୍ରାହ୍ମଣମାନଙ୍କର ଧର୍ମ ବୋଲି ଏମାନଙ୍କର ଧାରଣା । ପଣ୍ଡିତ ମହାଶୟ ପାଥେୟ ସଙ୍ଗେ ସଙ୍ଗେ ବେଦର ସାୟନାଚାର୍ଯ୍ୟ ଟୀକା ପୁସ୍ତକ ଖଣ୍ଡେ ଆଣାଇ ଦେବାପାଇଁ ମତେ ଅନୁରୋଧ କଲେ । ମୁଁ କହିଲି ଦୟାନନ୍ଦ ସରସ୍ୱତୀଙ୍କର ସତ୍ୟାର୍ଥ ପ୍ରକାଶ ପୁସ୍ତକ ଖଣ୍ଡିଏ ମଗାଇ ଦେବି, ତାକୁ ନେଇ ଥରେ ପାଠ କରନ୍ତୁ । ପଣ୍ଡିତ କହିଲେ, ସେହି ପୁସ୍ତକଟା ଆମ୍ଭର ଧର୍ମ ନଷ୍ଟ କରୁଛି, ଦୟାନନ୍ଦ ଜଣେ ନାସ୍ତିକ, ତାହାଙ୍କ ପୁସ୍ତକର ସମାଲୋଚନା ଓ ଖଣ୍ଡନ କରି ଯାଇଅଛୁ । ଆପଣ ଦକ୍ଷିଣା ସହ ସେହି ପୁସ୍ତକଟି ମତେ ଦେଲେ ସୁଦ୍ଧା ମୁଁ ତାହ ସ୍ପର୍ଶ କରିବ ନାହିଁ । ଆଉ ଏକ ପଣ୍ଡିତଙ୍କ କଥା—ଗରିବ ଛାତ୍ରମାନଙ୍କୁ ସାହାଯ୍ୟ କରିବାପାଇଁ ଗୃହସ୍ଥ ମାନଙ୍କଠାରୁ ମୁଠି ଚାଉଳ ସଂଗ୍ରହ କରା ଯାଉଥିଲା । ଜଣେ କାବ୍ୟତୀର୍ଥ-ଶିକ୍ଷକ ଛାତ୍ରମାନଙ୍କୁ ସଙ୍ଗେ ନେଇ ଯାଇ ସେହି ଚାଉଳଟା ସଂଗ୍ରହ କରିବାରେ ମାନହାନି ବୋଧ କରନ୍ତି, କିନ୍ତୁ ଶବ ଗୃହପରେ ସାଗୁଣା ପରି ବେଢ଼ି ଶୋକାକୁଳ ଗୃହସ୍ଥ ସଙ୍ଗେ କଳିକରି ଦାନ ଦକ୍ଷିଣା ସଂଗ୍ରହ କରିବାରେ ମାନହାନି ହୁଏ ନାହିଁ । ଜଣେ ଓଡ଼ିଆ ଶିକ୍ଷକ ଗୋଟିଏ ଧୋବା ପିଲାକୁ ଅନ୍ୟଜାତୀୟ ପିଲାଙ୍କ ସଙ୍ଗେ ଏକତ୍ର ବସାଇ ପାଠ ଶିଖାଉ ଥିଲେ, ସେତେବେଳେ ଏହି ସଂସ୍କୃତ ପଣ୍ଡିତ ଆସି ଏ ଧୋବାପିଲାଟିକି ପୃଥକ୍ କରିଦେଇ କହିଲେ "ଏଇଥିରେ କି ଦେଶର ବା ଲୋକର ଉନ୍ନତି ହେବ ? ଏହା ମୁକ୍ତିମାର୍ଗ ନୁହେ । ଏହି ପାଠପଢ଼ା ସବୁ ପେଟପୋଷା କାଣ୍ଡ । ଏଥିରେ ମୁକ୍ତି ମିଳେ ନାହିଁ । ଆମ୍ଭମାନଙ୍କର ବର୍ଣ୍ଣାଶ୍ରମ ରକ୍ଷାକରି ମୁକ୍ତିମାର୍ଗ ଅନୁସରଣ କରିବା ଉଚିତ" । ପଣ୍ଡିତଙ୍କ ବିଚାରରେ କବଚ୍ଛା ଜାତିଭେଦ, ସ୍ପର୍ଶ ଓ ଦୃଷ୍ଟିଦୋଷ ଇତ୍ୟାଦି ଭିଆଣ କରି, ମାଛମାଂସରେ

କପଟ ପୁରାଇ ଖାଇ, ପିଣ୍ଡା ଉପରେ ବସି, କାବ୍ୟଶାସ୍ତ୍ର ବିନୋଦରେ କାଳଯାପନ କରିବାହିଁ ମୁକ୍ତିମାର୍ଗ, ଲୋକ ସେବା କରିବା, ବିଦ୍ୟାଦାନ କରିବା ମୁକ୍ତି ମାର୍ଗନୁହେ । ପଣ୍ଡିତଙ୍କ ସଦାଚାର—କୁକୁର ଆସି ଘରଦ୍ୱାରେ ମଳତ୍ୟାଗ କରୁ, ପଣ୍ଡିତଙ୍କର ଶୋଚନା ନାହିଁ, ଡେଇଁ ଡେଇଁ ଚାଲିଯିବେ । କିନ୍ତୁ ଶ୍ୱାନ ସ୍ପର୍ଶରେ ବ୍ରହ୍ମତ୍ୱ ନଷ୍ଟହୁଏ । ଅମୁକ ପିଲା ହାତେଛୁଆଁ ହେଲା, ଅମୁକ ପିଲାକୁ ଛୁଇଁଦେଲା, ସବୁ ମାରାହୋଇ ଗଲା—ଏହି ସକଳ ସଦାଚାର ଛାତ୍ରମାନଙ୍କୁ ଶିକ୍ଷା ଦେବାରେ ସଂସ୍କୃତ ପଣ୍ଡିତ ସଦା ତତ୍ପର ।

ସଂସ୍କୃତ ପଣ୍ଡିତମାନଙ୍କର ଓଡ଼ିଆ ଭାଷା ଚର୍ଚ୍ଚା—ଏମାନେ ସଂସ୍କୃତ ଭାଷାକୁ ସଂସ୍କୃତ କହନ୍ତି । ଓଡ଼ିଆ ହିନ୍ଦି ବଙ୍ଗଳା ଇତ୍ୟାଦ ଦେଶ ପ୍ରଚଳିତ ଭାଷାକୁ ଭାଷା କହନ୍ତି । ଏମାନଙ୍କ ବିଚାରରେ ସଂସ୍କୃତ ଛଡ଼ା ଅନ୍ୟାନ୍ୟ ଭାଷାରେ ଯାହା ଲେଖାଥାଏ ବା କୁହାଯାଏ ତାହା ପାଠଶାସ୍ତ୍ର ହୋଇ ନପାରେ । ସେ ସବୁଭାଷା ଗୁଡ଼ାକ ସଂସ୍କୃତ ପଣ୍ଡିତ ମାନଙ୍କର ଅଧ୍ୟୟନୋପଯୋଗୀ ନୁହେଁ । ଏମାନେ ନିଜ ମାତୃଭାଷାକୁ ଘୃଣା କରନ୍ତି, ନିଜ ମାତୃଭାଷା ପ୍ରତି କିଛି ଗୋଟେ ମାୟାମମତା ରଖନ୍ତି ନାହିଁ । ଏମାନଙ୍କ ଧାରଣା ଯେ, ଅଶ୍ଳୀଳ କାବ୍ୟ ହେଉପଛେ ସଂସ୍କୃତ ପୋଥି ପାଠରେ ମୁକ୍ତିଲାଭ ହୁଏ । ଦୁଃଖର ବିଷୟ, ଏହି ପଣ୍ଡିତମାନେ ଓଡ଼ିଆ ଶିକ୍ଷାଦେବା ସକଶେ ସ୍କୁଲମାନଙ୍କରେ ପଣ୍ଡିତ ପଦରେ ନିଯୁକ୍ତ ହୁଅନ୍ତି । ଏହି ପଣ୍ଡିତ ମାନେ ସ୍କୁଲରେ ଶିକ୍ଷକ ହେବା ପୂର୍ବେ ଟ୍ରେନିଙ୍ଗ ସ୍କୁଲରେ କିଛିକାଳ ଛାତ୍ର ହେବା ଉଚିତ । ଏମାନଙ୍କର ସଂସ୍କାର ବା କୁସଂସ୍କାର ଦୂରଭୂତ ନହେବା ପର୍ଯ୍ୟନ୍ତ ଏମାନେ ଛାତ୍ରମାନଙ୍କର କୌଣସି ଉପକାର କରି ପାରିବେ ନାହିଁ, ବରଂ ସେମାନଙ୍କର ପ୍ରଭୂତ କ୍ଷତି ସାଧନ କରିବେ । ଆଶାହୁଏ, ଏମାନେ ଟ୍ରେଣ୍ଡ ହେଲେ ଅନ୍ୟାନ୍ୟ ଶିକ୍ଷକ ଅପେକ୍ଷା ଅଧିକ ଶିକ୍ଷା ଦାନରେ ସମର୍ଥ ହେବେ ।

ଦେଶରେ ସଂସ୍କୃତ ଶିକ୍ଷାର ବହୁଳ ପ୍ରଚାର ନଦେଖି ଲୋକମାନଙ୍କର ଇଂରାଜୀ ଶିକ୍ଷାପ୍ରତି ଅଗ୍ରହ ଏବଂ ସଂସ୍କୃତ ପ୍ରତି ଅନାସ୍ଥା ଦେଖି ମନରେ କ୍ଷୋଭ ଜାତହୁଏ । କିନ୍ତୁ ସଂସ୍କୃତ ଶିକ୍ଷା ନାମରେ ଏହି କାବ୍ୟତୀର୍ଥ ପାଣ୍ଡିତ୍ୟର ପ୍ରାଦୁର୍ଭାବ ଦେଖି ହତାଶ ହେବାକୁ ହୁଏ, କ୍ଷୁବ୍ଧରୁ କ୍ଷୁବ୍ଧତର ହେବାକୁ ପଡ଼େ । ଲୋକସେବା ବର୍ଜ୍ଜିତ, ଭ୍ରାନ୍ତ ଜ୍ଞାନବିହୀନ, କୁସଂସ୍କାର ପୂର୍ଣ୍ଣ, ସଂକୀର୍ଣ୍ଣ ସ୍ୱାର୍ଥମୟ ପାଣ୍ଡିତ୍ୟ ଅପେକ୍ଷା ନିରକ୍ଷର ମୂର୍ଖତା ଶ୍ରେୟସ୍କର ।



ପୁରୀ ଜଗନ୍ନାଥ ପ୍ରେସରେ

ଶ୍ରୀ ଭଜନାନନ୍ଦ ମହାନ୍ତିଙ୍କ ଦ୍ୱାରା ମୁଦ୍ରିତ ।

୧୯୩୯

